ବେଦ ବିଭୂତି

*ସମ୍ପାଦନା ଓ ଅନୁସୃଜନ*

**ଶ୍ରୀ ନରସିଂହ ମିଶ୍ର**

ପ୍ରକାଶନ ଉପଦେଷ୍ଟା
ଶ୍ରୀ ବିନୋଦ ବିହାରି ବିଶୋଇ, ମୋବାଇଲ : ୯୯୩୭୬୯୪୭୮୧

ପ୍ରକାଶକ
**ଜ୍ଞାନଯୁଗ ପବ୍ଲିକେଶନ**
ଏନ୍-୬/୪୨୮, ଆଇ.ଆର୍.ସି. ଭିଲେଜ, ନୂଆପଲ୍ଲୀ, ଭୁବନେଶ୍ୱର-୧୫
ଫୋନ୍ ନଂ.-୨୫୫୨୦୯୧

**ISBN—81-89726-76-8**

ଡି.ଟି.ପି. : ରାକେଶ ଗ୍ରାଫିକ୍ସ, ଭୁବନେଶ୍ୱର

ମୁଦ୍ରକ
କ୍ରିଏଟିଭ୍ ଅଫସେଟ୍, ନୂଆପଲ୍ଲୀ, ଭୁବନେଶ୍ୱର-୧୫, ଫୋନ୍ ନଂ.-୨୫୫୬୧୦୭

ପ୍ରଥମ ପ୍ରକାଶ—୨୦୧୨

ମୂଲ୍ୟ : ଟ ୧୫୦.୦୦

**VEDA BIBHUTI**

Edited by : **Narasinha Mishra**
Publisher Advisor
Binod Bihari Bisoi, 9937694781 (M)
Publisher : **Gyanajuga Publication**
N-6/428, IRC Village, Nayapalli, Bhubaneswar-15
Ph. : 0674-2552091
**ISBN—81-89726-76-8**
D.T.P. : Rakesh Graphic, Bhubaneswar
Printer : **Creative Offset**
Nayapalli, Bhubaneswar-15, Ph. : 2552091
First Edition : 2012
Price : **150.00**

**SHANTIKUNJA, HARIDWAR (Uttarakhanda) - 249411**

12th Jan, 2010

Received your letter and noted all the contents there in. We are much pleased to learn your dedication towards the Divine Culture. May you be blessed with success in your life, we pray.

It is a noble work to write poems like "Veda Bibhuti" to make people understand the Vedas, the ocean of knowledge. Rev. Gurudeva has written many more books. You may take guidelines and matter from those books for further publishing articles and poems in oriya language. You may contact our Sub-centres there.

keep on writing to us.

Yours...
**sd/ Sailabala Pandia**

---

# ପୁଷ୍ପିକା

ଆଜି ଦୀପାବଳି, ଆଲୋକପର୍ବ, କାର୍ତ୍ତିକ ପ୍ରଦୀପ ଅମାବାସ୍ୟା । ବେଦମନ୍ତ୍ରରେ ଏହି ତିଥିକୁ ଏକ ଶୁଭ ତିଥିର ମାନ୍ୟତା ଦିଆଯାଇଛି । "ଅମାବାସ୍ୟା" ଶବ୍ଦର ଅର୍ଥ ଏକତ୍ରିତ ହେବା । ଏହି ତିଥିରେ ସୂର୍ଯ୍ୟ, ଚନ୍ଦ୍ର, ଇନ୍ଦ୍ର ଆଦି ଶୁଭକର୍ମା ଦେବତାଗଣ ଏକତ୍ର ଅବସ୍ଥାନ କରନ୍ତି ।

ଅମାବାସ୍ୟାର ଚନ୍ଦ୍ରହୀନ ରାତିକୁ 'କୃହୁ' କୁହାଯାଏ । ଅଥର୍ବ ବେଦରେ 'କୃହୁ' ଦେବୀ ରୂପେ ସମ୍ମାନିତ ହୋଇଛନ୍ତି । ଏହି ଶୁଭଙ୍କରୀ ଦେବୀ, ଯାଚକମାନଙ୍କୁ ଧନ, ମାନ, ସୁସନ୍ତାନ ସହିତ କଲ୍ୟାଣପ୍ରଦ ଜୀବନ ଯାପନ ପାଇଁ, ଆଶୀର୍ବାଦ ଦିଅନ୍ତି । ଅଥର୍ବ ବେଦର 'ଅମାବାସ୍ୟା' ସୂକ୍ତ ପ୍ରଣିଧାନ ଯୋଗ୍ୟ ।

ଆଜିର ଏହି ମଙ୍ଗଳ ମୁହୂର୍ତ୍ତରେ, ମୋ ଦ୍ୱାରା ସମ୍ପାଦିତ "ବେଦବିଭୂତି"ର ପାଣ୍ଡୁଲିପି ପ୍ରସ୍ତୁତି ସମ୍ପୂର୍ଣ୍ଣକରି ମୁଁ ଅନିର୍ବଚନୀୟ ଆନନ୍ଦ ଅନୁଭବ କରୁଛି । ବେଦମନ୍ତ୍ର ଅବଲମ୍ବନରେ କେତୋଟି ବୈଦିକ କବିତା ରଚନା କରିବାର ସ୍ୱପ୍ନ ମୋର ଅନେକ ଦିନରୁ ଥିଲା । ଆଜି ମୋର ସେ ସ୍ୱପ୍ନ ସାର୍ଥକ ହୋଇଛି ।

ବେଦବିଭୂତିର କବିତା ଗୁଡ଼ିକ ସୂଚୀତ ହୋଇଥିବା ନିର୍ଦ୍ଦିଷ୍ଟ ବେଦମନ୍ତ୍ରର ଅନୁବାଦ ନୁହେଁ । ମନ୍ତ୍ରଟି ଯେଉଁ ସୂକ୍ତକୁ ପ୍ରତିନିଧିତ୍ୱ କରୁଛି, ସେହି ସମଗ୍ର ସୂକ୍ତର ଭାବ ସମ୍ଭାରକୁ ନେଇ, କବିତାର ସୃଷ୍ଟି । ମନ୍ତ୍ର ବା 'ଋଚା' ଗୁଡ଼ିକର ଗଦ୍ୟାର୍ଥ, ପାଠକମାନଙ୍କର ସହଜ ଅବବୋଧନ ନିମିତ୍ତ ମନ୍ତ୍ର ତଳେ ଦିଆଯାଇଛି ।

ବେଦରେ ଥିବା, ଋଷିମାନଙ୍କର ଚର୍ଚ୍ଚିତ ଋଚାଗୁଡ଼ିକ ଅତ୍ୟନ୍ତ ପ୍ରାଣବାନ । ତାହା ସେମାନଙ୍କର ପରମ ସାକ୍ଷାତର ପରମାନନ୍ଦ ଫଳଶ୍ରୁତି । ବେଦବାରିଧିରୁ ମୁଁ ଯେଉଁ ଅମୂଲ୍ୟ ମୁକ୍ତା ସଂଗ୍ରହ କରିଛି, ତାହା ପାରିବାରିକ, ସାମାଜିକ, ଆଧ୍ୟାତ୍ମିକ ତଥା ରାଷ୍ଟ୍ରୀୟ ଜୀବନ ଧାରାକୁ ଉଜ୍ଜୀବିତ କରିବ ବୋଲି ଆଶାକରେ । ବ୍ୟକ୍ତିର ବ୍ୟକ୍ତିଗତ ଜୀବନଚର୍ଯ୍ୟା ସୁଶୃଙ୍ଖଳିତ ଏବଂ ସମୁନ୍ନତ ହେବା ପାଇଁ ଏଥିରେ ମନ୍ତ୍ରଶକ୍ତି ସନ୍ନିତ ବଚନାମୃତ ପରିବେଷିତ ହୋଇଛି ।

ବେଦମୂର୍ତ୍ତି ତପୋନିଷ୍ଠ ପଣ୍ଡିତ ଶ୍ରୀରାମ ଶର୍ମା ଆଚାର୍ଯ୍ୟ ଏବଂ ତପୋମୟୀ ଭଗବତୀ ଦେବୀ ଶର୍ମା ସମଗ୍ର ବେଦକୁ ହିନ୍ଦିଭାଷାରେ ସଂପାଦନା କରିଛନ୍ତି । ତାହାକୁ ଓଡ଼ିଆ ଭାଷାରେ ଅନୁବାଦ କରିଛନ୍ତି ଦୁଇ ମହାନ୍ ଭକ୍ତ ଶ୍ରୀଯୁକ୍ତ ହରିହର ମିଶ୍ର, (ଋଗ୍‌ବେଦ) ଏବଂ ଶ୍ରୀଯୁକ୍ତ ଡା: ମଧୁସୂଦନ ପଣ୍ଡା, (ସାମ. ଯଜୁ ଓ ଅଥର୍ବ ବେଦ) । ଯୁଗଶକ୍ତି ଗାୟତ୍ରୀ,

ଭୁବନେଶ୍ୱର - ୧୦ଙ୍କ ଦ୍ୱାରା ତାହା ପ୍ରକାଶିତ ହୋଇଛି । ମୂଳ ହିନ୍ଦି ସହିତ ଓଡ଼ିଆ ଅନୁବାଦ ମୋତେ ଦିଗ୍‌ଦର୍ଶନ ଦେଇଥିବାରୁ, ମୁଁ ଏହି ସାରସ୍ୱତ ପୃଷ୍ଠାରେ ସେମାନଙ୍କୁ ମୋର ଗଭୀର କୃତଜ୍ଞତା ଜ୍ଞାପନକରୁଛି ।

ଯୁଗଶକ୍ତି ଗାୟତ୍ରୀର ମୂଳ ପୀଠ, ଶାନ୍ତିକୁଞ୍ଜ, ହରିଦ୍ୱାର, ପଣ୍ଡିତ ଶ୍ରୀରାମ ଶର୍ମାଙ୍କ ରଚିତ ପୁସ୍ତକଗୁଡ଼ିକର ତଥ୍ୟ ଓ ବିଷୟବସ୍ତୁ, ଓଡ଼ିଆ ଭାଷା ସାହିତ୍ୟରେ ସୁବିନିଯୋଗ କରିବା ପାଇଁ ସୁଯୋଗ ପ୍ରଦାନ କରିଥିବାରୁ ମୁଁ ଉଲ୍ଲସିତ ଅଭିନନ୍ଦନ ପ୍ରକାଶ କରୁଛି ।

ମୋର ଏପରି ଏକ ସାରସ୍ୱତ ଉଦ୍ୟମକୁ ଆଗେଇ ନେବାପାଇଁ ମୋତେ ଅନୁପ୍ରେରିତ କରିଥିବାରୁ ପ୍ରଫେସର ଶ୍ରଦ୍ଧେୟ ଅଭିନ୍ନଚନ୍ଦ୍ର ସାହୁ ଓ ରାଜେନ୍ଦ୍ର ପ୍ରସାଦ ରଥ ଧନ୍ୟବାଦର ପାତ୍ର । ସର୍ବୋପରି.. ଏହି "ବେଦବିଭୂତି" ପୁସ୍ତକଟି ପ୍ରକାଶ କରିବା ପାଇଁ 'ଜ୍ଞାନଯୁଗ ପ୍ରକାଶନ' ଆଗ୍ରହୀ ଥିବାରୁ ମୁଁ ପ୍ରକାଶକଙ୍କର ସହୃଦୟତାକୁ ଶ୍ରଦ୍ଧା ଓ ସମ୍ମାନ ଜଣାଉଛି ।

ଦିବଂଗତ ଋଷି ପ୍ରତିମ ଆଚାର୍ଯ୍ୟ ଶ୍ରୀରାମ ଶର୍ମା ଏବଂ ପୂଜନୀୟା ମାତା ଭଗବତୀ ଦେବୀ ଶର୍ମାଙ୍କୁ ଭକ୍ତିପୂତ ପ୍ରଣାମସହ ତାଙ୍କର ଆଶୀର୍ବାଦ ଭିକ୍ଷା କରୁଛି ।

ପ୍ରଦୀପ ଅମାବାସ୍ୟା
ତା.୧୭.୧୦.୨୦୦୯
ଏନ୍ ୧/ ୨୬୬, ଭୁବନେଶ୍ୱର - ୧୫

ବିନୀତ
ନରସିଂହ ମିଶ୍ର

# ଆଦ୍ୟ କଥନ

"ସରସ୍ୱତ୍ୟାଃ ସର୍ବେ ବେଦାଃ ଅଭବନ୍ ।"

ସରସ୍ୱତୀଙ୍କ ଦ୍ୱାରା ସମଗ୍ର ବେଦର ଉତ୍ପତ୍ତି ହୋଇଛି ବୋଲି ଶାସ୍ତ୍ରବାଣୀ ଅଛି । ବିଶ୍ୱ ସାହିତ୍ୟର ସର୍ବପ୍ରାଚୀନ ବାଙ୍ମୟପ୍ରକାଶ ହେଉଛି 'ବେଦ' । ସନାତନ ଆର୍ଯ୍ୟ ସଂସ୍କୃତିର ଏହା ପ୍ରାଣପିଣ୍ଡ । ଧର୍ମ ସଂସ୍କୃତିର ଆଧାରଶିଳା । ସେଥିପାଇଁ ଶାସ୍ତ୍ରରେ କୁହାଯାଇଛି, 'ବେଦୋଽଖିଳଂ ଧର୍ମମୂଳମ୍' । ପୃଥିବୀର ସବୁ ଧର୍ମର ନୀତି, ଆଦର୍ଶ, ମର୍ମବାଣୀ, ଏବଂ ଦର୍ଶନ, ସନାତନ ବେଦର ସାରସ୍ୱତ ଭଣ୍ଡାରରେ ପରିପୂର୍ଣ୍ଣହୋଇ ରହିଥିବାର ଦେଖିବାକୁ ମିଳେ ।

ବେଦର ଅନ୍ୟନାମ 'ନିଗମ' । ଏଥିରେ ଜୀବନ ଯାତ୍ରାର ପଥ ନିର୍ଣ୍ଣୟ କରାଯାଇଛି । 'ତନ୍ତ୍ର' ବା 'ବେଦାନ୍ତ' ଆଦି ଶାସ୍ତ୍ରକୁ କୁହାଯାଏ 'ଆଗମ' । ବେଦ ବ୍ରହ୍ମରୁ ଏମାନଙ୍କର ଆଗମନ ବା ଉତ୍ପତ୍ତି ।

ବେଦ, ମହାନ୍ ଋଷିମାନଙ୍କର ସ୍ୱାନୁଭୂତିସମ୍ପନ୍ନ ଶାଶ୍ୱତ ମନ୍ତ୍ରବାଣୀ ସମୂହର ସମାହାର । ସେମାନଙ୍କ ଆଧ୍ୟାତ୍ମିକ, ସାଂସ୍କୃତିକ, ସାମାଜିକ ତଥା ବୈୟକ୍ତିକ ଜୀବନର ସନାତନୀଉତ୍ସକୁ ଜାଣିବାକୁ ହେଲେ, ବେଦକୁ ପାଠକରିବାକୁ ହେବ । ବେଦସମ୍ଭୂତ ହିନ୍ଦୁ ଧର୍ମର ଚିରନ୍ତନୀ ପ୍ରବାହ, ଯୁଗ ଯୁଗର ଅସରନ୍ତି ଜୀବନକୁ ପ୍ଳାବିତ କରିଛି । ଜନ ଜୀବନରେ ପ୍ରବାହିତ ଏହି ମହାସ୍ରୋତ, ଆଧ୍ୟାତ୍ମିକତାର ପ୍ରତୀକ ରୂପେ, ପୁଣ୍ୟତୋୟା ନଦୀ ରୂପରେ, ସତେଯେପରି ପ୍ରବାହିତ ହେଉଛନ୍ତି ଭାରତ ଭୂମିରେ ।

ସିନ୍ଧୁ, ଗଙ୍ଗା, ଯମୁନା, ସରସ୍ୱତୀ ପ୍ରଭୃତି ନଦୀ ମାନଙ୍କର ତଟସ୍ଥବନବେଦି ଥିଲା ମହର୍ଷିମାନଙ୍କର ଯଜ୍ଞପୀଠ । ଏଠାରେ ସେମାନେ ବେଦର ଋଚା (ମନ୍ତ୍ର)ଗୁଡ଼ିକୁ ରଚନା କରିଥିଲେ । ବେଦ ବର୍ଣ୍ଣିତ ଯଜ୍ଞଧାରା କେଉଁ ଅନାଦିକାଳରୁ ଭାରତୀୟ ଜୀବନକୁ ଯଜ୍ଞମୟ କରିଛି । ଶିଶୁର ଜନ୍ମଜାତକଠାରୁ ଆରମ୍ଭ କରି, ବ୍ରତ, ବିବାହ ଓ ସମସ୍ତ ମଙ୍ଗଳ କାମ, ଶୁଭ ଯଜ୍ଞରେ ଅନୁଷ୍ଠିତ ହୁଏ । ବୈଦିକ ମନ୍ତ୍ରଗୁଡ଼ିକ ଏହି ଯଜ୍ଞପୀଠରେ ଆଜିପର୍ଯ୍ୟନ୍ତ ମଧ୍ୟ ଉଚ୍ଚାରିତ ହେଉଛି । ଏପରିକି ଶ୍ରାଦ୍ଧ ତଥା ପ୍ରେତ କର୍ମରେ ମଧ୍ୟ ବୈଦିକ ମନ୍ତ୍ରଗୁଡ଼ିକର ପ୍ରୟୋଗ କରାଯାଏ ।

ବେଦର ପ୍ରତ୍ୟେକ ଋଚାରେ ଦିବ୍ୟଦ୍ରଷ୍ଟା ଋଷିମାନଙ୍କର ବ୍ରହ୍ମସାକ୍ଷାତ ଭାବ ସମ୍ଭାର, ବିଭୂତି ମଣ୍ଡିତହୋଇ ରହିଛି । ଏହି ଦୃଷ୍ଟିରୁ ଏ ଗୁଡ଼ିକର ଶାଶ୍ୱତ ମୂଲ୍ୟବୋଧ ବହୁ ଘାତ ପ୍ରତିଘାତ ମଧ୍ୟରେ ଏପର୍ଯ୍ୟନ୍ତ ଅତୁଟ ଅଛି ।

ବାହ୍ୟଜଗତ ସହିତ ମନ୍ତ୍ରଦ୍ରଷ୍ଟା ଋଷିମାନଙ୍କର ମନୋଜଗତର ସମ୍ପର୍କ ନିବିଡ଼ ଥିଲା । ଉଦ୍ଭିଦ ଜଗତର ପ୍ରତ୍ୟେକ ବୃକ୍ଷଲତା ସହିତ ଚେତନ ସ୍ତରରେ ସେମାନଙ୍କର ଆତ୍ମସାକ୍ଷାତ୍କାର ହେଉଥିଲା, ଫଳରେ ସେମାନଙ୍କ ମଧ୍ୟରେ ଥିବା ଭେଷଜୀୟ ଗୂଢ଼ତତ୍ତ୍ୱ, ଋଷିମାନେ ନିର୍ଦ୍ଧାରଣ କରିପାରିଥିଲେ ।

ବେଦକାଳୀନ ବୃକ୍ଷଲତା ମଧ୍ୟରୁ ଏବେ ଅନେକ ଲୋପ ପାଇଗଲାଣି । ଆଉ କେତେକର ନାମ କାଳକ୍ରମେ ପରିବର୍ତ୍ତିତ ହୋଇ ଗଲାଣି । କେତେକ ଅଜ୍ଞାତ ଅବସ୍ଥାରେ ଘଞ୍ଚ ବନାନୀ ମଧ୍ୟରେ ଅଛନ୍ତି । ଏ ସବୁର ଗବେଷଣା ଏବଂ ଅନୁସନ୍ଧାନ ଆବଶ୍ୟକ । ଉଦାହରଣ ସ୍ୱରୂପ, ଯେଉଁ "ସୋମ" ଲତାର ରସକୁ ଋଷିମାନେ ପ୍ରାଣରସ ବୋଲି କହିଛନ୍ତି, ଆଜି ସେହି 'ସୋମଲତା' ଅଜ୍ଞାତ କିମ୍ବା ଲୁପ୍ତ ।

ବେଦର ଅନ୍ୟ ନାମ 'ଶ୍ରୁତି' । ଋଷିମାନେ ସେମାନଙ୍କର ଅନ୍ତଃ ଚେତନ ସ୍ତରରେ ବହିଃ ପ୍ରକୃତି ଏବଂ ଅନ୍ତଃ ପ୍ରକୃତି ସହିତ ଯେଉଁ ଆତ୍ମସାକ୍ଷାତ୍କାର କରୁଥିଲେ, ସେଇ ଚେତନ ଚର୍ଚ୍ଚାକୁ ସେମାନେ ମନେ ରଖୁଥିଲେ ଏବଂ ପରେ ତାକୁ ବାଣୀରୂପ ଦେଉଥିଲେ । ତାହା 'ଋଚା' ବା ମନ୍ତ୍ରରେ ପରିଣତ ହେଉଥିଲା । ଏହା ଋଷିମାନଙ୍କର ପ୍ରଜ୍ଞାଦୀପ୍ତ ମନର ଚିରନ୍ତନ ପ୍ରକାଶ । ବେଦରେ ଏହି ମନ୍ତ୍ର ଗୁଡ଼ିକ ସଂରକ୍ଷିତ ହୋଇଛି ।

'ବେଦ' ଶବ୍ଦର ଆକ୍ଷରିକ ଅର୍ଥ ହେଉଛି 'ଜ୍ଞାନ', ଏହି ଦୃଷ୍ଟିରୁ ବେଦ ମାନବ ଜାତିର ଜ୍ଞାନଗ୍ରନ୍ଥ । ବୈଦିକ ଋଷିମାନଙ୍କ ଠାରୁ ତାଙ୍କର ଶିଷ୍ୟମାନେ ବେଦମନ୍ତ୍ର ଗୁଡ଼ିକୁ ଶୁଣି ଶୁଣି ମନେ ରଖୁଥିଲେ, ଏହିଦୃଷ୍ଟିରୁ ଏହାକୁ ମଧ୍ୟ 'ଶ୍ରୁତି' କୁହାଯାଇଥାଏ । ଦିବ୍ୟ ସାକ୍ଷାତ୍କାରରୁ ଉତ୍ପନ୍ନ ଜ୍ଞାନଧାରା ହେଉଛି 'ବେଦ' ।

ବୈଦିକ ଯୁଗର ସବୁଋଷି ମନ୍ତ୍ରଦ୍ରଷ୍ଟା ନଥିଲେ । ସାଧନାରେ ସିଦ୍ଧିଲାଭ କରିଥିବା ମହାନୁଭବୀ ଋଷିଗଣ ମନ୍ତ୍ରଦ୍ରଷ୍ଟା ମହାଋଷି ଅଟନ୍ତି । ଏ ପ୍ରକାର ଦିବ୍ୟଋଷିତ୍ୱ ଲାଭ କରିବା ପାଇଁ ଦେବତାମାନେମଧ୍ୟ ସାଧନାସମ୍ଭୂତ ମନ୍ତ୍ର ରଚନା କରି ଦେବଋଷିରେ ପରିଣତ ହୋଇଛନ୍ତି । ଅଥର୍ବ ବେଦରେ ଅନେକ ଦେବତା ଋଷିତ୍ୱପ୍ରାପ୍ତ ହୋଇଥିବାର ଦେଖିବାକୁ ମିଳେ । ସେମାନଙ୍କ ମଧ୍ୟରେ ପ୍ରଜାପତି ବ୍ରହ୍ମା, ବୃହସ୍ପତି, ଭଗ, ବରୁଣ ଇତ୍ୟାଦି ପ୍ରଧାନ । ଯସ୍ୟ ବାକ୍ୟଂ ସ ଋଷିଃ ।

ଦେବତାମାନଙ୍କ ପରି ଅନେକ ଦେବୀ ମଧ୍ୟ ମନ୍ତ୍ର ରଚନା କରି ଋଷିତ୍ୱ ପ୍ରାପ୍ତ ହୋଇଛନ୍ତି । ସେମାନଙ୍କ ମଧ୍ୟରେ ଇନ୍ଦ୍ରାଣୀ ଅପ୍ସରା, ଅମାବାସ୍ୟା (ବୈଦିକ ଦେବୀ) ଉର୍ବଶୀ, ସଚୀ, ସୂର୍ଯ୍ୟା ସାବିତ୍ରୀ, ଦକ୍ଷିଣା ପ୍ରାଜ୍ୟପତ୍ୟା, କୁହୂ ଇତ୍ୟାଦି ଅନ୍ତର୍ଗତ ।

ବୈଦିକ ଋଷିମାନଙ୍କ ମଧ୍ୟରେ କେତେକ ନାରୀଋଷି ବା ଋଷିକା, ବେଦମନ୍ତ୍ର ବା 'ଋଚା' ରଚନା କରିଛନ୍ତି । ସେମାନଙ୍କ ମଧ୍ୟରେ ଅଗସ୍ତ୍ୟ ଋଷିଙ୍କର ପତ୍ନୀ ଲୋପାମୁଦ୍ରା, ଅତ୍ରି ଋଷିଙ୍କର କନ୍ୟା 'ଅପାଲା', ଅଙ୍ଗିରସଙ୍କ କନ୍ୟା ଶାଶ୍ୱତୀ ଆଙ୍ଗିରସୀ, କଶ୍ୟପ ପୁତ୍ରୀ 'ଶିଖଣ୍ଡିନୀ' ପ୍ରଭୃତି ।

ବେଦ, ବହୁ ଦେବତାବାଦ ପ୍ରଚାର କରି ଏକେଶ୍ୱର ବାଦ ପାଖରେ ପହଞ୍ଚିଛି । ଋଗ୍‌ବେଦ ସଂହିତାର ଚତୁର୍ଥ ଭାଗରେ ପ୍ରଭୁ 'ବିରାଟ ପୁରୁଷ'ଙ୍କର ବର୍ଣ୍ଣନା, ଏହାର ସୂଚନା ଦିଏ । ସୂର୍ଯ୍ୟ, ଚନ୍ଦ୍ର, ବାୟୁ, ଅଗ୍ନି, ଅନ୍ତରିକ୍ଷ, ଦ୍ୟୁଲୋକ ଓ ଭୂଲୋକର ସଂରଚନା ତାଙ୍କର ସୂକ୍ଷ୍ମଶରୀରୁ ସମ୍ଭବ ହୋଇଛି । ସେ ସମଗ୍ର ଜଗତର କର୍ତ୍ତା । ଦେବତାଗଣ ସେହି ଅନନ୍ତ ମହାଶକ୍ତିର ଅଂଶ ଓ ପ୍ରତିନିଧି ରୂପେ ସୃଷ୍ଟି ସର୍ଜନାର କର୍ତ୍ତବ୍ୟ ନିର୍ବାହ କରନ୍ତି ।

ବେଦମନ୍ତ୍ରରେ ମହାଶକ୍ତିର ପ୍ରଶସ୍ତି ସହିତ, ମନ୍ତ୍ର ଶକ୍ତିର ମିଶ୍ରଣ ହୋଇଛି । ଏଥିରେ ବିଶ୍ୱଜୀବନର ମଙ୍ଗଳ ବିଧାନ ପାଇଁ ମହାଶକ୍ତିମାନଙ୍କୁ ପ୍ରାର୍ଥନା କରାଯାଇଛି । ଆତ୍ମ ସ୍ୱାର୍ଥ ପାଇଁ ଧନ ମାନ ଯଶ ପୌରୁଷ ଭିକ୍ଷା କରାଯାଇ ନାହିଁ, ସେ ସବୁ ଜଗତ କଲ୍ୟାଣପାଇଁ ସମର୍ପିତ । ମନୁଷ୍ୟ ଉଦାର ହୃଦୟ ଏବଂ ନିର୍ଲିପ୍ତ ମନର ଅଧିକାରୀ ହେବାପାଇଁ, ଋଷିମାନଙ୍କର ପ୍ରାର୍ଥନା, ଏହି ମହାଭାବର ସୂଚନା ଦିଏ ।

ଦେବତାମାନେ ସୃଷ୍ଟିର ଅନନ୍ତ ତେଜଃରୂପ । ସେମାନେ ଶାଶ୍ୱତ ଶକ୍ତିର ଭଣ୍ଡାର । ବିଶ୍ୱଜଗତର ମଙ୍ଗଳପାଇଁ ଋଷିମାନେ ସେହି ଦିବ୍ୟ ଶକ୍ତିର ଆଶୀର୍ବାଦ ଭିକ୍ଷା କରିଛନ୍ତି ଏବଂ ତା'ପରେ ସେମାନଙ୍କର ଆଲୋକିତ ପ୍ରଜ୍ଞାମାନସ ପରମ ପିତା ପ୍ରଭୁ ପରମେଶ୍ୱରଙ୍କୁ ପ୍ରାର୍ଥନା କରିଛି । ଆର୍ଯ୍ୟ ଧର୍ମ ବିପ୍ଳବର ଏହା ଏକ ବିବର୍ତ୍ତନ ପ୍ରକ୍ରିୟା । ମୋଟ ଉପରେ ବେଦ ସର୍ବଜ୍ଞାନମୟ । ଦିବ୍ୟ ଚେତନ ସ୍ତରର ଅଧ୍ୟାତ୍ମ ପ୍ରତ୍ୟକ୍ଷାନୁଭୂତିକୁ, ମହାନ୍ ଋଷିଗଣ ମନ୍ତ୍ରରୂପ ଦେଇଥିବାରୁ, ବେଦକୁ 'ଅପୌରୁଷେୟ' ବୋଲି କୁହାଯାଏ ।

## ଋଗ୍‌ବେଦ

"ଋକ୍" ଶବ୍ଦର ଅର୍ଥ ପ୍ରାର୍ଥନା । ଋଗ୍‌ବେଦ ପ୍ରାର୍ଥନାମୟ । ଏହା ସମଗ୍ର ବିଶ୍ୱ ସାହିତ୍ୟର ପ୍ରଥମ ସାରସ୍ୱତବାଙ୍ମୟ, ସର୍ବବୃହତ ଏବଂ ସର୍ବପ୍ରାଚୀନ ମଧ୍ୟ । ବୈଦିକ ସନାତନୀ ଚିନ୍ତାଧାରା, ପ୍ରାର୍ଥନାର ରୂପନେଇ ଏଥିରେ ଭକ୍ତିର ଏକ ଅଖଣ୍ଡ ପ୍ରବାହ ସୃଷ୍ଟି କରିଛି । ଏହି ଚିରନ୍ତନ ବେଦବାଣୀ ଐଶ୍ୱରୀୟ ଜ୍ଞାନ ସମ୍ଭୂତ ।

ଋଗ୍‌ବେଦ ଅତି ପ୍ରାଚୀନ ହୋଇଥିବାରୁ, ଏହାର ଭାଷା ମଧ୍ୟ ପ୍ରାଚୀନତମ । ଏହାକୁ ଆଧାର କରି ଭାଷା ବିବର୍ତ୍ତନର ଇତିହାସ ନିର୍ଦ୍ଧାରଣ କରାଯାଇ ପାରେ ।

ଋଗ୍‌ବେଦର ବିଷୟବସ୍ତୁ ସୃଷ୍ଟି ବିଜ୍ଞାନ ଉପରେ ଆଧାରିତ । ସୃଷ୍ଟିର ଆରମ୍ଭ, ବିକାଶ, ବିସ୍ତାର, ବିଧି ବିଧାନ, ବେଦର ଋଚା ଗୁଡ଼ିକରେ ସନ୍ନିବେଶିତ ହୋଇଛି । ଚୈତନ୍ୟ ଜଗତରେ ବିଚରଣ କରୁଥିବା ଋଷିଗଣଙ୍କ ମାନସପଟରେ, ତ୍ରିକାଳର ଅନୁଭୂତି ପ୍ରତିଫଳିତ ହୋଇଥାଏ । ତାହା ବାଣୀରୂପ ନେଇ ବେଦବାଣୀରେ ପରିଣତ ହୋଇଛି ।

ଋଗ୍ ବେଦ ଜ୍ଞାନମୟ, ଯଜୁର୍ବେଦ କର୍ମମୟ, ସାମବେଦ ଉପାସନାମୟ ଏବଂ ଅଥର୍ବ ବେଦ ଜୀବନମୟ । ମହାନ୍ ଋଷିଗଣ ବେଦମନ୍ତ୍ର ରଚନାକରି, ସତ୍ୟ, ଧର୍ମ, ଜ୍ଞାନର ପ୍ରଚାର କଲେ ମଧ୍ୟ, ପରିତୋଷ ଲାଭ କରି ପାରିନାହାନ୍ତି ତେଣୁ ଗଭୀର ଅତୃପ୍ତି ମଧ୍ୟରେ କହିଛନ୍ତି, "ନେତି...ନେତି', ଏହାର ଅର୍ଥ, ଯେଉଁ ମହାସତ୍ୟର ତଥ୍ୟ ପ୍ରକାଶ କରାଗଲା, ତାହା ସମ୍ପୂର୍ଣ୍ଣ ନୁହେଁ । ଏ ବିଷୟରେ ଆଉରି ଅନେକକଥା କୁହାଯାଇ ପାରିବ । ଆତ୍ମାନୁଭୂତିର ପରିପକ୍ୱତା ଉପରେ ସତ୍ୟର ସମ୍ପୂର୍ଣ୍ଣ ଉପଲବ୍ଧି ନିର୍ଭର କରେ । ତେବେ ବର୍ତ୍ତମାନର ଅଭିବ୍ୟକ୍ତି, ଉପଲବ୍ଧିର ସମ୍ୟକ ପ୍ରକାଶ ବୋଲି କୁହାଯାଇ ପାରେ ।

ବେଦରେ ବହୁ ଦେବତାଙ୍କର ସ୍ତୁତି ଓ ପ୍ରାର୍ଥନା ଅଛି । ଦେବତାତତ୍ତ୍ୱକୁ ଆଲୋଚନାକଲେ ଜଣାଯାଏ, ପୃଥିବୀର ପ୍ରତ୍ୟେକ ଜଡ଼ ପଦାର୍ଥର ଏକ ଚେତନ ଆତ୍ମା ଅଛି । ତାହାହିଁ ତା'ର ଦେବତା । ତାହା ଶକ୍ତିର ଭଣ୍ଡାର । ଜଡ଼ ପଦାର୍ଥର ସ୍ତୁତି କଲାବେଳେ, ତା'ର ସେହି ସୂକ୍ଷ୍ମ ଚେତନଆତ୍ମାକୁ ସ୍ତୁତି କରାଯାଏ ।

ସମଗ୍ର ବେଦ ଯଜ୍ଞମୟ । ଏହି ଯଜ୍ଞ, ତଥାକଥିତ ଅଗ୍ନିହୋତ୍ର ପ୍ରଧାନ କର୍ମକାଣ୍ଡ ନୁହେଁ । ପରଂବ୍ରହ୍ମଙ୍କର ସୃଷ୍ଟିସଂକଳ୍ପରୁ ଏହାର ଉତ୍ପତ୍ତି । ଯଜ୍ଞର ଏହା ଆଦ୍ୟରୂପ । ଏହି ମହାନ ଯଜ୍ଞର ପୁରୋହିତ ହେଉଛନ୍ତି ସ୍ୱୟଂ ବ୍ରହ୍ମପୁରୁଷ । ଯଜ୍ଞୀୟ ପ୍ରବାହ ଦ୍ୱାରା ସମଗ୍ର ବିଶ୍ୱପ୍ରକୃତି ଶୃଙ୍ଖଳିତହୋଇ ସଞ୍ଚାଳିତ ହେଉଛି ।

ପ୍ରକୃତିଯଜ୍ଞ ନିରନ୍ତର ଗତିଶୀଳ । ପ୍ରାକୃତିକ ସୃଜନକ୍ରିୟା ସ୍ଥୁଳ ଓ ସୂକ୍ଷ୍ମ ରୂପରେ ପ୍ରକାଶିତ ହୋଇଥାଏ । ପ୍ରକୃତିର ସ୍ଥିତି, ଗତି, ବିଧି ବିଧାନ, ଏହି ଯଜ୍ଞଧାରାର ଅନ୍ତର୍ଗତ । ମନୁଷ୍ୟ, ପ୍ରକୃତିର ନିୟମକୁ ପାଳନ କରୁଥିବା ପର୍ଯ୍ୟନ୍ତ, ତା'ର ଆଶୀର୍ବାଦ ଲାଭ କରିଥାଏ, କିନ୍ତୁ ତା' ବିରୁଦ୍ଧରେ ଯାଇ, ପ୍ରାକୃତିକ ଯଜ୍ଞ ଧାରାକୁ ବିପନ୍ନ କଲେ, ପ୍ରକୃତି ସର୍ବନାଶ କରେ । ପ୍ରଗତି ନାମରେ ଦ୍ରୁତ ଶିଳ୍ପାୟନ, ପ୍ରାକୃତିକ ସନ୍ତୁଳନକୁ ବ୍ୟାହତ କରୁଛି । ପ୍ରକୃତିର ସୁରକ୍ଷା ପାଇଁ କୁହାଯାଇଛି,

"ଉତ ମନ୍ୟେ ପିତୁରଦ୍ରୁହୋ ମନୋ,
ମାତୁର୍ମହି ସ୍ୱତବସ୍ତଦ୍ଧବୀମଭିଃ ।

ସୁରେତ ସା ପିତରା ଭୂମ ଚକ୍ରତୁରୁରୁ
ପ୍ରଜାୟା ଅମୃତଂ ବରୀମଭିଃ ।''

ଋ୧।ମ୧।ସୂ୧୫୯।ମଣ୍ଡଳ୧୬୫୮

ଏହାର ଅର୍ଥ, ଏହି ମଙ୍ଗଳମୟ ପୃଥିବୀ, ଆମର ମାତା ଏବଂ ଆକାଶର ସୂର୍ଯ୍ୟଦେବ, ଆମର ପିତା ସ୍ୱରୂପ । ସେମାନଙ୍କ ସନ୍ତୋଷ ଓ ଆନନ୍ଦ ବିଧାନପାଇଁ, ଆମେ ସ୍ତୁତି ପାଠ କରୁଛୁ । ସୃଷ୍ଟିଶୀଳ ପ୍ରକୃତି ଓ ସର୍ଜନାର ଉତ୍ସ ଆକାଶର ମିଳିତ ସାମର୍ଥ୍ୟ, ପୃଥିବୀକୁ ଉତ୍ପାଦନକ୍ଷମ କରି, ଏହାର ପ୍ରଜାମାନଙ୍କୁ ପରିପୋଷଣ କରୁଛି । ଆମେ ପ୍ରକୃତିର ସନ୍ତାନ, ତେଣୁ ତା'ର ସୁରକ୍ଷା କରି, ତାକୁ ଶାନ୍ତ ଓ ପ୍ରସନ୍ନ ରଖିବା ଉଚିତ । ଋଗ୍‌ବେଦ ସଂହିତା, ଦ୍ୱିତୀୟଭାଗ, ମନ୍ତ୍ର ୩୨୫୯ରେ ମଧ୍ୟ ପ୍ରକୃତିର ସୁରକ୍ଷାପାଇଁ ମାନବ ଜାତିକୁ ଆହ୍ୱାନ ଦିଆଯାଇଛି ।

ଋଗ୍‌ବେଦ, ବେଦମାନଙ୍କ ମଧ୍ୟରେ ସର୍ବବୃହତ୍ । ଏହାର ଋଚା ସଂଖ୍ୟା ୧୦୫୮୦ କିନ୍ତୁ ବର୍ତ୍ତମାନ ଋଗ୍‌ବେଦ ସଂହିତାରେ ୧୦୫୫୨ଟି ଋଚା ଦେଖିବାକୁ ମିଳେ । ଏଥିରେ ମୋଟ ୧୦ଟି ମଣ୍ଡଳ ଅଛି । ଏହାର ଶାଖା ସଂଖ୍ୟା ୫ । ଶାଖାଗୁଡ଼ିକ ପରସ୍ପର ଅନୁବନ୍ଧିତ ହୋଇ ନଥିବାରୁ, ପ୍ରତ୍ୟେକ ଶାଖାକୁ 'ଋଗ୍‌ବେଦ' ବୋଲି କୁହାଯାଏ । ଏଥିରୁ ଯେକୌଣସି ଗୋଟିଏ ଶାଖାକୁ ଅଧ୍ୟୟନ କଲେ, ସମଗ୍ର ବେଦକୁ ଅଧ୍ୟୟନ କରାଗଲା ବୋଲି ଧରାଯାଏ ।

ଖ୍ରୀ.ପୂ.୧୦୦୦-୯୦୦ ମଧ୍ୟରେ ମନ୍ତ୍ର ସଂଗ୍ରହ କରାଯାଇ, ଋଗ୍‌ବେଦ ପୋଥିରୂପ ଗ୍ରହଣକଲା । ଅଧିକାଂଶ ଗବେଷକ ଏହି ମତର ସମର୍ଥକ । ଏଥିରେ ସର୍ବମୋଟ ୧୦୦୮ଟି ସୂକ୍ତ ଅଛି । ଋଗ୍‌ବେଦର ପ୍ରାର୍ଥନାମୟ ମନ୍ତ୍ରଗୁଡ଼ିକ ମଧ୍ୟରେ, ଦିବ୍ୟଚେତନା ସହିତ ସାମାଜିକ ଜୀବନ ପ୍ରବାହ କିପରି କଲ୍ଲୋଳିତ ହେଉଛି ତାହା ଅନୁଧ୍ୟାନ ଯୋଗ୍ୟ । ଋଗ୍‌ବେଦ ଏକ ଅନୁପମ ଗ୍ରନ୍ଥ ।

## ଯଜୁର୍ବେଦ

'ଯଜୁଃ' ଶବ୍ଦର ଅର୍ଥ ଗଦ୍ୟ । ଏହି ବେଦରେ ଯଜ୍ଞକର୍ମର ମନ୍ତ୍ରଗୁଡ଼ିକ ଗଦ୍ୟ ଶୈଳୀରେ ଅଛି କିନ୍ତୁ ଏହାକୁ ପଦ୍ୟ ରୀତିରେ ଆବୃତ୍ତି କରାଯାଏ । 'ବାୟୁଦେବ' ନାମକ ଜଣେ ଋଷି, ଏହାକୁ ପ୍ରଣୟନ କରିଥିଲେ । ଯଜ୍ଞ ବିଧି ବିଧାନ ବ୍ୟତୀତ, ଏଥିରେ ରାଷ୍ଟ୍ରନୀତି, ସମାଜନୀତି, ଅର୍ଥନୀତି ଏବଂ ଶିକ୍ଷାନୀତି ବିଷୟରେ ମଧ୍ୟ ସୂଚନା ଦିଆଯାଇଛି । ମୁଖ୍ୟତଃ ଏହା କର୍ମକାଣ୍ଡ ପ୍ରଧାନ ।

'ଯଜୁର୍ବେଦ' ଦୁଇ ଭାଗରେ ବିଭକ୍ତ । ଶୁକ୍ଳ ଯଜୁର୍ବେଦ ଏବଂ କୃଷ୍ଣ ଯଜୁର୍ବେଦ । ଶୁକ୍ଳ ଯଜୁର୍ବେଦର ମନ୍ତ୍ର ଗୁଡ଼ିକ ପ୍ରାୟ ପଦ୍ୟାତ୍ମକ ଏବଂ କୃଷ୍ଣ ଯର୍ଜୁବଦ ମୁଖ୍ୟତଃ ଗଦ୍ୟାତ୍ମକ ।

ଋଗ୍ ବେଦର ପ୍ରାୟ ୬୬୩ଟି ଋଚା ଯଜୁର୍ବେଦରେ ଦେଖିବାକୁ ମିଳେ । ଯଜୁର୍ବେଦ ଂହିତାର ମନ୍ତ୍ର ସଂଖ୍ୟା ୧୯୭୫ । ଋଗ୍ ବେଦରେ ଥିବା ଯଜ୍ଞୀୟ କର୍ମ କାଣ୍ଡର ଅଧିକାଂଶ ମନ୍ତ୍ର ଯଜୁର୍ବେଦରେ ସ୍ଥାନ ପାଇଛି । ଆଜିର କର୍ମକାଣ୍ଡୀୟ ଯଜ୍ଞ ମୁଖ୍ୟତଃ ଉତ୍ସବାନୁଷ୍ଠାନ ଭିତ୍ତିକ । ବୈଦିକ ଯଜ୍ଞ ନିତ୍ୟ ନୈମିତ୍ତିକ ଏବଂ ଏହି ଯଜ୍ଞଭାବ ଏକ ଉର୍ଦ୍ଧ୍ୱ ଚେତନାର ପରିପ୍ରକାଶ । ଯଜ୍ଞୀୟ ଅନୁଶାସନ, ଜୀବନକୁ ସମୃଦ୍ଧ ଓ ସଂଗଠିତ କରେ ।

ଜୀବନ ଏକ ଯଜ୍ଞମଣ୍ଡପ । ଏଥିରେ ବିବିଧ ଯଜ୍ଞ ଅନୁଷ୍ଠିତ ହୁଏ । ମାନବ ଏହି ଯଜ୍ଞରେ କର୍ତ୍ତବ୍ୟର ଆହୁତି ପ୍ରଦାନ କରେ । ଯଜ୍ଞକର୍ମର ବିଭୂତି ବିଶ୍ୱର ମଙ୍ଗଳ ପାଇଁ ଅଭିପ୍ରେତ । ଯଜ୍ଞକୁ ଶ୍ରେଷ୍ଠତମ କର୍ମ ବୋଲି କୁହାଯାଏ ।

"ଯଜ୍ଞୋ ବୈ ଶ୍ରେଷ୍ଠତ୍ମଂ କର୍ମ"

ଆର୍ଯ୍ୟ ଜୀବନଧାରାରେ ଯଜ୍ଞ ପ୍ରମୁଖ ସ୍ଥାନ ଅଧିକାର କରିଥିଲା । ନିର୍ଦ୍ଦିଷ୍ଟ ଲକ୍ଷ୍ୟ ପୂରଣ ସଂକଳ୍ପ କରି ବର୍ତ୍ତମାନ କର୍ମକାଣ୍ଡ ଆଶ୍ରିତ, 'ଅଗ୍ନିହୋତ୍ର ଯଜ୍ଞ' କରାଯାଉଛି । ନିମ୍ନରେ କେତୋଟିର ସୂଚନା ଦିଆଗଲା ।

**ବ୍ରହ୍ମଯଜ୍ଞ :** ବେଦ ଅଧ୍ୟୟନ ସହିତ, ଜ୍ଞାନ ବିସ୍ତାର ପାଇଁ ଅଧ୍ୟୟନ ଅଭ୍ୟାସକୁ ଅତୁଟ ରଖିବାର ପ୍ରୟାସକୁ "ବ୍ରହ୍ମଯଜ୍ଞ" କୁହାଯାଏ । ବେଦାଧ୍ୟାୟୀ, ଅଚାର୍ଯ୍ୟ, କବି, ଦାର୍ଶନିକ ଏବଂ ଅଧ୍ୟୟନଶୀଳବ୍ୟକ୍ତି ବ୍ରହ୍ମଯଜ୍ଞର ପୁରୋଧାଃ ।

**ଦେବଯଜ୍ଞ :** ସମସ୍ତ ମାଙ୍ଗଳିକ କର୍ମରେ, ଦେବତାମାନଙ୍କର ତୁଷ୍ଟିବିଧାନ ପାଇଁ ଦେବଯଜ୍ଞ କରାଯାଏ । ଯଜ୍ଞପୀଠକୁ ଦେବତାମାନେ ଆବାହିତ ହୁଅନ୍ତି । ଅଗ୍ନିଦେବ ସବୁ ଦେବତାଙ୍କ ପାଖରେ ହବ୍ୟାହୁତି ପହଞ୍ଚାଇ ଦିଅନ୍ତି । ଇନ୍ଦ୍ରଦେବଙ୍କୁ ଯଜ୍ଞ ପିତା ବୋଲି କୁହାଯାଏ । ଇନ୍ଦ୍ର ଓ ଦେବଗଣ ଜ୍ୟୋତିରୂପ । ଯଜ୍ଞ ମାଧ୍ୟମରେ, ଅଗ୍ନି ଜ୍ୟୋତି ସହିତ, ଦେବଜ୍ୟୋତିର ମିଶ୍ରଣ ହୁଏ । ଫଳରେ ଦ୍ୟୁଲୋକ ଓ ଭୂଲୋକ ସୁରକ୍ଷିତ ରହେ । ଯଜ୍ଞୀୟ ଶକ୍ତିପ୍ରବାହ, ଅନ୍ତରିକ୍ଷ ତଥା ପୃଥିବୀର ସନ୍ତୁଳନ ରକ୍ଷାକରେ । ଫଳରେ ପ୍ରାକୃତିକ ଦୁର୍ବିପାକର ଆଶଙ୍କା ଦୂରହୋଇଥାଏ ।

ଯଜ୍ଞପୀଠରେ ଆଚାର୍ଯ୍ୟ ଯେଉଁ ମନ୍ତ୍ରବାଣୀ ଉଚ୍ଚାରଣ କରନ୍ତି, ତାହା ବିଧି ସମ୍ମତ ନହେଲେ କିମ୍ବା ସେଥିରେ ଉଚ୍ଚାରଣଗତ ତ୍ରୁଟି ରହିଲେ, ସେହି ମନ୍ତ୍ର ପ୍ରଭାବହୀନ ହୋଇଯାଏ । ମନ୍ତ୍ରକୁ ପ୍ରଭାବଶାଳୀ କରିବା ପାଇଁ, ତା'ର ବିଧି ସମ୍ମତ ଉଚ୍ଚାରଣ ଏକାନ୍ତ ଅପରିହାର୍ଯ୍ୟ ।

ଯଜ୍ଞବେଦିକୁ ଦେବତାମାନଙ୍କୁ ଆବାହନ କରିବା ପ୍ରସଙ୍ଗରେ କୁହାଯାଇଛି,

"ଦେବା ଗାତୁବିଦୋ ଗାତୁଂ ବିତ୍ତ୍ୱା ଗାତୁମିତ

ମନସସ୍ପତଽଇମଂ ଦେବଯଜ୍ଞଽଃ ସ୍ୱାହା ବାତେ ଧାଃ ।"

ଯଜୁ ଅ ୮ । ମନ୍ତ୍ର ୩୧୪

ଏହାର ଅର୍ଥ, "ହେ ଦେବଗଣ ! ଆପଣମାନେ ଯଜ୍ଞର ମହତ୍ୱ ଉପଲବ୍ଧିକରି, ଆମର ଆବାହନ କ୍ରମେ ଯଜ୍ଞବେଦିରେ ଉପସ୍ଥିତ ରହନ୍ତୁ । ହବ୍ୟାହୁତି ଲାଭ କରି ପରିତୃଷ୍ଟ ହୁଅନ୍ତୁ । ଯଜ୍ଞାହୁତିକୁ ଶୋଧନଶୀଳ ଶ୍ରେଷ୍ଠ ଔଷଧରେ ପରିଣତକରି, ବାୟୁ ମଣ୍ଡଳକୁ ଶୋଧନ କରନ୍ତୁ । ଏବଂ ହବ୍ୟାପାନକରି ପରମ ସନ୍ତୋଷ ପୂର୍ବକ ସ୍ୱ ସ୍ଥାନକୁ ପ୍ରସ୍ଥାନ କରନ୍ତୁ । "

**ଅତିଥି ଯଜ୍ଞ :** ଆର୍ଯ୍ୟ ଜୀବନ ଧାରରେ ପ୍ରତ୍ୟେକ ସଦ୍ ଗୃହସ୍ଥ ଅତିଥିମାନଙ୍କର ତୃପ୍ତିବିଧାନ ପାଇଁ, ସେମାନଙ୍କୁ ଅତ୍ୟନ୍ତ ଶ୍ରଦ୍ଧାର ସହିତ ଭୋଜନ, ଦାନ, ଦକ୍ଷିଣା, ଆଶ୍ରୟ ଓ ସେବା ଦେଇ ଆପ୍ୟାୟିତ କରନ୍ତି । ଏହି ଆର୍ଯ୍ୟବିଧି ଗୃହସ୍ଥ ଧର୍ମର ଏକ ଅଙ୍ଗ ।

**ବଳିବୈଶ୍ୱଯଜ୍ଞ :** ହିନ୍ଦୁ ଗୃହସ୍ଥମାନେ ଦୈନନ୍ଦିନ ଗୃହକର୍ମ ମଧ୍ୟରେ ବଳିବୈଶ୍ୱଯଜ୍ଞ ସମ୍ପାଦନ କରନ୍ତି । ଏଥିରେ ତା'ର ଭୋଜ୍ୟ ପଦାର୍ଥକୁ ଯଜ୍ଞଭାଗ ରୂପେ ଅର୍ପଣ କରାଯାଏ । ଶ୍ରାଦ୍ଧରେ ପିତୃ ପୁରୁଷଙ୍କୁ ଜଳଦାନ ବା ତର୍ପଣ ଏବଂ ଅନ୍ନଦାନ କରାଯାଏ । ଯଜ୍ଞରେ ଭୋଜ୍ୟ ପଦାର୍ଥକୁ ବଳି ବା ପିଣ୍ଡୁଳା କରି ଯଜ୍ଞ ଭାଗ ବଢ଼ାଯାଏ । କୁଆ, କୁକୁର, ପିମ୍ପୁଡ଼ି ଏବଂ ଅନ୍ୟ ପଶୁପକ୍ଷୀଙ୍କ ଖାଦ୍ୟ ପାଇଁ ଏହି ବଳି ଅର୍ପଣ କରାଯାଇଥାଏ ।

**ଅଶ୍ୱମେଧ ଯଜ୍ଞ :** ଏହା ଏକ ବିବାଦାସ୍ପଦ ପ୍ରସଙ୍ଗ । ଅଶ୍ୱମେଧ କହିଲେ ଲୌକିକ ଅର୍ଥରେ ଯାହା ବୁଝାଯାଏ, ତାହା ପ୍ରକୃତ ଅର୍ଥ ନୁହେଁ । ଅଶ୍ୱ ପ୍ରତି ହିଂସା ଆଚରଣ କରିବାର ମନୋଭାବ 'ଅଶ୍ୱମେଧ' ଶବ୍ଦ ମଧ୍ୟରେ ନାହିଁ । ଅଶ୍ୱମେଧ ଶବ୍ଦ, ଏକ ଆଧ୍ୟାତ୍ମିକ ପ୍ରୟୋଗ । ବୈଦିକ ଯଜ୍ଞପରମ୍ପରାରେ ହିଂସାତ୍ମକ କାର୍ଯ୍ୟର ପ୍ରଶ୍ନ ଉଠୁନାହିଁ ।

"ବୀର୍ଯ୍ୟଂ ବା ଅଶ୍ୱଃ" ଅର୍ଥରେ ମନୁଷ୍ୟର ପୁରୁଷାର୍ଥକୁ 'ଅଶ୍ୱ' କୁହାଯାଏ । ସର୍ବତ୍ର ସଂଚରିତ ହେବାର ଶକ୍ତିକୁ ମଧ୍ୟ ଅଶ୍ୱ କୁହାଯାଏ । ଯଜ୍ଞାଗ୍ନିକୁ ଅଶ୍ୱର ସଂଜ୍ଞା ଦେବା ଶାସ୍ତ୍ର ସମ୍ମତ ।

'ମେଧ' ଶବ୍ଦର ଅର୍ଥ ମେଧା ବା ସମ୍ବର୍ଦ୍ଧନା । ଯଜ୍ଞଅଶ୍ୱକୁ, ଯଜ୍ଞଶକ୍ତିରେ ଶକ୍ତିଶାଳୀ କରାଯାଇ ତା'ର ସେବାଶକ୍ତିକୁ ବର୍ଦ୍ଧିତ କରିବା ହେଉଛି ଏହାର ଅର୍ଥ ଓ ଲକ୍ଷ୍ୟ । ଏଠାରେ ଯଜ୍ଞ ଅଶ୍ୱଟି, ଅଶ୍ୱ ଜାତିର ପ୍ରତିନିଧିତ୍ୱ କରିଥାଏ । ଯଜ୍ଞପୀଠର ଯୂପ କାଠରେ ଯେଉଁ

ପଶୁମାନଙ୍କୁ ବନ୍ଧା ଯାଇଥାଏ, ସେମାନଙ୍କୁ ଯଜ୍ଞ ଶକ୍ତିରେ ଶକ୍ତିଶାଳୀ କରି ମୁକ୍ତ କରି ଦିଆଯାଏ ।

ପଶୁ ଶକ୍ତିକୁ ବିନିଯୋଗ କରି, ମନୁଷ୍ୟ ତା'ର ବିଭିନ୍ନ କର୍ମ ସମ୍ପାଦନ କରୁଥିବାରୁ, ତାହାକୁ ଯଜ୍ଞୀୟ ଧାରାରେ ସମୃଦ୍ଧ ଓ ବିକଶିତ କରିବା ଏକ ମହାନ୍ ବୈଦିକ ପରମ୍ପରା । ଅଶ୍ୱମେଧ ଯଜ୍ଞ ପରି 'ପିତୃମେଧ' ଯଜ୍ଞର ବ୍ୟବସ୍ଥା ଅଛି । ଏହି ଯଜ୍ଞାନୁଷ୍ଠାନ ମାଧ୍ୟମରେ ପିତୃ ପୁରୁଷଙ୍କୁ ସମ୍ବର୍ଦ୍ଧିତ କରି ସେମାନଙ୍କର ଆଶୀର୍ବାଦ ଲାଭ କରାଯାଏ ।

ବୈଦିକ ଶବ୍ଦଗୁଡ଼ିକୁ ବୈଦିକ ଅର୍ଥରେ ବୁଝିଲେ ବିଚାର ବିଭ୍ରାଟ ସୃଷ୍ଟି ହୁଏ ନାହିଁ । ଲୌକିକ ଅର୍ଥରେ ବୁଝିବା ଫଳରେ ଭ୍ରମ ସୃଷ୍ଟି ହୋଇଥାଏ । ଯଜ୍ଞ ପଶୁଭାବରେ ଅଶ୍ୱ, ଗୋ, ଅଜଃ ଓ ଅବିକୁ ପ୍ରାୟ ବୁଝାଯାଏ । ବୈଦିକ ଅର୍ଥରେ ଏହା ହେଉଛି ପୁରୁଷାର୍ଥ, ଅନ୍ତରିକ୍ଷ, ବାଣୀ ଏବଂ ପର୍ଯ୍ୟାବରଣ । ଏହି ଦୃଷ୍ଟିରୁ ବେଦ ମନ୍ତ୍ରଗୁଡ଼ିକୁ ବୈଦିକ ଅର୍ଥରେ ବୁଝିବା ଉଚିତ ।

ଯଜୁର୍ବେଦରେ ଗୃହ ପ୍ରବେଶ ପାଇଁ ତିନୋଟି ମନ୍ତ୍ର ଅଛି, ଏବେ ମଧ୍ୟ ତାହା ଗୃହ ପ୍ରବେଶ ବେଳେ ବ୍ୟବହାର କରାଯାଉଛି । ଏହା ବ୍ୟତୀତ ଏହାର ସତର ଅଧ୍ୟାୟରେ ବୈଦିକ ସଂଖ୍ୟା ଓ ଗୁଣିତକର ସୂଚନା ଅଛି । ବୈଦିକ ଗଣିତର ଧାରା ସ୍ୱତନ୍ତ୍ର ଅଟେ ।

ବୈଦିକ ଯୁଗରେ ରାଜା ଓ ରାଜପରମ୍ପରା ଥିଲା । ଯଜୁର୍ବେଦର ଦଶମ ଅଧ୍ୟାୟରେ ଏହାର ସୂଚନା ମିଳେ । ରାଜାଭିଷେକ ମନ୍ତ୍ର, ଅଭିଷେକ ଉତ୍ସବର ବର୍ଣ୍ଣନା, ରଥପୂଜା, ଓ ତତ୍‌ସଂକ୍ରାନ୍ତ ଅନ୍ୟାନ୍ୟ ବର୍ଣ୍ଣନା, ମନ୍ତ୍ରଗୁଡ଼ିକରେ ନିହିତ ଅଛି ।

## ସୋମଯଜ୍ଞ

ଯଜୁର୍ବେଦ ସଂହିତାର ଉଣେଇଶ ଅଧ୍ୟାୟରେ ସୋମରସ ଓ ସୁରା ମଧ୍ୟରେ ଥିବା ପ୍ରଭେଦ ସୂଚିତ ହୋଇଛି । ମୁଖ୍ୟତଃ ସୋମ ବିଶ୍ୱ ପ୍ରକୃତିର ଏକ ପୋଷକ ପ୍ରବାହ ଅଟେ । ଏହାକୁ ଯଜ୍ଞୀୟ ଧାରା ମାଧ୍ୟମରେ ସମସ୍ତଙ୍କ ପାଖରେ ପହଞ୍ଚାଇବା ପ୍ରକ୍ରିୟାକୁ ସୋମଯଜ୍ଞ କୁହାଯାଏ ।

ଅନ୍ତରିକ୍ଷରେ ପ୍ରବାହିତ ସୋମ ଶକ୍ତିର ଦିବ୍ୟ କ୍ଷମତା ଅଛି । ଏହା ସୂର୍ଯ୍ୟ ଚନ୍ଦ୍ର ଦେବତା, ବିଶ୍ୱ ପ୍ରକୃତି ଓ ଜୀବ ଜଗତ ମଧ୍ୟରେ ସଂଚାରିତ ହୋଇ, ସେମାନଙ୍କୁ କ୍ରିୟାଶୀଳ କରିଥାଏ । ପ୍ରାକୃତିକ ସୋମଲତାରେ ସେହି ଦିବ୍ୟ ପୋଷଣ ପ୍ରବାହ ସଂଚାରିତ ହୋଇ ଏହାକୁ ଅମୃତମୟ କରିଥାଏ । ସୋମଲତାରୁ ସଂଗ୍ରହ କରାଯାଇଥିବା ଏହି ଅମୃତମୟ ପୋଷକ ରସ, ଦୁଗ୍ଧ ସହିତ ମିଶାଇ ଯଜ୍ଞରେ ବ୍ୟବହାର କରାଯାଏ । ସୋମରସରୁ ପ୍ରସ୍ତୁତ

ଔଷଧର ଆସବନ କରି ସୁରା ପ୍ରସ୍ତୁତ ହୁଏ । ଏହି 'ସୁରାଔଷଧ' କେତେକ ରୋଗ ନାଶ କରିବା ସହିତ, ଏହା ଶରୀରକୁ ପୁଷ୍ଟି ପ୍ରଦାନ କରିଥାଏ । ରୋଗ ଯନ୍ତ୍ରଣା ଦୂର କରିବା ପାଇଁ ଏଥିରେ ହାଲକାନିଦ ହେବାର ଗୁଣଥାଏ । ପରବର୍ତ୍ତୀ ସମୟରେ 'ସୁରା' ଶବ୍ଦ, ମଦ୍ୟ ଆଦି ନିଶାଯୁକ୍ତ ପେୟ ନିମିତ୍ତ ବ୍ୟବହାର କରାଗଲା । ସୁରାକୁ ପ୍ରଚଳିତ ମଦ୍ୟ ଅର୍ଥରେ ବ୍ୟବହାର କରିବା ଭ୍ରାନ୍ତିପୂର୍ଣ୍ଣ । ବୈଦିକ ଋଷିମାନେ ଶକ୍ତି ସଞ୍ଚୟ କରି ଶତ୍ରୁ ବିନାଶନ ପାଇଁ 'ସୋମଯଜ୍ଞ' କରୁଥିଲେ ।

ଯଜୁର୍ବେଦରେ, ଜଗତର ମଙ୍ଗଳ ତଥା ଶାନ୍ତିବିଧାନ ପାଇଁ ଅନେକ ଗୁଡ଼ିଏ ମନ୍ତ୍ର ଅଛି । ସେଥିମଧ୍ୟରୁ ଗୋଟିଏ ହେଉଛି :

"ଦେଯୌଃ ଶାନ୍ତିରନ୍ତରିକ୍ଷଃ, ଶାନ୍ତିଃ ପୃଥିବୀଶାନ୍ତିରାପଃ,
ଶାନ୍ତି ରୋଷଧୟଃ ଶାନ୍ତି । ବନସ୍ପତାୟଃ ଶାନ୍ତିର୍ବିଶ୍ୱେଦେବାଃ,
ଶାନ୍ତି ର୍ବହ୍ମ, ଶାନ୍ତିଃ ସର୍ବଃ, ଶାନ୍ତିଃ ଶାନ୍ତିରେବ, ଶାନ୍ତିଃ ସା ମା ଶାନ୍ତିରେଧି ।"

ଯଜୁ ୩୬ ଅଧ୍ୟାୟ । ମନ୍ତ୍ର ୧୮୮୯

ଏହାର ଅର୍ଥ ଅନ୍ତରିକ୍ଷ, ସ୍ୱର୍ଗ, ଓ ପୃଥିବୀ ଆମକୁ ଶାନ୍ତି ପ୍ରଦାନ କରନ୍ତୁ । ଜଳ ଆମର ଶାନ୍ତି ପ୍ରଦାୟକ ହେଉ । ଔଷଧ ଓ ବନସ୍ପତି ଆମକୁ ଶାନ୍ତିଦାନ କରନ୍ତୁ । ଦେବଗଣ ଆମର ଶାନ୍ତିବିଧାନ କରନ୍ତୁ । ପରମାତ୍ମା ଅଖିଳ ବ୍ରହ୍ମାଣ୍ଡର ଶାନ୍ତି ସ୍ଥାପନ କରନ୍ତୁ । ଶାନ୍ତି ଆମକୁ ପରମ ଶାନ୍ତି ପ୍ରଦାନ କରୁ ।

## ସାମବେଦ

ସାମବେଦ ସମସ୍ତ ବେଦର ସମାହାର । ସା + ଅମଃ = 'ସାମ' ଶବ୍ଦର ସୃଷ୍ଟି । 'ସା'ର ଅର୍ଥ ଋଚା ଏବଂ ଅମଃର ଅର୍ଥ ଆଳାପ । ବେଦମନ୍ତ୍ର ଗୁଡ଼ିକ ଜ୍ଞାନ ଗର୍ଭିତ ହୋଇଥିବାରୁ ଏହାକୁ ଋଚା କୁହାଯାଏ । ଆଳାପ ଅର୍ଥରେ ଏହାର ମନ୍ତ୍ରଗୁଡ଼ିକ ଗାନଯୋଗ୍ୟ । ଋଗ୍ ବେଦର ୧୭୭୯, ଅଥର୍ବବେଦ ତଥା ଯଜୁର୍ବେଦର ୨୭ ଏବଂ ସାମବେଦର ୬୯ ଋଚାକୁ ନେଇ, ସାମବେଦ ରଚିତ ହୋଇଛି । ଏହାର ସର୍ବମୋଟ ମନ୍ତ୍ର ସଂଖ୍ୟା ୧୮୭୫ । ଏଥିରେ ଥିବା ଭକ୍ତିରସପୂର୍ଣ୍ଣ ସଙ୍ଗୀତମୟ ସ୍ତୁତି ସମୂହ ପାଠକଲେ, ମନର ମ୍ଳାନିମା ଦୂରହୋଇ ଅନ୍ତର ପରିଶୁଦ୍ଧ ହୁଏ । ସଙ୍ଗୀତ ପରମଶାନ୍ତିର ଆଧାର । ବେଦମାନଙ୍କ ମଧ୍ୟରେ ସାମବେଦକୁ ଶ୍ରେଷ୍ଠ ବୋଲି କୁହାଯାଇଛି । ପ୍ରଭୁ ଶ୍ରୀକୃଷ୍ଣ ଗୀତାରେ କହିଛନ୍ତି,

"ବେଦାନାଂ ସାମବେଦୋଽସ୍ମି"

ଏହି ଉକ୍ତି ସାମବେଦର ଗରିମାକୁ ପ୍ରକଟ କରିଛି । ବେଦର ସାମଧାରା ହୃଦୟଙ୍ଗମ କରି ଆବୃତ୍ତି କଲେ, ଦିବ୍ୟ ପରମ ଚେତନାର ସ୍ପର୍ଶ ଅନୁଭବ କରିହୁଏ । ଅନୁଭୂତି ଜନିତ ଜ୍ଞାନକୁ, ଶବ୍ଦଶକ୍ତି ଠିକ୍ ଭାବରେ ବ୍ୟକ୍ତ କରିବା ସମ୍ଭବ ନୁହେଁ । ଋଷିମାନେ ସ୍ୱୀକାର କରିଛନ୍ତି, ଅଭିବ୍ୟକ୍ତ ହୋଇଥିବା ମନ୍ତ୍ରଗୁଡ଼ିକ, ସେହି ପରମ ଦିବ୍ୟାନୁଭୂତିକୁ ସମ୍ପୂର୍ଣ୍ଣଭାବରେ ପ୍ରକାଶ କରି ପାରିନାହିଁ । ଏହା ଋଷିଜନୋଚିତ ଉଦାରୋକ୍ତି ।

ଋଷିମାନେ ଦିବ୍ୟ ସଙ୍ଗୀତପ୍ରବାହ ମଧ୍ୟରେ, ମାନସ ଭୂମିରେ ସୂକ୍ଷ୍ମାନୁଭୂତିକୁ ଉଜ୍ଜୀବିତ କରି ରଖୁଥିଲେ । ମନ୍ତ୍ରସଙ୍ଗୀତ ସେମାନଙ୍କ ଆତ୍ମସ୍ରୋତକୁ ବିଭୁମୁଖୀ କରିବାରେ ସାହାଯ୍ୟ କରିଛି ।

ଛନ୍ଦମୟ ମନ୍ତ୍ରଗାନକୁ 'ସାମ' କୁହାଗଲେ ମଧ୍ୟ ସାମବେଦରେ ଶତାଧିକ ମନ୍ତ୍ର ଅଛି, ଯାହା ଗାନଯୋଗ୍ୟ ନୁହେଁ । ସେ ସବୁ ମନ୍ତ୍ରକୁ ପାଠକରାଯାଏ । ଆତ୍ମୋନ୍ନତି ଦିଗରେ ଏହି ମନ୍ତ୍ରଗୁଡ଼ିକ ସହାୟକ ହୋଇଥିବାରୁ, ତାହାକୁ ସାମବେଦରେ ସ୍ଥାନିତ କରାଯାଇଛି ।

ଭଗବାନ ବେଦବ୍ୟାସଙ୍କୁ ସାମବେଦର ସ୍ୱୀକୃତ ଆଚାର୍ଯ୍ୟରୂପେ ଗ୍ରହଣ କରାଯାଇଛି । ଜୈମିନିଙ୍କଠାରୁ ବଂଶ ପରମ୍ପରା କ୍ରମେ ନିଜ ପୁତ୍ର ପ୍ରପୌତ୍ର ସାମଗାନର ଆଚାର୍ଯ୍ୟ ରୂପେ ପରିଗଣିତ ହେଲେ । ସାମବେଦାଚାର୍ଯ୍ୟ ସୁକର୍ମା, ଏହାର ପ୍ରଚାର ଓ ପ୍ରସାର କରିଥିଲେ । ସାମଗାୟନ ପଦ୍ଧତି ଅତ୍ୟନ୍ତ ଜଟିଳ । ଗୁରୁଙ୍କ ବିନାସାହାଯ୍ୟରେ, ଏହାକୁ ଶିକ୍ଷାକରିବା ସମ୍ଭବ ନୁହେଁ ।

ତିନି ମହାଶକ୍ତିର ଉପାସନା ପାଇଁ, ସାମବେଦରେ ଦିଆଯାଇଥିବା ମନ୍ତ୍ରଗୁଡ଼ିକ ଅତ୍ୟନ୍ତ ପ୍ରଭାବଶାଳୀ । ଏହି ତିନି ଦେବତା ହେଉଛନ୍ତି, ଅଗ୍ନି, ଇନ୍ଦ୍ର ଏବଂ ସୋମଦେବ । ଏମାନଙ୍କ ପ୍ରଶସ୍ତିଗାନ କରାଯାଇ, ଯଜ୍ଞାଗ୍ନିରେ ଆହୁତି ପ୍ରଦାନ ପୂର୍ବକ, ବିଶ୍ୱର ମଙ୍ଗଳ କାମନା କରାଯାଇଛି, ସାମବେଦରେ ।

ସାମବେଦର ଆଗ୍ନେୟ ପର୍ବରେ ଅଗ୍ନି ଦେବଙ୍କ ମହାତ୍ମ୍ୟ ବର୍ଣ୍ଣନା କରାଯାଇଛି ।

"ଅଗ୍ନିର୍ଜ୍ୟୋତିର୍ଜ୍ୟୋତିରଗ୍ନିରିନ୍ଦ୍ରୋ ଜ୍ୟୋତିର୍ଜ୍ୟୋତିରିନ୍ଦ୍ରଃ
ସୂର୍ଯ୍ୟୋଃ ଜ୍ୟୋତି ର୍ଜ୍ୟୋତିଃ ସୂର୍ଯ୍ୟଃ ।"

ସାମବେଦ । ଉତ୍ତରାଚିର୍କେ ।୨୦ଅଧ୍ୟାୟ ।

ଏହାର ଅର୍ଥ ଅଗ୍ନି ଜ୍ୟୋତିଃ ଅଟନ୍ତି ଏବଂ ଜ୍ୟୋତିଃ ହିଁ ଅଗ୍ନି ଅଟନ୍ତି । ଇନ୍ଦ୍ର ଜ୍ୟୋତିଃ ଅଟନ୍ତି ଏବଂ ଜ୍ୟୋତିଃ ହିଁ ଇନ୍ଦ୍ର ଅଟନ୍ତି । ସୂର୍ଯ୍ୟ ଜ୍ୟୋତିଃ ଅଟନ୍ତି ଏବଂ ଜ୍ୟୋତିଃ ହିଁ ସୂର୍ଯ୍ୟ ଅଟନ୍ତି ।

ସାମବେଦକୁ ବେଦବୃକ୍ଷର ପୁଷ୍ପ ବୋଲି କୁହାଯାଏ । ଏହାକୁ ଗାନ କଲେ, ଅନାହତ ଦିବ୍ୟ ସଙ୍ଗୀତର ସୂକ୍ଷ୍ମ ପ୍ରବାହ ମଧ୍ୟରେ, ମନ ନିମଜ୍ଜିତ ହୋଇ ଦିବ୍ୟାନନ୍ଦ ଲାଭ କରେ ।

ଦେବରାଜ ଇନ୍ଦ୍ର ଦେବତାମାନଙ୍କ ମଧ୍ୟରେ ଶ୍ରେଷ୍ଠ । ବିଶ୍ୱ ଜୀବନକୁ ସଂଗଠିତ କରି ରଖିବାର ସେ ଏକ ଚେତନସତ୍ତା । ଇନ୍ଦ୍ରଦେବ ଅତ୍ୟନ୍ତ ଶକ୍ତିଶାଳୀ, ବିଶ୍ୱ ବ୍ରହ୍ମାଣ୍ଡର ସଂଚାଳକ ତଥା ନିୟନ୍ତ୍ରକ ରୂପେ ପରିଗଣିତ । ଇନ୍ଦ୍ରଦେବ ବହୁ ସଦ୍‌ଗୁଣର ଅଧିକାରୀ । ସାମବେଦର 'ଐନ୍ଦ୍ର' ପର୍ବରେ ତାଙ୍କର ମାହାତ୍ମ୍ୟ ପ୍ରଚାର କରାଯାଇଛି । ସେ ସୃଷ୍ଟିଚକ୍ରର ସଂଚାଳକ ।

'ସୋମ' ଏକ ମହାନ୍ ଶକ୍ତିସ୍ରୋତ ଏବଂ ଦିବ୍ୟ ପୋଷକତତ୍ତ୍ୱ । ସୋମଶକ୍ତିର ଦିବ୍ୟ ପ୍ରବାହକୁ, ଦେବଶକ୍ତିର ମର୍ଯ୍ୟାଦା ପ୍ରଦାନ କରି, ଋଷିମାନେ ତାଙ୍କ ଉପରେ ଅନେକ ଋଚା ରଚନା କରିଛନ୍ତି । ସାମବେଦର ପଞ୍ଚମ ଅଧ୍ୟାୟରେ ଥିବା 'ପବମାନଂ ପର୍ବରେ' ସୋମଦେବଙ୍କର ବର୍ଣ୍ଣନା ଅତ୍ୟନ୍ତ ହୃଦୟଗ୍ରାହୀ ।

"ଉଚ୍ଚା ତେ ଜାତମନ୍ଧସୋ ଦିବି ସଦ୍‌ଭୂମ୍ୟା ଦଦେ ଉଗ୍ରଂ ଶର୍ମ ମହି ଶ୍ରବଃ ।"

ସାମ ଅ୫ । ମନ୍ତ୍ର ୪୬୭

ଏହାର ଅର୍ଥ, ହେ ସୋମଦେବ । ଆପଣଙ୍କର ପୋଷକ ରସ, ଦ୍ୟୁଲୋକରେ ଜନ୍ମଲାଭ କରିଛି । ସେଠାରୁ ଉତ୍ପନ୍ନ ହେଉଥିବା ଅନ୍ନ ବା ପୋଷଣପ୍ରବାହ, ଆମେ ପୃଥିବୀରେ ପ୍ରାପ୍ତ ହୋଇ ପରମ ପରିତୋଷ ଲାଭ କରୁଛୁ । ସୋମ, ବିଶ୍ୱ ବ୍ରହ୍ମାଣ୍ଡର, ସୃଷ୍ଟି ବିକାଶ ଓ ବିଲୟର ମୂଳାଧାର । ସୋମଶକ୍ତିଦ୍ୱାରା ସୂର୍ଯ୍ୟଦେବ ପ୍ରକାଶିତ ହୁଅନ୍ତି ।

ମାନବସମାଜର ସର୍ବାଙ୍ଗୀଣ ବିକାଶପାଇଁ ସାମବେଦରେ ଏକ ମହାନ୍ ଆଧ୍ୟାତ୍ମିକ ପରିବେଶ ସୃଷ୍ଟି କରାଯାଇଛି । ମନ୍ତ୍ରଦ୍ରଷ୍ଟା ମହର୍ଷିଗଣ, ସୋମ ପ୍ରବାହକୁ ସୃଷ୍ଟିର ସମସ୍ତ ଶକ୍ତିର ନାଭିକେନ୍ଦ୍ରରୂପେ ଗ୍ରହଣ କରିଛନ୍ତି । ସାମ ବେଦରେ ସୋମର ଦିବ୍ୟଗୁଣ ବର୍ଣ୍ଣନା ପ୍ରସଙ୍ଗରେ କୁହାଯାଇଛି,

ବ୍ରହ୍ମା ଦେବାନାଂ ପଦବୀଃ କବୀନା-
ମୃଷିର୍ବିପ୍ରାଣାଂ ମହିଷୋ ମୃଗାଣାମ୍;
ଶ୍ୟେନୋ ଗୃଧ୍ରାଣାଂ ସ୍ୱଧିତିର୍ବନାନାଂ
ସୋମଃ ପବିତ୍ରମତ୍ୟେତି ରେଭନ୍ ।

ସାମ ୫ ଅଧ୍ୟାୟ ମନ୍ତ୍ର ୯୪୪

ଏହାର ବିସ୍ତୃତଅର୍ଥ ହେଉଛି, ସୋମଶକ୍ତିର ଦିବ୍ୟ କ୍ଷମତା, ଦେବତାମାନଙ୍କଠାରେ ସୃଜନଶକ୍ତି, କବିଠାରେ ଶବ୍ଦବିନ୍ୟାସ, ବିପ୍ରମାନଙ୍କ ଠାରେ ଋଷିତ୍ୱଜ୍ଞାନ, ପଶୁମାନଙ୍କଠାରେ ବଳିଷ୍ଠତା, ପକ୍ଷୀମାନଙ୍କ ଠାରେ ଗତିଶୀଳତା ଏବଂ ହିଂସ୍ରମାନଙ୍କଠାରେ ବିନାଶଶକ୍ତିରୂପେ ପ୍ରକଟିତ ହୋଇଥାଏ ।

'ସୋମ' ଦିବ୍ୟ ପୋଷଣ ପ୍ରବାହ । ଏହା ଅନ୍ତରିକ୍ଷରେ ପ୍ରବାହିତ ହେଉଥାଏ । ଏହା 'ଊର୍ଜଃକଣ' ରୂପକ ମହାଶକ୍ତିର ଏକ ମହାଭଣ୍ଡାର । ଆକାଶରେ ପରିବ୍ୟାପ୍ତ ଊର୍ଜଃକଣ ଗତିଶୀଳ ଏବଂ ପୋଷଣ ପ୍ରଦାୟକ । ସୂର୍ଯ୍ୟ, ବାୟୁ, ଆକାଶ, ଅନ୍ତରିକ୍ଷ ଏ ସମସ୍ତ ସୋମପ୍ରବାହର ଗୋଟିଏ ଗୋଟିଏ ଶକ୍ତି ଭଣ୍ଡାର । ଉଦ୍ଭିଦଜ ସୋମରସ ଅନ୍ତରିକ୍ଷୀୟ ସୋମ ପ୍ରବାହରୁ ଶକ୍ତିରସ ସଂଗ୍ରହ କରିଥାଏ । ଏ ରସ ଅମୃତ ତୁଲ୍ୟ ପୁଷ୍ଟିପ୍ରଦାୟକ ।

## ଅଥର୍ବ ବେଦ

କେତେକ ବେଦବିଦ୍ୱାନଙ୍କ ମତରେ, ବେଦତ୍ରୟୀ । ଯଥା ଋକ୍, ଯଜୁଃ ଓ ସାମ ବେଦ । ଏମାନେ ମୂଳବେଦରୂପେ ପରିଗଣିତ । ଅଥର୍ବ ବେଦ ପରବର୍ତ୍ତୀ ସମୟର ସୃଷ୍ଟି ଏବଂ ଏଥିରେ ଥିବା ଅନେକ ମନ୍ତ୍ର ପ୍ରକ୍ଷିପ୍ତ । ପରବର୍ତ୍ତୀ କାଳରେ ବେଦକୁ ଚତୁଷ୍ଟୟୀ ରୂପେ ଗ୍ରହଣ କରାଯାଇଛି ଏବଂ ଯେଉଁ ସୂକ୍ତକୁ ପ୍ରକ୍ଷିପ୍ତ ବୋଲି କୁହାଯାଉଥିଲା, ତାହାକୁ ମୂଳ ବୈଦିକ ମନ୍ତ୍ରରୂପେ ସ୍ୱୀକାର କରାଯାଇଛି ।

ଅଥର୍ବ ବେଦକୁ ଜୀବନ ବେଦ ବୋଲି କୁହାଯାଏ । କାରଣ ଜୀବନର ପ୍ରତ୍ୟେକ ଦିଗ, ଏଥିରେ ଆଲୋଚିତ ହୋଇଛି । ଏକ ସୁସ୍ଥ, ବ୍ୟବସ୍ଥିତ, ଶୃଙ୍ଖଳିତ ଓ ସମୃଦ୍ଧ ଜୀବନ ଯାପନ କରିବାପାଇଁ ଏଥିରେ ଆବଶ୍ୟକ ଦିଗ୍‌ଦର୍ଶନ ଦିଆଯାଇଛି । ଅଥର୍ବ ବେଦର ଏକାଧିକ ନାଁ ଅଛି, ଯଥା ବ୍ରହ୍ମବେଦ, ଆତ୍ମବେଦ ଏବଂ ଅମୃତବେଦ ପ୍ରଭୃତି । କେହି କେହି ଏହାକୁ ଭୈଷଜବେଦ ବୋଲି କହିଥାନ୍ତି ।

'ଥର୍ବ', ଧାତୁର ଅର୍ଥ କୁଟିଳତା । ଅଥର୍ବ ଶବ୍ଦର ଅର୍ଥ ଅକୁଟିଳତା, ଅହିଂସ ଆଚରଣ । ଜୀବନକୁ ସରଳ ବ୍ୟବସ୍ଥିତ ଢ଼ଙ୍ଗରେ ଯାପନ କରିବାର ପରିବେଶ ଯେଉଁଥିରେ ସୃଷ୍ଟି କରାଯାଇଛି, ତାହାକୁ ଅଥର୍ବ ବେଦ କୁହାଯାଏ ।

ବେଦତ୍ରୟୀରେ ଯଜ୍ଞର ପାରଲୌକିକ ଦିଗପ୍ରତି ଅଧିକ ଧ୍ୟାନ ଦିଆଯାଇଛି, କିନ୍ତୁ ଅଥର୍ବ ବେଦରେ ଯଜ୍ଞର ଲୌକିକ ଆବଶ୍ୟକତା ଉପରେ ଅଧିକ ଦୃଷ୍ଟି ଦିଆଯାଇଛି । ଏହି ଦୃଷ୍ଟିରୁ ଯଜ୍ଞ ଧାରାର ପୂର୍ଣ୍ଣତା ଅଥର୍ବ ବେଦରେ ପରିଦୃଷ୍ଟ ହୁଏ ।

ସର୍ବଜ୍ଞାନଦର୍ଶୀ, ସ୍ଥିତପ୍ରଜ୍ଞ ଅଥର୍ବାଋଷି, ଅଥର୍ବ ବେଦର ଅଧିକାଂଶ ସୂକ୍ତର ରଚୟିତା । ସେ ଜଣେ ବିଖ୍ୟାତ ବୈଦିକ ଶଲ୍ୟଚିକିତ୍ସକ । ସେ ମଣିଷର ମସ୍ତିଷ୍କ ଚିକିତ୍ସା କରି ପାରୁଥିଲେ ଏବଂ ହୃତ୍‌ପିଣ୍ଡକୁ ବକ୍ଷରୁ ବାହାର କରି ଚିକିତ୍ସାପରେ ଯଥା ସ୍ଥାନରେ ରଖିପାରୁଥିଲେ । ଅଥର୍ବ ବେଦରେ କେତେକ ସ୍ଥାନରେ ଅଥର୍ବା ଓ ଅଙ୍ଗିରା ମହର୍ଷିଙ୍କୁ ମିଳିତ ଭାବରେ ଋଷିତ୍ୱ ପ୍ରଦାନ କରାଯାଇଛି । ସେ ଦୁହେଁ ଏକ ବୋଲି ବିବେଚନା କରାଯାଏ । ଅନ୍ୟ ମତରେ ସେ ଅଙ୍ଗିରା ବଂଶୀୟ ଋଷି ।

ଅଥର୍ବବେଦର ବିଷୟବସ୍ତୁ ଅତ୍ୟନ୍ତ ଜୀବନ ଉପଯୋଗୀ । ତା' ମଧ୍ୟରେ ରହିଛି ଯଜ୍ଞ, ପୁଷ୍ଟିକର୍ମ, ଭେଷଜ ସୂକ୍ତ, ଦୀର୍ଘାୟୁପ୍ରାପ୍ତି ସୂକ୍ତ, ଶତ୍ରୁନାଶନ ସୂକ୍ତ, ଶତ୍ରୁସେନା ସମ୍ମୋହନ ସୂକ୍ତ, ବୃଷ୍ଟି, କୃଷି ଓ ବାଣିଜ୍ୟ ସୂକ୍ତ, ଆତ୍ମା ଓ ଆତ୍ମରକ୍ଷା ସୂକ୍ତ, ପାପନାଶନ, ସୌଭାଗ୍ୟ ବର୍ଦ୍ଧନ, ସର୍ପବିଷ ନିବାରଣ, ଏବଂ ଆଧ୍ୟାତ୍ମ ସୂକ୍ତ । ଏହା ବ୍ୟତୀତ ବୈଦିକ ଔଷଧ ଓ ମଣି, ବିବାହ ପ୍ରକରଣ, ଦୁଃଖମୋଚନ, ରାଷ୍ଟ୍ରବଳ, ଗର୍ଭାଧାନଠାରୁ ସମସ୍ତ ସଂସ୍କାର କର୍ମ, ବ୍ରହ୍ମଚର୍ଯ୍ୟ ରକ୍ଷା ପ୍ରଭୃତି ବିଭିନ୍ନ ଜୀବନ ଉପଯୋଗୀ ବିଷୟରେ ମାର୍ଗଦର୍ଶନ କରାଯାଇଛି ।

କେତେକ ପାଶ୍ଚାତ୍ୟ ସମାଲୋଚକ, ଅଥର୍ବ ବେଦକୁ ଗୁଣୀଗାରେଡି ଓ ଯାଦୁ ବିଦ୍ୟା ପ୍ରଚାରର ବେଦବୋଲି କହି ଏହାର ଗୁରୁତ୍ୱକୁ କମାଇବାକୁ ଅପଚେଷ୍ଟା କରିଛନ୍ତି । ଏ ପ୍ରକାର ଆରୋପର କୌଣସି ପ୍ରାସଙ୍ଗିକତା ନାହିଁ । ମଣିଷର ଦୁଷ୍ଟବୃତ୍ତିର ଦମନପାଇଁ ଯେଉଁ ବେଦ ଏକ ସର୍ବକାଳୀନ ଦିଗ୍‌ଦର୍ଶନ ଦେଇଛି ଏବଂ ଏକ ସୁସ୍ଥ ନିରାମୟ ସମୃଦ୍ଧ ଜୀବନ ଯାପନ କରିବାର ପଥ ପ୍ରଦର୍ଶନ କରିଛି, ତାହାକୁ ଲଘୁ ଦୃଷ୍ଟିରେ ଦେଖିବା ବିଜ୍ଞତାର ପରିଚାୟକ ନୁହେଁ । ପାଶ୍ଚାତ୍ୟ ଗବେଷକ ଗ୍ରିଫଥ୍, ହ୍ୱିଟ୍‌ନୀ, ବ୍ଲୁମଫିଲ୍‌ଡ ପ୍ରଭୃତି ବିରୋଧ ଧାରାର ବ୍ୟତିକ୍ରମ । ସେମାନଙ୍କର ଅଥର୍ବବେଦର ଇଂରାଜି ଅନୁବାଦ ବିଶ୍ୱବିଶ୍ରୁତ । ଲ୍ୟୁଡ୍‌ବିଶ ଜର୍ମାନ ଭାଷାରେ ଅଥର୍ବ ବେଦକୁ ଅନୁବାଦ କରିଛନ୍ତି ।

ଅଥର୍ବ ବେଦରେ ମୋଟ ୬୦୦୦ ମନ୍ତ୍ର ଥିବାର ସୂଚାନାମିଳେ । ବର୍ତ୍ତମାନ ମିଳୁଥିବା ସଂହିତା ମାନଙ୍କରେ ମୋଟ ୫୯୭୭ ଋଚା ଦେଖିବାକୁ ମିଳିଥାଏ । ଏହି ବେଦର ଏକାଧିକ ଶାଖାଅଛି ଏବଂ ଅନେକ ସଂହିତା ମଧ୍ୟ ରହିଛି । ସେଥିମଧ୍ୟରୁ ପିପ୍ପଳାଦ ସଂହିତା ଏବଂ ଶୌନକ ସଂହିତା ମୁଖ୍ୟଅଟେ ।

**ଅଥର୍ବବେଦର ବିଶେଷତ୍ୱ :**

ସାଧାରଣତଃ ବେଦମନ୍ତ୍ରଗୁଡ଼ିକ ପ୍ରତୀକାତ୍ମକ ଓ ବହୁଅର୍ଥ ବୋଧକ । ଗୂଢ଼ ଅର୍ଥକୁ ପ୍ରକାଶ କରିବାପାଇଁ, ଅନେକ ସ୍ଥୁଳ ଅର୍ଥରେ ଆଶ୍ରୟ ନିଆଯାଇଛି, ତେଣୁ ମନ୍ତ୍ରଗୁଡ଼ିକରେ ଦିଆ ଯାଇଥିବା ଅର୍ଥ, ଗୂଢ଼ ଅର୍ଥାଗମର ସୂତ୍ରରୂପେ ବିବେଚନା କଲେ, ବହୁ ସୂକ୍ଷ୍ମତତ୍ତ୍ୱର

ସ୍ପନ୍ଦନ ଅନୁଭବ କରିହୁଏ । ବେଦର ସାଙ୍କେତିକ ଅର୍ଥକୁ ବୁଝିବା ପାଇଁ ଏକ ଅଧ୍ୟାତ୍ମ ଦୀପ୍ତ ଆଲୋକିତ ମନର ଆବଶ୍ୟକତା ରହିଛି ।

ଅଥର୍ବବେଦ ଏକାଧାରରେ ପଦାର୍ଥବିଜ୍ଞାନ, ରସାୟନବିଜ୍ଞାନ, ଭେଷଜ ବିଜ୍ଞାନ, ମନୋବିଜ୍ଞାନ, ସାମାଜବିଜ୍ଞାନ, ରାଷ୍ଟ୍ରନୀତି, ଜ୍ୟୋତିର୍ବିଜ୍ଞାନ, ଅଧ୍ୟାତ୍ମବିଜ୍ଞାନ ଓ ବାସ୍ତୁବିଜ୍ଞାନ ପ୍ରଭୃତିର ଏକ ମିଳନସ୍ଥଳୀ ।

ଅଥର୍ବ ବେଦ ସଂହିତାର ପ୍ରଥମ ଭାଗ, ତୃତୀୟକାଣ୍ଡ "ସାଂମନସ୍ୟ ସୂକ୍ତରେ, ବଞ୍ଚିରହିବାର ମହାନ୍ କଳାବିଷୟରେ ଯେଉଁ ଅମୃତଉପଦେଶ ଦିଆଯାଇଛି, ତାହା ପ୍ରତ୍ୟେକ ବ୍ୟକ୍ତିପାଇଁ ଅତ୍ୟନ୍ତ ମୂଲ୍ୟବାନ । ମନ୍ତ୍ରଗୁଡ଼ିକର ଅନ୍ତର୍ନିହିତ ବାଣୀ ହେଉଛି,

"ହେ ମନୁଷ୍ୟଗଣ ! ହୃଦୟକୁ ପ୍ରେମପୂର୍ଣ୍ଣ କର । ପୁତ୍ର ନିଜ ପିତାଙ୍କ ଆଦର୍ଶ ଅନୁକୂଳ କର୍ମ କରିବାରେ ବ୍ରତୀହେଉ । ପିତାମାତାଙ୍କୁ ଶ୍ରଦ୍ଧା ଭକ୍ତି ଓ ସେବାଦେଇ ସନ୍ତୋଷ ତଥା ସମ୍ମାନ ପ୍ରଦର୍ଶନ କରୁ । ପତି ପତ୍ନୀ ଉଭୟେ ଉଭୟଙ୍କର ଅନୁଗାମୀ ହୁଅନ୍ତୁ । ଶିଷ୍ଟ ବ୍ୟବହାର ଏବଂ ମଧୁର ବଚନରେ ଉଭୟେ ପରିତୁଷ୍ଟ ଓ ସମ୍ଭାଷିତ ହୁଅନ୍ତୁ । ଭାଇ ଭଉଣୀ ମଧ୍ୟରେ ଗଭୀର ସୌହାର୍ଦ୍ଦ୍ୟ ରହୁ । କେହି କାହାରି ଉପରେ ବିଦ୍ୱେଷଭାବ ନ ରଖନ୍ତୁ । ସମସ୍ତେ ଶ୍ରଦ୍ଧାଶୀଳ ଓ ସମାନ ବିଚାରଯୁକ୍ତ ହୁଅନ୍ତୁ । ପ୍ରତ୍ୟେକ ପ୍ରତ୍ୟେକର କଲ୍ୟାଣ କାମନା କରନ୍ତୁ । କେହି କାହାଠାରୁ ପୃଥକ ନହୋଇ, ଏକ ସଂଘବଦ୍ଧ, ସଂହତି ସମ୍ପନ୍ନ ଜୀବନ ଯାପନ କରନ୍ତୁ । ଆଜିର ଅତ୍ୟାଧୁନିକ ଯୁଗରେ ମଧ୍ୟ ଅଥର୍ବ ବେଦର ପ୍ରାସଙ୍ଗିକତା ଜୀବନର ପ୍ରତ୍ୟେକ ସ୍ତରରେ ଅନୁଭୂତ ହୁଏ । ଏହି ଦୃଷ୍ଟିରୁ ଅଥର୍ବ ବେଦକୁ "ଜୀବନ ବେଦ" ବୋଲି କହିବାର ଯାଥାର୍ଥ୍ୟ ରହିଛି ।

**ବୈଦିକ ମନ୍ତ୍ର :**

ବୈଦିକ ମନ୍ତ୍ରଗୁଡ଼ିକ ଋଷିବାକ୍ୟ । ଏହାର ଉଚ୍ଚାରଣରେ ଯେଉଁ 'ନାଦତରଙ୍ଗ' ସୃଷ୍ଟିହୁଏ, ତାହା ପରିବେଶର କୋଣ ଅନୁକୋଣ ସହିତ ମଣିଷର ଚେତନ ସ୍ତରକୁ ଉଜ୍ଜୀବିତ କରିଥାଏ । କେତେକ ମନ୍ତ୍ରର ଅର୍ଥ ଏତେ ଗୂଢ଼ ଯେ ତାହା ବୋଧଗମ୍ୟ ନୁହେଁ, ତଥାପି ଏହାକୁ ଉଚ୍ଚାରଣ କଲେ ଚେତନାତ୍ମାରେ ଏକ ପୁଲକ ପ୍ରବାହ ସୃଷ୍ଟି ହୋଇଥାଏ । ତେବେ ଏହାର ଉଚ୍ଚାରଣ ଶୁଦ୍ଧ ହେବା ଉଚିତ୍ । ଏହା ଏକ ସଦ୍‌ଗୁରୁ ବିଦ୍ୟା । ଗୁରୁଙ୍କ ଠାରୁ ଉଚ୍ଚାରଣ ଶୈଳୀ ଶିକ୍ଷା କଲେ ତାହା ପ୍ରମାଦହୀନ ହୁଏ । ଏହି ଗୂଢ଼ ମନ୍ତ୍ରଗୁଡ଼ିକୁ 'ବୀଜମନ୍ତ୍ର' ବୋଲି କୁହାଯାଏ । ଏହାକୁ ଅନ୍ତର ମଧ୍ୟରେ ରୋପଣ କଲେ ଏହା ତା'ରି ଭିତରେ ହୁଏ ପ୍ରକାଶଶୀଳ ।

ମନ୍ତ୍ର ଉଚ୍ଚାରଣ ଏବଂ ମନ୍ତ୍ର ଶ୍ରବଣ ମାନବ ଅନ୍ତରକୁ ପରିଶୁଦ୍ଧ କରିଥାଏ । ବେଦମନ୍ତ୍ର ଏକ ଅନିର୍ବାଣ ଆଲୋକଧାରା ।

The language of the Veda itself is SHRUTI, a rhythm not composed by the intellect but heard, a divine. Word that came vibrating out of the infinite to the inner audience of the man who had previously made himself fit for the impersonal knowledge.

*-Sri Aurobindo-*

Vedas speak of the existence of several dimensions of space and time beyond the three dimensions of space and one of time that we percive. Silence is still on the look out for that ultimate unified theory of the universe.

*Times of India.*

When the sun is over your head, there will be no shadow. Similarly, when faith is steady in your head, it should not cast any shadow of doubt.

*-Atharva Veda-*

The 'Sama Veda' is the yog of song. It consists of various hymns of the 'Rig-Veda' put to a different and more-musical chant. Hence the text of the 'Sama-Veda' is a reduced version of the 'Rig-veda'. It's secreat is in its musical annotation and rendering. The 'Sama-Veda' represents the ecstasy of spiritual knowledge and the power of devotion.

'The Rig-Veda' is the word, the 'Sama-Veda' is the song or the meaning.

*-Sama-Veda-*

Meet together, speak together. Let your mind be of one accord. As the Gods of old, being of one mind, accept their share of the sacrifice. This is power of 'Satsanga'.

*-Rig-Veda-*

All the Vedas are the source of Dharma just as butter is pervading in milk. Dharma is the unseen support of the entire creation and remains unaffected at all times.

*Hindu*

# ସୂଚୀ ପତ୍ର


## ଋଗ୍‌ବେଦ

| | | |
|---|---|---|
| ୦୧. | ବେଦ ମାହାତ୍ମ୍ୟ | ୦୧ |
| ୦୨. | ପ୍ରକୃତି ପୂଜା | ୦୩ |
| ୦୩. | ସରସ୍ୱତୀ | ୦୫ |
| ୦୪. | ମରୁଦ୍‌ଗଣ | ୦୭ |
| ୦୫. | ଦେବକୃପା | ୦୯ |
| ୦୬. | ଉଷା ଦେବୀ | ୧୧ |
| ୦୭. | ଜ୍ଞାନ ସୂର୍ଯ୍ୟ | ୧୪ |
| ୦୮. | ସମଭାବ | ୧୬ |
| ୦୯. | ଦେବରାଜ | ୧୭ |
| ୧୦. | ଜାତଦେବ | ୧୯ |
| ୧୧. | ତତ୍ସବିତୁର୍ବରେଣ୍ୟ | ୨୧ |
| ୧୨. | ପ୍ରକୃତି ସୁରକ୍ଷା | ୨୩ |
| ୧୩. | ବ୍ରହ୍ମତେଜ | ୨୫ |
| ୧୪. | କୃଷି | ୨୭ |
| ୧୫. | ମିତ୍ରାବରୁଣ | ୨୯ |
| ୧୬. | ଅଶ୍ୱମେଧ ଯଜ୍ଞ ଓ ବଳି | ୩୧ |
| ୧୭. | ପ୍ରଜାପତି | ୩୩ |
| ୧୮. | ରାହୁଗ୍ରାସ | ୩୫ |
| ୧୯. | ଧନ ଓ ମନ | ୩୭ |
| ୨୦. | ପର୍ଜନ୍ୟ | ୩୯ |
| ୨୧. | ବୈଶ୍ୱାନରଦେବ (୧) | ୪୧ |
| ୨୨. | ଆକାଶ | ୪୩ |
| ୨୩. | ରୋଷାଗ୍ନି | ୪୫ |
| ୨୪. | ଅର୍ଥଲୋଭ | ୪୭ |
| ୨୫. | ଅଶ୍ୱିନୀକୁମାର ଦ୍ୱୟ | ୪୯ |
| ୨୬. | ପୃଥିବୀ | ୫୧ |
| ୨୭. | ଅନୁଶାସନ | ୫୩ |
| ୨୮. | ବୈଶ୍ୱାନର (୨) | ୫୫ |
| ୨୯. | ଦେବଗଣ | ୫୭ |
| ୩୦. | ନବଜୀବନ | ୫୯ |
| ୩୧. | ନମନ | ୬୧ |
| ୩୨. | ବୃକ୍ଷ ପୂଜା | ୬୩ |
| ୩୩. | କବଚ | ୬୫ |
| ୩୪. | ପୋଷ୍ୟ ପୁତ୍ର | ୬୭ |
| ୩୫. | ପତିତ | ୬୯ |
| ୩୬. | ବିଦ୍ୟୁତ୍ | ୭୧ |
| ୩୭. | ମହାଦାନୀ | ୭୩ |
| ୩୮. | ଚେତନ ପ୍ରବାହ | ୭୫ |
| ୩୯. | ନାରୀ ସୁରକ୍ଷା | ୭୭ |
| ୪୦. | ମଣ୍ଡୁକ | ୭୯ |
| ୪୧. | ମିତ୍ର | ୮୧ |
| ୪୨. | ଜନ୍ମରହସ୍ୟ | ୮୩ |
| ୪୩. | ଜୀବନ ସଂଗ୍ରାମ | ୮୫ |
| ୪୪. | ଶାନ୍ତି | ୮୭ |
| ୪୫. | ଜଳଦେବ | ୮୯ |
| ୪୬. | ତ୍ରିୟମ୍ବକ | ୯୧ |
| ୪୭. | ବୃତ୍ରାସୁର | ୯୩ |
| ୪୮. | ମନ | ୯୫ |
| ୪୯. | ଅଭିଶାପ | ୯୭ |
| ୫୦. | ଦେବ ବନ୍ଦନା | ୯୯ |
| ୫୧. | ବାୟୁଦେବ (୧) | ୧୦୧ |
| ୫୨. | ଏକ | ୧୦୩ |
| ୫୩. | ଗାଈ | ୧୦୫ |
| ୫୪. | ଧ୍ୱନି ଉପଚାର | ୧୦୭ |
| ୫୫. | ଅନ୍ତରିକ୍ଷୀୟ ସୋମପ୍ରବାହ | ୧୦୯ |
| ୫୬. | ପ୍ରାକୃତିକ ସୋମରସ | ୧୧୧ |
| ୫୭. | ଦ୍ୟୂତକ୍ରୀଡ଼ା | ୧୧୩ |
| ୫୮. | ଅଗ୍ନି ଉଦ୍ଦୀପନା | ୧୧୫ |
| ୫୯. | ଅଲକ୍ଷ୍ମୀ ଦେବୀ | ୧୧୭ |
| ୬୦. | ବଧୂ ଆଶୀର୍ବାଦ | ୧୧୯ |
| ୬୧. | ସୃଷ୍ଟି ରହସ୍ୟ | ୧୨୧ |
| ୬୨. | ବିବସ୍ୱାନ୍ | ୧୨୩ |
| ୬୩. | ବିରାଟ ପୁରୁଷ | ୧୨୫ |

୬୪. ଆଶୀର୍ବାଦ ମନ୍ତ୍ର ୧୨୭
୬୫. ଉର୍ବଶୀ ଓ ପୁରୁରବା ୧୨୯
୬୬. ଜ୍ୟୋତିର୍ଲତା ୧୩୩
୬୭. ଦାନ ଓ ଦକ୍ଷିଣା ୧୩୫
୬୮. ମହାନୁଭବତା ୧୩୭
୬୯. ସୃଷ୍ଟି ଯଜ୍ଞର ଛନ୍ଦ ୧୩୯
୭୦. ବନ ପ୍ରକୃତି ୧୪୧
୭୧. କାୟାକଳ୍ପ ୧୪୩
୭୨. ଶ୍ରଦ୍ଧା ୧୪୫
୭୩. ବାୟୁଦେବ ୧୪୭
୭୪. ଏକତା ୧୪୯
୭୫. ନୟନ ୧୫୦

## ଯଜୁର୍ବେଦ

୭୬. ବନୌଷଧି ୧୫୩
୭୭. ଯଜ୍ଞ ୧୫୫
୭୮. ଗୃହପ୍ରବେଶ ୧୫୭
୭୯. ତ୍ରିବିଧ ଆୟୁ ୧୫୯
୮୦. ଦିବ୍ୟ ଜୀବନ କାମନା ୧୬୧
୮୧. ରାଜାଭିଷେକ ୧୬୩
୮୨. ଦିବ୍ୟାନୁଶାସନ ୧୬୫
୮୩. ମଧୁ ମାଧବ ୧୬୭
୮୪. ଯଜ୍ଞ ଫଳ ୧୬୯
୮୫. ଦେଶାତ୍ମବୋଧ ୧୭୧
୮୬. ତେନତ୍ୟକ୍ତେନ ଭୁଞ୍ଜୀଥା ୧୭୩
୮୭. ଆହୁତି ୧୭୫
୮୮. ଶିବସଂକଳ୍ପମସ୍ତୁ (୧) ୧୭୭
୮୯. ସୁରା ୧୭୯

## ସାମବେଦ

୯୦. ଯଶ ୧୮୧
୯୧. ମହାବ୍ରତ ୧୮୩
୯୨. ରସାମୃତ ୧୮୫
୯୩. ଆତ୍ମା ୧୮୭
୯୪. ଜୀବନ ଚକ୍ର ୧୮୯
୯୫. ପ୍ରାର୍ଥନା ୧୯୧

## ଅଥର୍ବ ବେଦ

୯୬. ଅଥର୍ବାଋଷି ୧୯୨
୯୭. ଅତିଥି ସତ୍କାର ୧୯୩
୯୮. ଚେତନ ପ୍ରବାହ ୧୯୫
୯୯. ଦୁଇ ଶିଶୁ ୧୯୭
୧୦୦. ଅଗ୍ନି ୧୯୯
୧୦୧. ଉନ୍ନତ କର ୨୦୧
୧୦୨. ଦ୍ୱାସୁପର୍ଣ୍ଣ ୨୦୩
୧୦୩. ବାଣୀ ୨୦୫
୧୦୪. କାଳ ୨୦୭
୧୦୫. ରାଷ୍ଟ୍ର ଚେତନା ୨୦୯
୧୦୬. ବିଭାବରୀ ୨୧୦
୧୦୭. ସୂର୍ଯ୍ୟଦେବ ୨୧୨
୧୦୮. ପିତାର ପ୍ରାର୍ଥନା ୨୧୫
୧୦୯. କନ୍ୟାଦାନ ୨୧୭
୧୧୦. ପାଣିଗ୍ରହଣ ୨୧୯
୧୧୧. ବର ଓ ବଧୂ ୨୨୧
୧୧୨. ନବବଧୂ ଗମନ ୨୨୩
୧୧୩. ଶ୍ୱଶୁରାଳୟ ୨୨୫
୧୧୪. ପତି ଓ ପତ୍ନୀ ୨୨୭
୧୧୫. ବଧୂ ଧର୍ମ ୨୨୮
୧୧୬. ଜଳ ୨୩୧
୧୧୭. ଦେବୀ ୨୩୩
୧୧୮. ସ୍ୱପ୍ନ ୨୩୫
୧୧୯. ଆବାହନ ୨୩୭
୧୨୦. ମରିବାକୁ କରନାହିଁ ଇଚ୍ଛା ୨୩୯
୧୨୧. ତୃଷ୍ଣା ୨୪୧
୧୨୨. ଇନ୍ଦ୍ରଦେବ ଓ ଆକାଶ ୨୪୩
୧୨୩. ବ୍ରାହ୍ମଣ ୨୪୫
୧୨୪. ଅମାବାସ୍ୟା ୨୪୭
୧୨୫. ଆଚରଣ ସଂହିତା ୨୪୯
୧୨୬. ସ୍ୱସ୍ତିବଚନ ୨୫୧
୧୨୭. ବିଶ୍ୱଶାନ୍ତି ୨୫୩
୧୨୮. ପୂର୍ଣ୍ଣମିଦଂ ୨୫୫

# ଋଗ୍‌ବେଦ

## ବେଦ ମାହାତ୍ମ୍ୟ

- ବେଦୋଽଖିଲୋ ଧର୍ମମୂଳଂ
- ଧର୍ମଜିଜ୍ଞାସମାନାନାଂ ପ୍ରମାଣଂ ପରମଶ୍ରୁତିଃ ।...ମନୁ

'ବେଦ' ସର୍ବ ଧର୍ମର ମୂଳାଧାର । ଏହାର ଦିବ୍ୟ ମହାନ୍‌ବାଣୀ ସର୍ବଧର୍ମର ସାରସର୍ବସ୍ୱ ଅଟେ । ମାନବିକ କର୍ତ୍ତବ୍ୟବୋଧର ଜିଜ୍ଞାସୁମାନଙ୍କପାଇଁ, ଏହା ଏକ ପ୍ରାମାଣିକ ଗ୍ରନ୍ଥ । ଏହା ଅନନ୍ତ ଜ୍ଞାନରାଶିର ମହୋଦଧି ।

ସର୍ବଧର୍ମମୟ ବେଦ, ସର୍ବଜ୍ଞାନମୟ
ପରଂବ୍ରହ୍ମ ଦର୍ଶନର ଦିବ୍ୟ ଭାବମୟ-
ଅଟେ ଏହି ଶ୍ରୁତି,
ଦିବ୍ୟତାର ଅକ୍ଷୟ ବିଭୂତି ।

ଏହା ଅଟେ ଅପୌରୁଷେୟ
ଦିବ୍ୟାନୁଭୂତିର ଏହା ଚେତନା ଚିନ୍ମୟ,
ଅନ୍ତଃସ୍ଫୁରଣର ଏହା ଅବ୍ୟକ୍ତ ରହସ୍ୟ
କିଛି ବ୍ୟକ୍ତ କିଛି ବି ଅବ୍ୟକ୍ତ,
ତ୍ରିକାଳର ଜ୍ଞାନଧାରା ଏଥି ପ୍ରବାହିତ
ଅକଳିତ ଅଟେ ତା' ଅବଧି
ପ୍ରତ୍ୟକ୍ଷ ପ୍ରମାଣ ଆଉ ସମ୍ଭାବନା- ଊର୍ଦ୍ଧ୍ୱ ତା' ପରିଧି ।

ଏହାଅଟେ ବେଦର ବେଦତ୍ୱ
ସର୍ବଜ୍ଞାନ ଏଥି ସୁରକ୍ଷିତ-
ପରାଚେତନାରେ,
ସୂକ୍ଷ୍ମ ତରଙ୍ଗ ରୂପରେ
ରୂପମୟ ରୂପହୀନ ଲୟ ବିଲୟରେ ।
ଦିବ୍ୟଋଷିଗଣ,
ତପୋବଳେ ବେଦଜ୍ଞାନ
ଲଭିଥାନ୍ତି ପୁଣ ।।

•

ଉତ ମନ୍ୟେ ପିତୁରଦ୍ରୁହୋ ମନୋ ମାତୁର୍ମହି ସ୍ୱତବସ୍ତଦ୍ଧବୀ ମଭିଃ
ସୁରେତସା ପିତରା ଭୂମ ଚକ୍ରତୁରୁରୁ ପ୍ରଜାୟା ଅମୃତଂ ବରୀମଭିଃ ।

ଋ.ସଂହିତା, ଖ୧, ମଣ୍ଡଳ୧, ମନ୍ତ୍ର ୧୬୫୮

ଏହି ମଙ୍ଗଳମୟୀ ପୃଥିବୀ ଆମର ମାତା ଏବଂ ଆକାଶରେ ଥିବା ସୂର୍ଯ୍ୟଦେବ ଆମର ପିତା ସଦୃଶ । ସେମାନଙ୍କର ଆନନ୍ଦ ଓ ସନ୍ତୋଷ ବିଧାନ ପାଇଁ ଆମେ ପ୍ରାର୍ଥନା କରୁଛୁ । ସୃଷ୍ଟିଶୀଳା 'ପ୍ରକୃତି' ଏବଂ ସର୍ଜନାର ଉତ୍ସ ଆକାଶର ମିଳିତ ସାମର୍ଥ୍ୟ, ପୃଥିବୀକୁ ଉତ୍ପାଦନକ୍ଷମ କରିଥାଏ । ଏହାଫଳରେ, ପ୍ରଜାମାନଙ୍କର ବା ପୃଥିବୀବାସୀଙ୍କର ପରିପୋଷଣ ହେବା ସହିତ ସେମାନେ ଅଗ୍ରଗାମୀ ହେବାକୁ ସହାୟତା ପାଇଥାନ୍ତି । ଏହା ଅନନ୍ତ ପ୍ରକୃତିର ସର୍ବୋତ୍ତମ କର୍ତ୍ତବ୍ୟ । ଆମେ ପ୍ରକୃତିର ସନ୍ତାନ ଭାବରେ, ତାର ସୁରକ୍ଷା କରିବା ଏବଂ ପ୍ରକୃତିକୁ ନିରୁପଦ୍ରବ ରଖିବା ଉଚିତ ।

ବି.ଦ୍ର: ବିଶ୍ୱପ୍ରକୃତି ଅନନ୍ତ ପ୍ରକୃତିର ଏକ ଅଂଶବିଶେଷ । ଏହାକୁ 'ବହିଃପ୍ରକୃତି' କୁହାଯାଏ । ଏହା ବିଶ୍ୱଚରାଚରର ମାତାପରି ଏବଂ ଦ୍ୟୁଲୋକ ବା ଆକାଶ ଏହାର ପିତାପରି । ପ୍ରକୃତି,ଉତ୍ପାଦନର ଆଧାର କିନ୍ତୁ ଦ୍ୟୁଲୋକବାସୀ ସୂର୍ଯ୍ୟ, ଉତ୍ପାଦକର ଭୂମିକା ତୁଲାଇଥାନ୍ତି । ଭୂଲୋକ ଓ ଦ୍ୟୁଲୋକ, ମାତୃ ପିତୃ ଭାବର ମୂଳାଧାର । ଉଭୟଙ୍କର ସଂକଳ୍ପରୁ ସୃଷ୍ଟି ସର୍ଜନା ସମ୍ଭବ ହୋଇଛି । ଉଭୟଙ୍କର ଏହି ସୃଜନ ପ୍ରକ୍ରିୟା, ପାଳନ ପୋଷଣ ଓ ବିକାଶ ଧାରାକୁ ଆମେ ସୁରକ୍ଷା ଓ ସମ୍ମାନ ଦେଲେ, ସେମାନଙ୍କର ଚିର ପ୍ରସନ୍ନ ରହିବ ଏବଂ ଦିବ୍ୟ ସୃଜନଧାରାରେ କୌଣସି ବ୍ୟତିକ୍ରମ ସୃଷ୍ଟି ହେବନାହିଁ । ଏହାହିଁ ସମଗ୍ର ସୂକ୍ତର ନିର୍ଯ୍ୟାସ ଏବଂ ଏହି ଭାବ ଭୂମିରେ କବିତାଟି ରଚିତ ହୋଇଛି ।

# ପ୍ରକୃତି ପୂଜା

ପ୍ରକୃତି ଆମର ମାତା
ଏ ଆକାଶ, ସୂର୍ଯ୍ୟଦେବ ପିତା,
ସିଏ ଆମ ଜନ୍ମଦାତା
ସିଏ ମଧ୍ୟ ପାଳନ କରତା ।
ତାଙ୍କର ସନ୍ତାନ ସର୍ବେ, ସ୍ଥାବର ଜଙ୍ଗମ
ମଣ୍ଡିଛନ୍ତି ମାତା ପିତା କୋଳ ସିଂହାସନ ।

ମାତା ପିତା ସ୍ନେହଭରା ଆଶୀର୍ବାଦ ନିତି
ପାଳନ ପୋଷଣ ଦିବ୍ୟ ଐଶ୍ୱର୍ଯ୍ୟ ବିଭୂତି-
ଲଭିବା, କରିବା ଚାଲ ତାଙ୍କ ସ୍ତୁତିଗାନ
ତୋଷିବାକୁ ସେହି ବେନି ଶ୍ରଦ୍ଧାମୟ ମନ ।

ଉଭୟଙ୍କ ସଂକଳ୍ପରୁ ଉତ୍ପାଦନକ୍ଷମ ଏ' ପ୍ରକୃତି
ପ୍ରଜାଗଣ ତା' ସନ୍ତାନ, ଲଭିଥାନ୍ତି ଜୀବନ ବିଭୂତି ।
ସର୍ଜନାର ଯଜ୍ଞଧାରା ତୋଳି,
ହୋଇଥାନ୍ତି ଅଗ୍ରଗାମୀ
ସେ ଯଜ୍ଞରେ କର୍ମାହୁତି ଢାଳି ।

ଆମ ମଧ୍ୟେ ମାତା ପିତା
ଦେଇଛନ୍ତି ମନଟିଏ ରଚି,
ତାଙ୍କର ବି ସେଇପରି ମଧୁଭରା-
ମନଟିଏ ଅଛି,
ସନ୍ତୁଷ୍ଟ କରିବା ଆମେ
ସେ ମନକୁ ଦେଇ ପ୍ରସନ୍ନତା,
'ପ୍ରକୃତି ଓ ପରିବେଶରକ୍ଷା' ହେଉ-
ଜୀବନ ବାରତା,
ହେ ସନ୍ତାନ ଗଣ!
ଶପଥ ନେବା କରିବା ଏ ଲକ୍ଷ୍ୟ ପୂରଣ ।

•

- ପାବକା ନଃ ସରସ୍ୱତୀ ବାଜେଭିର୍ବାଜିନୀବତୀ
  ଯଜ୍ଞଂ ବଷ୍ଟୁ ଧିୟାବସୁଃ ।

ଋଗ୍ ୧ ।ମ ୧ ।ସୂକ୍ତ ୧ ।ମନ୍ତ୍ର ୨୮

ପବିତ୍ରତା ପ୍ରଦାନକାରିଣୀ, ଐଶ୍ୱର୍ଯ୍ୟମୟୀ ଦେବୀ ସରସ୍ୱତୀ,ଜ୍ଞାନ ଦାନ କରି ଆମର କର୍ମ ଯଜ୍ଞକୁ ସଫଳ କରନ୍ତୁ ।

- ମହୋ ଅର୍ଣ୍ଣଃ ସରସ୍ୱତୀ ପ୍ର ଚେତୟତି କେତୁନା
  ଧିୟୋ ବିଶ୍ୱା ବି ରାଜତି ।

ଋଗ୍ ୧ ।ମ ୧ ।ସୂକ୍ତ ୧ ।ମନ୍ତ୍ର୩୦

ଯେଉଁ ସରସ୍ୱତୀ ଦେବୀ, ନଦୀ ରୂପରେ ବିପୁଳ ଜଳ ପ୍ରବାହର ଅଧିକାରିଣୀ ସେହି ପୁଣ୍ୟତୋୟା ଦେବୀ, ସମସ୍ତଙ୍କ ମଧ୍ୟରେ ସୁ ମନ ପ୍ରତିଷ୍ଠାକରି, ସେମାନଙ୍କର ପ୍ରଜ୍ଞା ପ୍ରବାହକୁ ପ୍ରଖରିତ କରନ୍ତୁ ।

# ସରସ୍ୱତୀ

ନଦୀରୂପେ ପ୍ରବାହିତା ଦେବୀ ସରସ୍ୱତୀ
ତୁମେ ଗୋ ! ବିପୁଳ ଜଳଉତ୍ସର ଭଣ୍ଡାର,
ପବିତ୍ରମୟୀ ଗୋ ତୁମେ ! ପବିତ୍ର କାରିଣୀ,
ଶୁଦ୍ଧରୂପା ସ୍ରୋତସ୍ୱିନୀ ମହି ମଣ୍ଡଳର ।

ପୋଷଣଦାତ୍ରୀ ଗୋ ତୁମେ ! ପୁଣ୍ୟ ପ୍ରବାହିଣୀ
ମଙ୍ଗଳ ଦାୟିନୀ ଦେବୀ ମଙ୍ଗଳମୟୀ,
ଐଶ୍ୱର୍ଯ୍ୟ ବିଭବ ଦାତ୍ରୀ ଆଗୋ ସରସ୍ୱତୀ !
ତୁମେ ମହା ଯଶସ୍ୱିନୀ ଯଶପ୍ରଦା ଅୟୀ ।

ତୁମ କୂଳ ନିନାଦିତ ମୁନି ମନ୍ତ୍ର ଗାନେ
ଓଁ କାର ଝଙ୍କାର ନାଦେ ଝଙ୍କୃତ ତରଙ୍ଗ,
ତୁମ ଜଳ ମଧୁପର୍କ ମଥିତ ସର୍ବଦା
ଦିଶୁଥାଏ ସତେ ଅବା ଦୁଗ୍ଧଫେନନିଭ ।
ଯଜ୍ଞମୟୀ ଜଳ ପ୍ରବାହରେ
ମଗ୍ନ ସଦା, ତୀରବାସୀ ପବିତ୍ର ସେବାରେ ।

ପ୍ରଜ୍ଞା ପ୍ରବାହିଣୀ ଦେବୀ ଆଗୋ ସରସ୍ୱତୀ
ପ୍ରଖରିତ କର ପ୍ରାଣେ ପ୍ରଜ୍ଞାର ପ୍ରବାହ,
ଜ୍ଞାନ, ଯଜ୍ଞ, କର୍ମ, ଧର୍ମ ନିଖିଳ ଜୀବନେ
ସୁଖ ଶାନ୍ତି ଯଶ କୀର୍ତ୍ତି ହେଉ ସମାରୋହ ।
ଶୁଭଙ୍କରୀ ଦେବୀ ସରସ୍ୱତୀ
ପ୍ରଜ୍ଞା ଦେବି ! ତୁମ ପଦେ ଭକ୍ତିର ପ୍ରଣତି ।
ଘେନ ଗୋ ଜନନୀ
ଜ୍ଞାନ ପ୍ରଦାୟିନୀ ।

•

- ପରା ହ ଯତ୍ସ୍ଥିରଂ ହଥ ନରୋ ବର୍ତୟଥା ଗୁରୁ
  ବି ଯାଥନ ବନିନଃ ପୃଥିବ୍ୟା ବ୍ୟାଶାଃ ପର୍ବତାନାମ୍ ।

ଋଗ୍ ୧।ମ ୧।ସୂ ୩୯।ମନ୍ତ୍ର ୪୭୪

ହେ ମରୁଦ୍‌ଗଣ । ତୁମେ ସୁଦୃଢ଼ ସ୍ଥିର ବୃକ୍ଷକୁ ନିଜର ଶକ୍ତି ବଳରେ ଉତ୍ପାଟନ କରିପାର । ମୂଳସ୍ଥ ଭୂମିକୁ କମ୍ପିତ କରିପାର, ତୁମେ ମଧ୍ୟ ଉତ୍ତୁଙ୍ଗ ପର୍ବତ ଅତିକ୍ରମ କରିପାର, ସେ ତୁମର ଗତିକୁ ବାଧା ଦେଇ ପାରେ ନାହିଁ । ତୁମେ ଅକ୍ଳେଶରେ ବନ ବୁକୁରେ ଉତ୍ପାତ ସୃଷ୍ଟି କରିପାର । ତୁମର ଶକ୍ତି ଅପ୍ରତିହତ ।

- ନାହି ବଃ ଶତ୍ରୁର୍ବିବିଦେ ଅଧି ଦ୍ୟବି ନ ଭୂମ୍ୟାଂ ବିଶାଦସଃ
  ଯୁଷ୍ମାକମସ୍ତୁ ତବିଷୀ ତନା ଯୁଜା ରୁଦ୍ରାସୋ ନୂ ଚିଦାଧୃଷେ ।

ମନ୍ତ୍ର ୪୭୫

- ଅସାମ୍ୟୋଜୋ ବିଭୃଥା ସୁଦାନବୋଽସ୍ୟମି ଧୂତୟଃ ଶବଃ
  ଋଷିଦ୍ୱିଷେ ମରୁତଃ ପରିମନ୍ୟବ ଇଷୁଂ ନ ସୃଜତ ଦ୍ୱିଷମ୍ ।

ଋଗ୍ ୧।ମ ୧।ସୂ ୩୯।ମନ୍ତ୍ର ୪୮୧

ହେ ମରୁଦ୍‌ଗଣ । ଦ୍ୟୁଲୋକ ଓ ଭୂଲୋକରେ ତୁମର କେହି ଶତ୍ରୁ ନାହାନ୍ତି । ଶତ୍ରୁ ସଂହାର ପାଇଁ ତୁମେ ଶକ୍ତି ବିସ୍ତାର କର ।

ହେ ରୁଦ୍ର ପୁତ୍ରଗଣ । ତୁମେ ଦାନଶୀଳ, ଅତ୍ୟନ୍ତ ପରାକ୍ରମୀ ଏବଂ ଶକ୍ତି ସମ୍ପନ୍ନ । ତୁମ ପରାକ୍ରମପାଇଁ ଶତ୍ରୁମାନେ ଭୟଭୀତହୋଇ ରହିଥାନ୍ତି । ଋଷିମାନଙ୍କୁ ଉତ୍ପୀଡିତ କରୁଥିବା ଅପଶକ୍ତିକୁ ତୁମେ ସଂହାର କର । ଶତ୍ରୁମାନଙ୍କୁ ପରାହତ କରିବାର ଶକ୍ତିବଳୟ ସୃଷ୍ଟି କରି ସେମାନଙ୍କ ଉପଦ୍ରବରୁ ରକ୍ଷାକର ।

# ମରୁଦ୍‌ଗଣ

ମରୁଦ୍‌ଗଣ ! ବିଶ୍ୱବନ୍ଦନୀୟ
ଶକ୍ତି ତୁମ ଅବ୍ୟୟ ଅକ୍ଷୟ,
ତୁମେ ସର୍ବମୟ
ଅତୁଳ ଅଜେୟ ।

ତୁମେ ସୃଷ୍ଟି କରିପାର ଭୁବନେ କମ୍ପନ
ପ୍ରଳୟ ଶକ୍ତିର ଦୂର୍ଗ ତୁମେ ମରୁଦ୍‌ଗଣ,
ତୁମ କୋପେ ସ୍ଥିର ବୃକ୍ଷ ହୁଏ ଧରାଶାୟୀ
ପ୍ରତିହତ କରିବାକୁ ବେଗ ତୁମ-
ଆଉ କେହି ନାହିଁ ।

ଉତ୍ତୁଙ୍ଗ ପର୍ବତ ତୁମେ ଶକ୍ତିବଳେ
କର ଅତିକ୍ରମ,
ଧ୍ୱଂସ କରିପାର ତୁମେ
ପୃଥିବୀର ଦିଗନ୍ତଜା ବନ ।

ରୁଦ୍ର ପୁତ୍ରଗଣ ! ତୁମ ଶକ୍ତିର ଝଲକେ
ଶତ୍ରୁପାତ କରି ପାର ଦ୍ୟୁଲୋକେ ଭୂଲୋକେ ।
ସେହି ଶକ୍ତିବଳେ ତୁମେ ବିଶ୍ୱମାନବର-
ଶତ୍ରୁକୁ ଦମନ କରି ଦୁଃଖ କର ଦୂର ।
ଆହେ ଶକ୍ତିଶ୍ୱର,
ବେଗବଳେ ମନୁଷ୍ୟକୁ କର ବେଗଶାଳୀ
ଶତ ବାଧାବିଘ୍ନ ଦେଇ ଟାଳି ।

ତୁମ ବିକଟାଳ ଧ୍ୱନି
ପ୍ରକମ୍ପିତ ମେଦିନୀ ମଣ୍ଡଳେ,
ଭୀତି ସଂଚାରଇ ମନେ
ବିଶ୍ୱ ବଳୟରେ ।

ବାୟୁଦେବ ରୂପେ ତୁମେ
ବିଶ୍ୱ ପ୍ରାଣାଧାର,
ରୁଦ୍ର ପୁତ୍ର ରୂପେ ତୁମେ
ଶକ୍ତିର ଭଣ୍ଡାର ।
କରୁଛୁ ପ୍ରାର୍ଥନା,
ଅଭୟ କର ହେ ଦାନ
ଲଭୁ ବିଶ୍ୱ ତୁମରି କରୁଣା ।

ଋଷି ଦ୍ରୋହୀ ଶତ୍ରୁଗଣ ହୁଅନ୍ତି ଉତ୍ପାତ
ମରୁଦ୍‌ଗଣ ! ସେମାନଙ୍କୁ କର ଉତ୍ପାଟିତ,
ଶତ୍ରୁପାତ ଶକ୍ତିଜାତ-
କର ଏ ଶରୀରେ,
ପ୍ରତିଘାତ ସହିବାକୁ
ଶକ୍ତି ରହୁ ବାରେ ।

ବୃଷ୍ଟିଧାରା ଜାଳ ମେଘ ପଟଳକୁ ବାହି
ରୂପରାଗେ ଶ୍ୟାମଶିରୀ
ପ୍ରକୃତିକୁ ଦେଇ,
ବୁହାଅ ହେ ଜୀବନ ପ୍ରବାହ
ଧରା ପୃଷ୍ଠେ ଆହେ ବାରିବାହ ।
ଭକ୍ତିଭରେ ଦେଉଛୁ ଆହୁତି
ଆହେ ବେଗ ପତି ।

•

# ଦେବକୃପା

ସ ଘା ବୀରୋ ନ ରିଷ୍ୟତି ଯମିନ୍ଦ୍ରୋ ବ୍ରହ୍ମଣସ୍ପତିଃ
ସୋମୋ ହିନୋତି ମର୍ତ୍ତ୍ୟମ୍ ।

ଋ.ସଂ୧।ମ୧।ସୂ୧୮।ମନ୍ତ୍ର୧୮୦

ମନୁଷ୍ୟ ଇନ୍ଦ୍ରଦେବଙ୍କଠାରୁ ସଂଗଠନ ଶକ୍ତି, ବ୍ରହ୍ମଣସ୍ପତିଙ୍କ ଠାରୁ ପ୍ରଜ୍ଞା, ଧନ, ଯଶ, ଐଶ୍ୱର୍ଯ୍ୟ ଏବଂ ସୋମ ଦେବଙ୍କଠାରୁ ପୋଷଣଶକ୍ତି ଲାଭକରି ଶକ୍ତିମାନ ହୋଇଛି । ଏହି ତିନି ଦେବତା, ଯଜ୍ଞହବି ପାନକରି ମନୁଷ୍ୟକୁ ଦିବ୍ୟ ବିଭୂତି ପ୍ରଦାନ କରିଥାନ୍ତି ।

ଶକ୍ତିମାନ ଅଟଇ ମାନବ
ତା' ମଧ୍ୟେ ଉଦିତ ହୁଏ ଦିବ୍ୟ ଅନୁଭବ,
ମିଳିଛି ଯା' ଦୈବୀ କୃପାବଳେ
ସେଥିପାଇଁ ଶକ୍ତିଶାଳୀ ଅଟେ ସେ ଭୂତଳେ ।
ଦେବରାଜ ଇନ୍ଦ୍ର ତାକୁ ଦେଇଛନ୍ତି ସଂଗଠନ ଶକ୍ତି
ତା' ଅନ୍ତରେ ଭରିଛନ୍ତି ସେ ଦିବ୍ୟ ବିଭୂତି,
ସେ ଶକ୍ତିରେ ଜୀବନ ତା' କରଇ ସଫଳ
ସଂହତି ବଳୟେ ଗଢ଼େ ସଂଗଠନ ବଳ ।

ବ୍ରହ୍ମଣସ୍ପତିଙ୍କ ଠାରୁ ଲଭିଛି ସେ ପ୍ରଜ୍ଞାର ବିଭୂତି
ସେପରା ଅଟନ୍ତି ସର୍ବ ଜ୍ଞାନ ଅଧିପତି,
ଧନ,ମାନ, ଯଶ, ଜ୍ଞାନ ଶକତି ଅମାପ
ଦେଇ ଦୂର କରିଥାନ୍ତି ଦୁଃଖ, ଶୋକ, ତାପ ।
ତାଙ୍କ ଠାରୁ ଲଭି, ଅଗ୍ରଗାମୀ ଶକ୍ତି ସ୍ରୋତ
ସେ ତେଣୁ 'ଉତ୍ତାନପାଦ' ନାମରେ ବିଖ୍ୟାତ ।

ପୋଷଣ ଶକ୍ତିର ପତି, ସୋମଦେବ' ତାକୁ
କରିଛନ୍ତି ଶକ୍ତିମାନ୍ ଦୁଃଖ ଟାଳିବାକୁ,
ବଞ୍ଚିବାକୁ ଜୀବନରେ ନ ହୋଇ ବଞ୍ଚିତ
ପ୍ରଖରିତ କରିଛନ୍ତି ଜୀବନର ସ୍ରୋତ ।
ତ୍ରିଦେବ ହୁଅନ୍ତି ତୁଷ୍ଟ ଯଜ୍ଞ ହବି ପାଇ
ତାଙ୍କରି ଆଶିଷେ ନର ଦେବତ୍ୱ ଲଭଇ,
ଲଭି ଅଛି ଯାହା ସିଏ ଦେବକୃପା ବଳେ
ବିନିଯୋଗ କରୁ ତାହା ବିଶ୍ୱର ମଙ୍ଗଳେ ।

•

- ସହ ବାମେନ ନ ଉଷୋ ବ୍ୟୁଚ୍ଛା ଦୁହିତର୍ଦ୍ଦିବଃ
  ସହ ଦ୍ୟୁମ୍ନେନ ବୃହତା ବିଭାବରି ରାୟା ଦେବି ଦାସ୍ୱତୀ ।

- ବି ଯା ସୃଜତି ସମନଂ ବ୍ୟ୧ର୍ଥିନଃ ପଦଂ ନ ବେତ୍ୟୋଦତୀ
  ବୟୋ ନକିଷ୍ଟେ ପପ୍ତିବାଂସ ଆସତେ ବ୍ୟୁଷ୍ଟୌ ବାଜିନୀବତି ।

- ବିଶ୍ୱମସ୍ୟା ନାନାମ ଚକ୍ଷସେ ଜଗଜ୍ଜ୍ୟୋତିଷ୍କୃଣୋତି ସୂନରୀ
  ଅପ ଦ୍ୱେଷୋ ମଘୋନୀ ଦୁହିତା ଦିବ ଉଷା ଉଚ୍ଛଦପା ସ୍ରିଧଃ ।

- ଉଷ ଆ ଭାହି ଭାନୁନା ଚନ୍ଦ୍ରେଣ ଦୁହିତର୍ଦ୍ଦିବଃ
  ଆବହନ୍ତୀ ଭୂର୍ଯସ୍ମଭ୍ୟଂ ସୌଭଗଂ ବ୍ୟୁଚ୍ଛନ୍ତୀ ଦିବିଷ୍ଟିଷୁ ।

ଋ.ସଂ୧। ମ୧। ମନ୍ତ୍ର ୫୬୭,୫୭୨,୫୭୪

ହେ ଆକାଶ ପୁତ୍ରୀ ଉଷା ଦେବି । ଆପଣ ଜ୍ୟୋତିର୍ମୟୀ, ଐଶ୍ୱର୍ଯ୍ୟଶାଳିନୀ ଦିଗ୍‌ବଧୂ ବେଶରେ ପ୍ରକାଶିତ ହୁଅନ୍ତୁ । ଆପଣଙ୍କ ଦର୍ଶନ ଓ କରୁଣା ଲାଭପାଇଁ ବିଶ୍ୱ ପ୍ରତୀକ୍ଷିତହୋଇ ଚାହିଁରହିଛି ।

ହେ ଉଷାଦେବି । ଆପଣ ସମସ୍ତଙ୍କ ମଧ୍ୟରେ କର୍ମ ପ୍ରେରଣା ସୃଷ୍ଟି କରନ୍ତି । ଧନ ପ୍ରାପ୍ତି ନିମିତ୍ତ ବ୍ୟକ୍ତି ବିଶେଷଙ୍କୁ ପୌରୁଷଯୁକ୍ତ କରନ୍ତୁ । ଆପଣ ଧନ, ଅନ୍ନ, ଯୌବନ ଦାନକରି ବିଶ୍ୱଜୀବନର ପ୍ରେରଣାଦାତ୍ରୀ ଅଟନ୍ତି । ଆପଣ ଯେପରି ଗତିଶୀଳ, ଆପଣଙ୍କ ସହିତ ସାରାବିଶ୍ୱମଧ୍ୟ ସେପରି ଚଳଚଞ୍ଚଳ । ପକ୍ଷିମାନେ ଆପଣଙ୍କ ଠାରୁ କର୍ମ ପ୍ରେରଣା ନେଇ ନୀଡ଼ ତ୍ୟାଗ କରିଥାନ୍ତି ।

ଜ୍ୟୋତିର୍ମୟୀ ଉଷାଦେବୀଙ୍କୁ ସାରାବିଶ୍ୱ ଭକ୍ତି ନମ୍ର ନୟନରେ ଦର୍ଶନ କରେ । ସେ ବିଶ୍ୱବାସୀଙ୍କ ପାଇଁ ସୁଖ ସୌଭାଗ୍ୟନେଇ ପ୍ରକାଶିତ ହୁଅନ୍ତି । ତାଙ୍କ ଆବିର୍ଭାବରେ ଦୁର୍ଭାଗ୍ୟ ରୂପ ଅନ୍ଧକାର ଦୂର ହୋଇଯାଏ ଏବଂ ବିଶ୍ୱ ଜୀବନ ଆହ୍ଲାଦିତ ହୁଏ ।

# ଉଷାଦେବୀ

ଆକାଶ ନନ୍ଦିନୀ ଉଷେ ! ତମିସ୍ରା ତାରିଣୀ
ତୁମେ ଆଗୋ ଏ ବିଶ୍ୱର ରୂପପ୍ରଦାୟିନୀ
ଦିଗ୍‌ବଧୂ ରୂପେ,
ଉଭାହୁଅ ଜ୍ୟୋତିର୍ମୟୀ ନବାରୁଣାଲୋକେ ।

ପ୍ରଶାନ୍ତ ମଧୁର ମୁଖମଣ୍ଡଳ ଉଜ୍ଜ୍ୱଳ
ଦର୍ଶନ କରିବାପାଇଁ ଏ'ବିଶ୍ୱ ପାଗଳ,
ଐଶ୍ୱର୍ଯ୍ୟଶାଳିନୀ ଉଷା ମହିମା ମଣ୍ଡିତା
ସୌନ୍ଦର୍ଯ୍ୟମୟୀ ଗୋ ତୁମେ
ସୁକୁମାରୀ ରୂପସମନ୍ୱିତା ।
ତୁମପଦେ ପ୍ରଣମନ୍ତି ଏ' ବିଶ୍ୱ ସକଳ
ମଙ୍ଗଳ ଦାୟିନୀ ଉଷେ । ବିଶ୍ୱର ମଙ୍ଗଳ-
ସମ୍ପାଦନେ ପ୍ରକଟିତା ପ୍ରାଚୀବଳୟରେ,
କର୍ମର ପ୍ରେରଣା ଦେଇ ନିର୍ବେଦ ମହିରେ ।
ସର୍ବେ ହୁଅନ୍ତି ତତ୍ପର,
ପ୍ରେରଣା ଆଧାର ଉଷା ସର୍ବପ୍ରାଣାଧାର ।

ଉଷା ତୁମେ ଅନ୍ନଦାତ୍ରୀ, ଧନ ଓ ଯୌବନ-
ଦାନକର ଏ ବିଶ୍ୱକୁ,
ତୁମସାଥେ କରି ଚଳମାନ ।
ଆଗୋ ଚଞ୍ଚଳିକା !
ସୁଖ ସୌଭାଗ୍ୟ ପ୍ରେରଣା
ଶାନ୍ତି ପ୍ରଦାୟିକା ।

କଲ୍ୟାଣମୟୀ ଗୋ ତୁମେ !
ତୁମ କୋଳେ ହସୁଛି ପ୍ରକୃତି,
ଆବେଗରେ ଚାହିଁଥିଲା ତୁମ ଆଗମନ
ଅତିକ୍ରମି ଦୀର୍ଘ ଘନରାତ୍ରି ।

ଭରିଦିଅ ଅଙ୍ଗେ ତା'ର ଯୌବନ ପୁଲକ
ମାଖିଦିଅ ଆଗୋ ଉଷେ ! ଉଷାର ଆଲୋକ ।
ନୀଡ଼ବଦ୍ଧ ପକ୍ଷୀଗଣ
ଉଡ଼ିଯାନ୍ତୁ ବିପୁଳ ବିତାନେ,
କର୍ମପ୍ରେରଣାରେ ଭରି ତୁମ ଯଶଗାନେ ।
ଏ ବିଶ୍ୱଭୁବନ ସାଥେ ଦିଗାଙ୍ଗନା ଗଣ
ଧରି ପୁଷ୍ପାଞ୍ଜଳି ହାତେ କରନ୍ତି ବନ୍ଦନ ।

ଆଗୋ ଉଷେ ! ଭୁବନ ବନ୍ଦିତା,
ଆଲୋକ ପବିତ୍ରମୟୀ ମହିମା ମଣ୍ଡିତା
ନିର୍ବଳ ନିସ୍ତେଜ ଯିଏ ନିରବିତ ଘନ ଅନ୍ଧକାରେ,
କରିଦିଅ ଶକ୍ତିଶାଳୀ ଭରି ଦେଇ ଶକ୍ତିର ସମ୍ଭାରେ ।

ପୁରୁଷାର୍ଥ ପ୍ରେରଣାରେ କର ଦୀପ୍ତିମନ୍ତ
କର୍ମର ପ୍ରବାହ ଛୁଟୁ ଏ ବିଶ୍ୱ ଦିଗନ୍ତ ।
କଲ୍ୟାଣକାରିଣୀ ଆଗୋ ଜ୍ୟୋତିର୍ମୟୀ ଉଷା !
ବିଶ୍ୱବୁକୁ ଲିଭାଅ ଗୋ ! ଦୁଃଖର ତମିସ୍ରା,
ଘେନ ଆମ ନୈବ୍ୟକ୍ତ ନମନ
ଜ୍ୟୋତିର୍ମୟୀ ଦେବୀ ଆଗୋ !
ସୁଧାସିକ୍ତ କରତୁମେ ଏ ବିଶ୍ୱ ଜୀବନ ।

•

ସୁପର୍ଣ୍ଣା ଏତ ଆସତେ ମଧ୍ୟ ଆରୋଧନେ ଦିବଃ
ତେ ସେଧନ୍ତି ପଥୋ ବୃକଂ ତରନ୍ତଂ ଯହ୍ୱତୀରପୋ
ବିତ୍ତଂ ମେ ଅସ୍ୟ ରୋଦସୀ ।

ଋ.ସଂ ୧। ମ ୧। ସୂ ୧୦୫। ମନ୍ତ୍ର ୧୧୫୭

ଦିବ୍ୟଲୋକର ମଧ୍ୟଭାଗରେ ଏକ ଜ୍ୟୋତିର୍ମୟପକ୍ଷୀ ଆଲୋକିତ ପକ୍ଷ ବିସ୍ତାର କରି ବାସକରେ । ଅନ୍ଧକାର ଜର୍ଜରିତ ବିଶ୍ୱବାସୀଙ୍କୁ ଆଲୋକିତ ମାର୍ଗ ପ୍ରଦର୍ଶନ କରି ସେମାନଙ୍କୁ ଆଲୋକ ପଥର ସନ୍ଧାନ ଦିଏ ।

ବି:ଦ୍ର : ମନ୍ତ୍ରଟିର ଏହି ପ୍ରତୀକ ଅର୍ଥ ଭିତରେ ଏକ ଗୂଢ଼ାର୍ଥ ନିହିତ ଅଛି । ମନୁଷ୍ୟ ଅଜ୍ଞତାର ଅନ୍ଧକାର ଗର୍ଭରେ ସର୍ବଦା ବୁଡ଼ି ରହିଥାଏ । ଜ୍ୟୋତିର୍ମୟ ପକ୍ଷୀ ରୂପକ ଜ୍ଞାନସୂର୍ଯ୍ୟ ପ୍ରକାଶିତ ହୋଇ, ଜ୍ଞାନ ରଶ୍ମିଦ୍ୱାରା ତାର ଅଜ୍ଞାତ ପଥକୁ ଆଲୋକିତ କରନ୍ତି । ସେ ଜ୍ଞାନାଲୋକରେ ଆଲୋକିତ ହେବା ଫଳରେ, ତା ହୃଦୟର ଅନ୍ଧକାର ଗହ୍ୱରରେ ବାସ କରୁଥିବା ଷଡ଼ରିପୁ, ଯଥା - କାମ, କ୍ରୋଧ, ଲୋଭ, ମୋହ, ମଦ ଏବଂ ମାତ୍ସର୍ଯ୍ୟର ବିନାଶ ଘଟେ । ଏ ଗୁଡ଼ିକ ମଣିଷର ଇନ୍ଦ୍ରିୟଗତ ପ୍ରବୃତ୍ତି । ଏଠାରେ 'ଜ୍ଞାନ' ହିଁ ସୂର୍ଯ୍ୟର ପ୍ରତୀକ ।

ଏହି ମନ୍ତ୍ର ମାଧ୍ୟମରେ ବିଶ୍ୱ ମଙ୍ଗଳକାମୀ ଋଷି, ମାନବ ସମାଜ ଜ୍ଞାନଦୀପ୍ତ ହେବା ପାଇଁ ପ୍ରାର୍ଥନା କରୁଛନ୍ତି ।

## ଜ୍ଞାନସୂର୍ଯ୍ୟ

କି ସୁନ୍ଦର ପକ୍ଷୀଟିଏ ଉଡୁଛି ଆକାଶେ
ଦିବ୍ୟଲୋକ ମଧ୍ୟଭାଗେ ତା' ନୀଡ଼ ନିଳୟ,
ଆଲୋକର ପରଝାଡ଼ି ଉଡ଼ଇ ଗଗନେ
କେଡ଼େ ଲୋଭନୀୟ ସେତ କେଡ଼େ ଶୋଭନୀୟ ।

ଅନ୍ଧକାର ପାରାବାରେ ବୁଡ଼ିଛି ପୃଥିବୀ
ଭରିଦିଏ ତା'ମଧ୍ୟରେ ଅମାପ ଶକତି,
ତା'କିରଣ କରେ ଧରି ଉଠାଏ ତାହାକୁ
ରଚିବାକୁ ଯଜ୍ଞଧାରା ଦେବାକୁ ଆହୁତି ।

ଦିନେ ଆସି ପୃଥିବୀର ମଣିଷ ସକଳ
ପ୍ରାର୍ଥନା କରିଲେ ତାଙ୍କୁ, ହେ ଜ୍ୟୋତିଃ ବିହଙ୍ଗ !
ଘନ ଅନ୍ଧକାରେ ଭରା ଆମର ହୃଦୟ
ଦୂର କର ସେ ତମସା, ଆହେ ଜ୍ୟୋତିର୍ମୟ !

ଆନନ୍ଦେ ସେ ପୂର୍ଣ୍ଣକଲେ ତା' ପୁଣ୍ୟ ଯାଚନା
'ଜ୍ଞାନାଲୋକେ' ଭରିଦେଲେ ହୃଦୟ ତାହାର,
କାମ, କ୍ରୋଧ, ମୋହ, ମଦ, ଆଦି ରିପୁଗଣ
ହୃଦୟ ଗହ୍ୱରୁ ତା'ର କରିବାକୁ ଦୂର ।

ଏ ଭବ ଜଳଧି ଜଳେ ବୁଡ଼ିଛି ଜୀବନ
ମାୟା, ମୋହ, ହିଂସା, ଈର୍ଷା, କପଟ ସ୍ୱଭାବେ
ହୁଏ ନିତି ଛଟପଟ ତା' ଯନ୍ତ୍ରଣା ଘାତେ
ତ୍ରାହି ତ୍ରାହି ଡ଼ାକଛାଡ଼େ ପଡ଼ି ସେ ଦୁରିତେ ।
ଅଜ୍ଞାନତା ରାହୁଗ୍ରାସ ଦୁଃଖେ ଜର୍ଜରିତ
ମାନବକୁ କରିବାକୁ ତହୁଁ ପରିତ୍ରାଣ,
ଉଭାହେଲେ 'ଜ୍ଞାନସୂର୍ଯ୍ୟ' ଆଲୋକ ବିସ୍ତାରି
ଜ୍ଞାନଦୀପ୍ତ କଲେ ତାକୁ ହୋଇ ଜ୍ୟୋତିଷ୍ମାନ୍ ।

•

**"ବୟମଗ୍ନେ ଅର୍ବତା ବା ସୁବୀର୍ଯ୍ୟଂ
ବ୍ରହ୍ମଣା ବା ଚିତୟେମା ଜନାଁଅତି,
ଅସ୍ମାଙ୍କ ଦ୍ୟୁମ୍ନମଧି ପଞ୍ଚ କୃଷ୍ଟିଷୁଚ୍ଚା
ସ୍ୱ୧ର୍ଣ୍ଣ ଶୁଶୁଚୀତ ଦୁଷ୍ଟରମ୍ ।"**

ଋ.ସଂ ପ୍ରଥମ ୧ । ମ୨ । ସୂ୨ । ମନ୍ତ୍ର ୨୦୩୨

ହେ ଅଗ୍ନି ଦେବ! ଆମେ ସମାଜରେ ଶକ୍ତି, ସାମର୍ଥ୍ୟ, ପରାକ୍ରମ ଓ ଜ୍ଞାନ ବଳରେ ଶ୍ରେଷ୍ଠ ସ୍ଥାନ ଅଧିକାର କରୁ। ଆମର ଜ୍ଞାନଲବ୍ଧ ସମସ୍ତ ଐଶ୍ୱର୍ଯ୍ୟ ଓ ବିଭୂତି, ବିଶ୍ୱର ମଙ୍ଗଳ ପାଇଁ ନିୟୋଜିତ ହେଉ। କୌଣସି ଭେଦଭାବ ନରଖି, ସମାଜର ସବୁ ବର୍ଗର ଲୋକଙ୍କ ମଧ୍ୟରେ ସୂର୍ଯ୍ୟଙ୍କ ବିଭୂତି ପରି ଏହା ଉପଲବ୍ଧ ହେଉ। ଏହା ସମ ଅଧିକାର ଭୁକ୍ତ।

## ସମଭାବ

ହେ ଅଗ୍ନି ! ଆମକୁ ତୁମେ କର ଶକ୍ତିଶାଳୀ
ପରାକ୍ରମ ବୁଦ୍ଧିବଳ ଜ୍ଞାନକୁ ପ୍ରଜ୍ୱଳି,
ମାନବ ସମାଜେ ଆମେ ହେଉ ସର୍ବଶ୍ରେଷ୍ଠ
ବିଦ୍ୟା, ଧନ, ଜ୍ଞାନେ ଆମେ ହେଉ ହେ ବରିଷ୍ଠ ।

ଆମର ଦୁର୍ଲଭ ଜ୍ଞାନ ବିଭୂତି ସକଳ
ମାନବ ସମାଜ ଲଭି, ହେଉ ତା' ମଙ୍ଗଳ,
ଯେ ଅମୂଲ୍ୟ ଧନଲାଭ, କରୁ ବୁଦ୍ଧିବଳେ
ସୁଫଳ ଲଭନ୍ତୁ ତହୁଁ ଜଗତେ ସକଳେ ।

ନରହୁ ତହିଁରେ ଲେଶ ଜାତିଧର୍ମ ଭେଦ
ଉଚ୍ଚ, ନୀଚ, ବଡ଼ସାନ, ନରହୁ ବିଭେଦ,
ଅଟଇ ବ୍ୟକ୍ତିର ଯାହା ଦୁର୍ଲଭ ବିଭବ
ଏ ମାନବ ଜାତିପାଇଁ ହେଉ ତା' ସୁଲଭ ।

ସମସ୍ତେ କରନ୍ତୁ ଭୋଗ ଅଟେ ଯାହା ଶ୍ରେୟ
ଆନନ୍ଦ ଲଭନ୍ତୁ ସର୍ବେ ଯାହା କିଛି ପ୍ରେୟ,
ଯେ ଯାହା ପାଇଛି ଲାଗୁ ପର ଉପକାରେ
ଲଗାଅ ଅର୍ଜିତ ଧନ ସମାଜ ସେବାରେ ।

ଅଟନ୍ତି ସୂର୍ଯ୍ୟ ଦେବତା ଆମ ପ୍ରାଣପିତା
ମଙ୍ଗଳ ବିଧାନକାରୀ ଜଗତ କରତା,
ତାଙ୍କର ବିଧାନ ଅଟେ, 'ସର୍ବେ ସମଦୃଷ୍ଟି'
ସମଭାବେ ସେ ଦିଅନ୍ତି ସର୍ବେ ସମଜ୍ୟୋତିଃ ।

ସମଭାବେ ସବୁସ୍ଥାନେ, ସମପରିମାଣେ
ସମାଜର ବର୍ଗହୀନ ଯେତେ ସବୁଜନେ,
ଗଛଲତା ପଶୁପକ୍ଷୀ ସରସୃପ ଆଦି
ତାଙ୍କର ଅମୂଲ୍ୟ ଦାନ ସରବେ ଲଭନ୍ତି ।
ତାଙ୍କ ପଥ କରିବା ବରଣ,
ବାଣ୍ଟି ଦେବା ବିଶ୍ୱହିତେ ବିଦ୍ୟା, ବୁଦ୍ଧି ଧନ ।

•

# ଦେବରାଜ

"ଇନ୍ଦ୍ରଃ ସମସ୍ସୁ ଯଜମାନମାର୍ଯ୍ୟଂ ପ୍ରାବଦ୍ୱିଶ୍ୱେଷୁ ଶତମୂତିରାଜିଷୁ
ସ୍ୱର୍ମୀଲହେଷ୍ୱାଜିଷୁ । ମାନବେ ଶାସଦବ୍ରତାନ୍ତ୍ୱଚଂ କୃଷ୍ଣାମରନ୍ଧୟତ୍ ।
ଦକ୍ଷନ୍ନ ବିଶ୍ୱଂ ତତୃଷାଣମୋଷତି ନ୍ୟର୍ଶସାନମୋଷତି ।

ଋ.ସଂ ।ମ୧ ।ମନ୍ତ୍ର୧୪୬୩

ପ୍ରଭୁ ଇନ୍ଦ୍ରଦେବ ବିପୁଳ ଐଶ୍ୱର୍ଯ୍ୟ ସମ୍ପନ୍ନ ଏବଂ ସାରା ବିଶ୍ୱର ରକ୍ଷଣକର୍ତ୍ତା । ଶତ ସଂଘର୍ଷ ମଧ୍ୟରେ ସେ ବିଶ୍ୱ ଜଗତକୁ ସୁରକ୍ଷା ପ୍ରଦାନ କରନ୍ତି । ସେ ଅପଶକ୍ତି ମାନଙ୍କର ଶାସ୍ତି ବିଧାନ କରି, ଶିଷ୍ଟ ସମାହିତ ବ୍ୟକ୍ତିଙ୍କୁ ଶାନ୍ତି ଏବଂ ଅଭୟ ଦାନକରିଥାନ୍ତି । କ୍ରୁ କର୍ମରେ ଲିପ୍ତ ଲୋକମାନେ ତାଙ୍କ ଦ୍ୱାରା ନିଧନ ହୁଅନ୍ତି । ଅଗ୍ନିଦେବଙ୍କ ପରି ତାଙ୍କର ସଂହାରଶକ୍ତି ଅମାପ ।

ତୁମେ ଅଟ କ୍ରାନ୍ତିଦର୍ଶୀ, ଦେବରାଜ, ରାଜ ରାଜେଶ୍ୱର
ଅଟ ତୁମେ ତ୍ରିଲୋକ ଈଶ୍ୱର,
ଧରିଅଛ ବଜ୍ରବାଣ ହାତେ
ଅରାତି ଦଳନ କର ଶୂରଚକ୍ର ପାତେ ।
ଶୌର୍ଯ୍ୟର ପ୍ରତୀକ ତୁମେ ପାପୀ ପ୍ରପୀଡ଼କ
ମହା ପରାକ୍ରମୀ ତୁମେ ଅଭୟ ଦାୟକ ।
ଅପଶକ୍ତି ସଂହାର କରତା
ଶୁଭଙ୍କର ଶକ୍ତିଙ୍କର ତୁମେ ହର୍ତ୍ତା କର୍ତ୍ତା ।

କରିଥାଅ ଶାସ୍ତିଦାନ କଳଙ୍କିତ ଜନେ
ଶିଷ୍ଟ ସମାହିତେ ତୃପ୍ତ କର ଶାନ୍ତିଦାନେ ।
ତୁମେ ଅଟ ଧର୍ମର ପ୍ରତୀକ,
ତୁମ ପାଇଁ ତେଜୋଦୀପ୍ତ ଦ୍ୟୁଲୋକ ଭୂଲୋକ ।
ଦେଇଅଛ ଦାନଦୀକ୍ଷା ମାନବ ଜାତିକୁ
କର୍ତ୍ତବ୍ୟ ଓ କର୍ମଯଜ୍ଞେ ଧର୍ମେ ବଞ୍ଚିବାକୁ ।
ତୁମେ ଦିବ୍ୟ ମହାତେଜ ଧାରା,
ମହାଶକ୍ତି ଅଗ୍ନି ପରି ଊର୍ଦ୍ଧାୟିତ ପରା ।
ତୁମେ ଅଟ ତ୍ରିଲୋକର ସାଇଁ
ଜଗତ ମଙ୍ଗଳ କର ଧର୍ମ ରକ୍ଷା ପାଇଁ ।

•

- ମୟୋ ଦଧେ ମେଧିରଃ ପୂତଦକ୍ଷୋ ଦିବଃ
  ସୁବନ୍ଧୁର୍ଜନୁଷା ପୃଥିବ୍ୟାଃ
  ଅବିନ୍ଦନ୍ନୁ ଦର୍ଶତମପ୍ସ୍ୱ୧ ନ୍ତର୍ଦେବାସୋ
  ଅଗ୍ନିମପସି ସ୍ୱସୃଣାମ୍ ।

ମନ୍ତ୍ର ୨୪୩୮

- ଅବର୍ଧୟନ୍ତ୍ସୁଭଗଂ ସପ୍ତ ଯହ୍ୱୀଃ ଶ୍ୱେତଂ
  ଯଜ୍ଞାନମରୁଷଂ ମହିତ୍ୱା
  ଶିଶୁଂ ନ ଜାତମଭ୍ୟାରୁରଶ୍ୱା ଦେବାସୋ
  ଅଗ୍ନିଂ ଜନିମନ୍ୱପୁଷ୍ୟନ୍ ।

ଋ.ସଂ ଭାଗ ୨ । ମ୩ । ସୂ୧ । ମନ୍ତ୍ର ୨୪୩୯

ପ୍ରଭୁ ଅଗ୍ନିଦେବ, ପ୍ରବହମାନ ଜଳଧାରା ମଧ୍ୟରେ ସଂଗୋପିତ ହୋଇ ରହିଥିଲେ । ସୃଷ୍ଟିଯଜ୍ଞ ଆରମ୍ଭ କରିବା ପାଇଁ ଦେବତାମାନେ ତାଙ୍କୁ ଖୋଜି ଖୋଜି ସେଠାରୁ ପାଇଲେ । ତା'ପରେ ତାଙ୍କୁ ସ୍ତୁତି କରି, ସେହି ନବଜାତ ଶିଶୁକୁ ଦେବତାମାନେ, ଅଶ୍ୱ, ନିଜ ଶିଶୁକୁ ପାଳନ କଲାପରି, ପରିପାଳନ, ବିକାଶ, ସମୃଦ୍ଧ ତଥା ସମ୍ବର୍ଦ୍ଧିତ କଲେ । ଅଗ୍ନିଦେବ ଜନ୍ମ ମୁହୂର୍ତ୍ତରୁ ମେଧାବୀ, ବିଶୁଦ୍ଧ ଏବଂ ଅମାପ ଶକ୍ତିସମ୍ପନ୍ନ ଅଟନ୍ତି । ସେ ଅତ୍ୟନ୍ତ ଉଦାର ଏବଂ ବନ୍ଧୁଭାବାପନ୍ନ ।

ଅଗ୍ନିଦେବ ବିଶ୍ୱ ବ୍ରହ୍ମାଣ୍ଡର ପ୍ରାଣ ସ୍ୱରୂପ । ଏବଂ ସର୍ବ ସୁଖ ଶାନ୍ତିର ଅଧାର । ସେ ପ୍ରବାହଶୀଳ ନଦୀ ମାନଙ୍କର ଜଳ ସମୃଦ୍ଧିର ଆଦି ଉତ୍ସ । ସେ ଆପେ ଆପେ ଜନ୍ମଲାଭ କରିଥିବାରୁ ତାଙ୍କୁ 'ଜାତଦେବ' ବୋଲି କୁହାଯାଏ ।

## ଜାତଦେବ

ଚିର ତରୁଣ ତୁମେ ହେ ଅଗ୍ନିଦେବ !
ଆଶ୍ରୟ କରିଥାଅ ଜଳର ଗର୍ଭ,
ଜଳ ମଧ୍ୟରୁ ଜାତ ଜଳରେ ଲୀନ
ଜଳ ଜନନୀ ତୁମ, ଜଳୁ ଜନୀନ-
ଏ ସୃଷ୍ଟି ପାଇଁ,
ଅଟ ତୁମେ ତାହାର ପରାଣସାଇଁ ।
ଜଳରେ ସଂଗୋପିତ ଥିଲ ହେ ଯେବେ
ତୁମକୁ କଲେ ସ୍ତୁତି ଦେବତା ସର୍ବେ,
ଯଜ୍ଞ ପ୍ରକ୍ରିୟା ରଚିବାକୁ ଜଗତେ
ଜଳରୁ ଜନ୍ମ ନେଲ ଆପେ ତୁରିତେ,
ହେ ଜାତଦେବ,
ପିନ୍ଧିଲ ନବ ଭୂଷା 'ଶିଖା' ପ୍ରଦୀପ୍ତ ।
ହସିଲ ଶିଖା ଭୂଷା ମଣ୍ଡିତ ହୋଇ
ଚିର ତରୁଣ ରୂପ ମିଳିଲା ତହିଁ
ଦେବଗଣ ସରବେ ସେବା ମଗନ
କରିଲେ ବିକଶିତ ଶରୀର ମନ,
ବନ୍ଧୁତ୍ୱ ଭାବ,
ମନରେ ଭରିଦେଲ କି ଅଭିନବ ।

ସେ ଭାବ ନେଇ ହେଲ ଜଗତ ବନ୍ଧୁ
ସୃଷ୍ଟି ଯଜ୍ଞର ହେଲ ହେ ପ୍ରାଣ ବିନ୍ଦୁ,
ପ୍ରବାହଶୀଳ ନଦୀ ଜଳକୁ ନେଇ
ସଂଚିଲ ବାରାନିଧି ଗର୍ଭରେ ଥୋଇ
ସେ ଗର୍ଭ ଗୁହେ,
ରହିଲ ନିରାପଦେ ମମତା ମୋହେ ।
ପ୍ରକୃତି ପ୍ରାଣସ୍ରୋତ ରୂପରେ ତୁମେ
ହୋଇଲ ସଂଚାରିତ ଏ ବିଶ୍ୱ ଭୂମେ,
ଅନ୍ତରିକ୍ଷ ତୁମର ଏକୁଡ଼ିଶାଳ
ଜନ୍ମ ହୋଇ ଭରିଲ ତାରୁଣ୍ୟଥାଳ,
ନାହିଁ ବିଳୟ,
ଅଟହେ ଜାତ ଦେବ ! ଚାର ଚିନ୍ମୟ ।

•

ଓଁ
ଭୂ ର୍ଭୁବଃ ସ୍ୱଃ
ତତ୍ସବିତୁର୍ବରେଣ୍ୟଂ, ଭର୍ଗୋ ଦେବସ୍ୟ ଧୀମହି
ଧିୟୋ ଯୋ ନଃ ପ୍ରଚୋଦୟାତ୍ ।

ଋ.ସଂ. ଭା୨ । ମ୩ । ସୂ୬୨ । ମନ୍ତ୍ର ୩୦୪୪

ହେ ସବିତା ଦେବ ! ଆପଣ ଆମର ବୁଦ୍ଧିକୁ ସତ୍‌ପଥରେ ପ୍ରେରଣ କରନ୍ତି । ଆପଣ ଆମର ମନୋବିକାରକୁ ଦୂର କରି ପାରନ୍ତି । ଆପଣ ଆମର ମନକୁ ଦିବ୍ୟ ଭାବନାରେ ପରିପୂର୍ଣ୍ଣ କରି ଦିବ୍ୟତା ଦାନ କରନ୍ତି । ଆପଣ ଆମର ପରମ ବରଣୀୟ ।

ଅପରାର୍ଥ

ହେ ପରମାତ୍ମା ! ଆପଣ ବିଶ୍ୱ ଜୀବନର ପ୍ରାଣ ସ୍ୱରୂପ । ସର୍ବ ଦୁଃଖ ବିନାଶକ, ସର୍ବ ସୁଖ ପ୍ରଦାୟକ, ସର୍ବପାପ ହାରକ ଜ୍ୟୋତିର୍ମୟ । ଆପଣଙ୍କୁ ଆମେ ଅନ୍ତରାତ୍ମାରେ ଧାରଣ କରୁଛୁ । ଆପଣ ଆମର ମନ ଓ ବୁଦ୍ଧିକୁ ସନ୍ମାର୍ଗରେ ପ୍ରେରଣ କରନ୍ତୁ । ଏହାହିଁ ଆମର ଏକାନ୍ତ ପ୍ରାର୍ଥନା ।

# ତତ୍ସବିତୁ ର୍ବରେଣ୍ୟ

ହେ ପ୍ରଭୁ ଭାସ୍କର ତୁମେ ସର୍ବ ପ୍ରାଣାଧାର
ତେଜୋମୟ ଅଟ ସର୍ବ ଶକ୍ତିର ଆଧାର,
ତୁମ ପଦେ ବାଞ୍ଛ ପ୍ରଣତି
ହେ ସବିତା, ସୂର୍ଯ୍ୟଦେବ, ତ୍ରିଭୁବନ ପତି ।

ତୁମରି ଆଶିଷେ ପ୍ରଭୁ ବିଶ୍ୱ ଜନମନ
ସତ୍‌ମାର୍ଗେ କରଇ ଗତି ନହୋଇ ଉନ୍ମନଃ,
ତୁମେ ପ୍ରଭୁ ପଥ ପ୍ରଦର୍ଶକ
ଏ ବିଶ୍ୱର ସର୍ବଶୁଭ ମଙ୍ଗଳ ଦାୟକ ।

ବିକାର ବିକୃତି ସବୁ କରିପାର ଦୂର
ମଣିଷ ମନକୁ ପ୍ରଭୁ କର ହେ ନିର୍ମଳ
ହେ ପ୍ରଭୁ ସବିତା ।
ବିଶ୍ୱ ସର୍ଜନାର ପ୍ରଭୁ ତୁମେ ପ୍ରାଣଦାତା ।
ଉର୍ଜସ୍ୱଳ ଅଟେ ତୁମ ଦିବ୍ୟ ତେଜ ଧାରା
ଦିବ୍ୟତା ପ୍ରଦାନ କରେ ତ୍ରିଭୁବନ ସାରା,
ନିଖିଳ ଅନ୍ତର
ତୁମ ତେଜେ ତେଜୋଦୀପ୍ତ ବିଶ୍ୱଚରାଚର ।

ବିଶ୍ୱ ବରଣୀୟ ତୁମେ ହେ ସବିତା ଦେବ
ପୂର୍ଣ୍ଣକର ମନ ମୋର ଦିବ୍ୟଭାବେ ତବ,
ତୁମ ପଦେ ପଶୁଛି ଶରଣ,
ହେ ସବିତା, ପ୍ରଭାକର, ପ୍ରଭୁ ବିକର୍ତ୍ତନ ।

•

- ଅୟଂ ପନ୍ଥା ଅନୁବିତ୍ତଃ ପୁରାଣୋ
ଯତୋ ଦେବା ଉଦଜାୟନ୍ତ ବିଶ୍ୱେ,
ଅତଶ୍ଚିଦା ଜନିଷୀଷ୍ଟ ପ୍ରବୃଦ୍ଧୋ
ମା ମାତରମମୁୟା ପତ୍ତବେ କଃ ।

ଋ.ସଂ.୨ । ମ୪ ।ସୂ ୧୮ । ମନ୍ତ୍ର ୩୨୫୯

ଏହି ଅନନ୍ତ ବିଶ୍ୱପ୍ରକୃତି ଏବଂ ପ୍ରାକୃତିକ ମାର୍ଗ ସନାତନ ଅଟେ । ଏଥିରୁ ଦେବ, ମାନବ ଏବଂ ସକଳ ବସ୍ତୁ ଉଦ୍‌ଭବ ହୋଇଛନ୍ତି । ହେ ମନୁଷ୍ୟଗଣ! ତୁମେ ପ୍ରକୃତି ମାତାର ସନ୍ତାନ ତେଣୁ ତା'ର ସୁରକ୍ଷା ଓ ସମୃଦ୍ଧି ପାଇଁ ଯତ୍ନ କର । ତୁମର ସ୍ୱାର୍ଥ ପାଇଁ ଏହାକୁ ଉଜାଡ଼ି ଦିଅନାହିଁ ।

- "ନାହମତୋ ନିରୟା ଦୁର୍ଗହୈତ -
ତିରଶ୍ଚତା ପାର୍ଶ୍ୱାନ୍ନିର୍ଗମାଣି,
ବହୂନି ମେ ଅକୃତା କର୍ତ୍ୱାନି
ଯୁଧ୍ୟୈ ତ୍ୱେନ ସଂ ତ୍ୱେନ ପୃଚ୍ଛୈ ।"

ଋ.ସଂ.୨ । ମ୪ ।ସୂ ୧୮ । ମନ୍ତ୍ର ୩୨୬୦

ଆଜିର ଜୀବନରେ ଏହି ସନାତନ ମାର୍ଗକୁ ଅନୁସରଣ କରି ଚଳିବା କଷ୍ଟକର ହେଲେ ମଧ୍ୟ, ପ୍ରକୃତିର ସନ୍ତୁଳନ ରକ୍ଷା କରି ଏକ ସୁଚିନ୍ତିତ ମାର୍ଗରେ ଗତି କରିବାର ଆବଶ୍ୟକତା ରହିଛି । ପ୍ରକୃତିର ସୁରକ୍ଷା ପାଇଁ ସମସ୍ତଙ୍କର ସହଯୋଗ ଏକାନ୍ତ ଆବଶ୍ୟକ । ଏଥିପାଇଁ ପ୍ରତ୍ୟେକଙ୍କୁ ପ୍ରକୃତିସଚେତନ ହେବାକୁ ପଡ଼ିବ । ପ୍ରକୃତିରକ୍ଷା ପାଇଁ କଠୋର ଆଭିମୁଖ୍ୟ ଗ୍ରହଣ କରିବାକୁ ହେବ ।

# ପ୍ରକୃତି ସୁରକ୍ଷା

ଏ' ପ୍ରକୃତି କାମଧେନୁ ଶକ୍ତିର ଭଣ୍ଡାର
ଶକ୍ତି ରସ ସଂରକ୍ଷିତ ହୋଇଛି ଏଠାରେ,
ତା' ଅମୃତ ପାନ ପାଇଁ ବ୍ୟାକୁଳ ମନୁଷ୍ୟ
ଦୋହନ କରଇ ନିତି ନିର୍ବିକାରେ ତା'ରେ ।
ଅଟେ ସେ ଅଜ୍ଞାନ,
ପ୍ରାକୃତିକ ସନ୍ତୁଳନ କରେ ଉଲ୍ଲଂଘନ ।

ଯାହାଶକ୍ତି ରସେ ପୁଷ୍ଟ ହୋଇଥାଏ ନର
ତା' ପୁଷ୍ଟି ସାଧନେ ଧ୍ୟାନ ଦେବା କର୍ମ ତା'ର,
ଅତୁଟ ରଖହେ ଦିବ୍ୟ ପ୍ରକୃତି ବିଭବ
ନିତି ତା' ଅମୃତଝର ତା'ହେଲେ ଲଭିବ
ଆଜି କିନ୍ତୁ ଉଦ୍‌ଭ୍ରାନ୍ତ ତା' ମନ
ଉଜାଡ଼େ ଅମୂଲ୍ୟ ତାର ପ୍ରାକୃତିକ ଧନ ।

ପ୍ରକୃତି ସର୍ଜନା ମାର୍ଗ ଚିରନ୍ତନ ସଦା
ତା' ଜଠରୁ ଜାତ ସର୍ବେ ଦେବତା ମାନବ,
ବିପୁଳ ଜୀବ ଜଗତ ଉଦ୍ଭିଦ ବନାନୀ
ସେ ଜନନୀ ଗର୍ଭୁ ସର୍ବେ ଅଟନ୍ତି ସମ୍ଭୂତ ।
ଅଭୟ ତା' ବାର୍ତ୍ତା,
ତା' ସୀମିତ ସମ୍ପଦର ତୁମେ ଅପହର୍ତ୍ତା ।

ମନେରଖ ଏ ପ୍ରକୃତି ପ୍ରଗତିର ଦ୍ୱାର
ଅଟେ ତୁମ ଗତି ମୁକ୍ତି ଶାନ୍ତିର ସମ୍ଭାର
ତା'ଠାରୁ ଆଶିଷ ଲଭ ସେନେହ ସନ୍ତୋଷ
ଅତୃପ୍ତ ଜୀବନେ ହୁଅ ତୃପ୍ତ ପରିତୋଷ ।
ତା' ସୁରକ୍ଷା ପାଇଁ,
ବରିବା କଠିନ ପଥ ସହଯୋଗ ଧ୍ୟାୟୀ ।
କରନି ଉପେକ୍ଷା,
ସେ ଦେଇଛି ଏ ବିଶ୍ୱକୁ ଜୀବନର ଦୀକ୍ଷା ।

•

"ଧାମତେ ବିଶ୍ୱଂ ଭୁବନମଧି ଶ୍ରୀତମନ୍ତଃ
ସମୁଦ୍ରେ ହୃଦ୍ୟ ୧ନ୍ତରାୟୁଷି,
ଅପାମନୀକେ ସମିଥେ ଯ ଅଭୃତସ୍ତମଶ୍ୟାମ
ମଧୁମନ୍ତଂ ତ ଉର୍ମିମ ।"

ଋ.ସଂ.୨ । ମ୪ । ମନ୍ତ୍ର ୩୬୪୧

ହେ ବ୍ରହ୍ମନ୍ ! ଆପଣଙ୍କର ବ୍ରହ୍ମତେଜ, ସମୁଦ୍ରରେ ବାଡ଼ବାଗ୍ନି ରୂପରେ, ଅନନ୍ତ ଆକାଶରେ ସୂର୍ଯ୍ୟଦେବ ରୂପରେ, ହୃଦୟରେ ବୈଶ୍ୱାନର ରୂପରେ, ଅଥବା ଜଠରରେ ଜଠରାଗ୍ନି ରୂପରେ, ତଥା ଯୁଦ୍ଧ କ୍ଷେତ୍ରରେ ଶୌର୍ଯ୍ୟାଗ୍ନି ରୂପରେ ବିଦ୍ୟମାନ ।

ହେ ବ୍ରହ୍ମନ୍ ! ସମସ୍ତ ଲୋକ ଆପଣଙ୍କର ଆଶ୍ରିତ । ହେ ପରମେଶ ! ଆପଣଙ୍କର ସେହି ମାଧୁର୍ଯ୍ୟପୂର୍ଣ୍ଣ ବ୍ରହ୍ମତେଜର ସଦ୍ ବିନିଯୋଗ ଆମେ କରିବା ପାଇଁ ସମର୍ଥ ହେଉ ।

## ବ୍ରହ୍ମତେଜ

ହେ ପରମ ପ୍ରଭୁ ତୁମ ପରମ ବିଧାନ
ଜଳ ସ୍ଥଳ ଅନ୍ତରିକ୍ଷ ସର୍ବବିଦ୍ୟମାନ,
ତୁମ ତେଜ ପ୍ରକାଶିତ ସମୁଦ୍ର ଗର୍ଭରେ
ବାଡ଼ବାଗ୍ନି ରୂପେ ତାହା ଦୃପ୍ତ ରୂପ ଧରେ ।

ଅନନ୍ତ ଆକାଶେ ତାହା 'ସୂର୍ଯ୍ୟ' ରୂପ ଧରି
ଦ୍ୟୁଲୋକେ ଭୂଲୋକେ ତେଜେ ରହିଛି ଆବୋରି,
ତ୍ରିଭୁବନ ଜ୍ୟୋତିରୂପ ସେ ମହାପ୍ରକାଶ
ସୂର୍ଯ୍ୟଦେବ ସର୍ଜନାର ପରମ ବିକାଶ ।

ହୃଦୟେ ହୃଦୟେ ତାଙ୍କ ଜ୍ୟୋତି ପ୍ରକଟଇ
ବ୍ରହ୍ମତେଜ ଉଦରରେ ଜଠରାଗ୍ନି ହୋଇ,
ଭୋଜ୍ୟ ପଦାର୍ଥକୁ ତେଜେ କରେ ପରିପାକ
କ୍ଷୁଧାନଳ ଜଠରରେ ତା' ବିଶ୍ୱ ବ୍ୟାପକ ।

ଅନ୍ନରେ ନିହିତ ତାହା ପ୍ରାଣାଗ୍ନି ରୂପରେ
ଅନ୍ନ ବିନା ହଂସ ହାନୀ, ଜୀବନ ଅନ୍ନରେ,
ଅନ୍ନ ଖାଦ୍ୟ, ଅନ୍ନ ପ୍ରାଣ, ଅନ୍ନହିଁ ଜୀବନ
ଜୀବର ଏକାନ୍ତ କର୍ମ ଅନ୍ନ ଅନ୍ୱେଷଣ ।

ଜଳ ମଧ୍ୟେ ବିସ୍ତାରିତ ବିଦ୍ୟୁତ୍ ରୂପରେ
ସେ ତେଜରୁ ବିଦ୍ୟୁତର ତରଙ୍ଗ ଉଘରେ,
ହୋଇଥାଏ ଆଲୋକର ଧାରା ପ୍ରକଟନ
ଦୂର କରିପାରେ ତାହା ଅନ୍ଧକାର ଘନ ।

ବ୍ରହ୍ମତେଜ ଯୁଦ୍ଧଭୂମେ 'ଶୌର୍ଯ୍ୟାଗ୍ନି' ରୂପରେ
ପ୍ରକାଶିତ ହୋଇଥାଏ ବିଶ୍ୱ ଭୁବନରେ,
ଆଗ୍ନେୟାସ୍ତ୍ର କରିଥାଏ ହୃତକର୍ମ ଅରିର
ଧ୍ୱଂସ ଲୀଳା ରଚିଥାଏ ଅତି ଭୟଙ୍କର ।
ବ୍ରହ୍ମତେଜ ବିବିଧ ରୂପରେ
ପ୍ରକଟିତ ପରିବ୍ୟାପ୍ତ ଅଟେ, ତ୍ରିଲୋକରେ ।

•

• ଶୁନଂ ବାହାଃ ଶୁନଂ ନରଃ ଶୁନଂ କୃଷତୁ ଲାଙ୍ଗଲମ୍
ଶୁନଂ ବରତ୍ରା ବଧ୍ୟନ୍ତାଂ ଶୁନମଷ୍ଟ୍ରାମୁଦିଙ୍ଗୟ ।

ମନ୍ତ୍ର ୩୬୨୬

• ଅର୍ବାଚୀ ସୁଭଗେ ଭବ ସୀତେ ବନ୍ଦାମହେ ତ୍ୱା
ଯଥା ନଃ ସୁଭଗାସସି ଯଥା ନଃ ସୁଫଳାସସି ।
ଶୁନଂ ନଃ ଫାଲା ବି କୃଷନ୍ତୁ ଭୂମିଂ
ଶୁନଂ କୀନାଶା ଅଭି ଯନ୍ତୁ ବାହୈଃ

ମନ୍ତ୍ର ୩୬୨୮

• ଶୁନଂ ପର୍ଜନ୍ୟୋ ମଧୁନା ପୟୋଭିଃ
ଶୁନାସୀରା ଶୁନମସ୍ମାସୁ ଧତ୍ତମ୍ ।

ଋ.ସଂ. ୨ । ମ୪ ।ସୂ ୫୭ । ମନ୍ତ୍ର ୩୬୩୦

କୃଷି ପାଇଁ ଆମର ଆବଶ୍ୟକ ହେଉଥିବା ଗୋ ମହିଷାଦି ପଶୁଶକ୍ତି ଆମ ପାଇଁ ଆନନ୍ଦ ଦାୟକ ହୁଅନ୍ତୁ । ହଳ ଦ୍ୱାରା ଆମେ ଆନନ୍ଦରେ କୃଷି କ୍ଷେତ୍ରରେ ଚାଷ କରୁ । କୃଷକ ଓ ହଳ ପାଇଁ, କୃଷିଶ୍ରମ ଆନନ୍ଦ ଦାୟକ ହେଉ । ଚାଷପାଇଁ ନିଯୁକ୍ତ ହଳର ବେକରେ ଥିବା ଯୁଆଳି ସେମାନଙ୍କ ପାଇଁ କଷ୍ଟପ୍ରଦ ନହେଉ । ହଳକୁ ଦଣ୍ଡଦାନ ପାଇଁ ଉଦ୍ଦିଷ୍ଟ ପାଞ୍ଚଣ ବାଡ଼ି ପ୍ରୟୋଗ କରା ନଯାଉ, ତେବେ ଏହାର ମୃଦୁ ସ୍ପର୍ଶ ପ୍ରେରଣା ଦାୟକ ହେଉ ।

ଲଙ୍ଗଳ ଫଳକ ଦ୍ୱାରା କୃଷି କ୍ଷେତ୍ରରେ ସୃଷ୍ଟି ହୋଇଥିବା ହେ ସୀତେ (ସିଆର) ! ତୁମେ ଆମ ଉପରେ କୃପାଶୀଳ ହୁଅ । ଆମେ ତୁମକୁ ବନ୍ଦନା କରୁଛୁ । ତୁମେ ପ୍ରୀତ ହୋଇ, ଆମକୁ ପ୍ରଚୁର ଉତ୍ପାଦନ ଦେବା ସହିତ ଆମର ଐଶ୍ୱର୍ଯ୍ୟ ବୃଦ୍ଧିକର ।

ହେ ବାୟୁ, ସୂର୍ଯ୍ୟ ଏବଂ ମେଘ ମଣ୍ଡଳ ! ତୁମେ ପ୍ରସନ୍ନ ହୋଇ କୃଷିବର୍ଦ୍ଧକ ହୁଅ ଓ ପ୍ରଚୁର ବର୍ଷା କରି କ୍ଷେତକୁ ଶସ୍ୟ ଶ୍ୟାମଳା କର ।

# କୃଷି

କୃଷି ଆମ ଜୀବନର ବ୍ରତ
କୃଷି ପାଇଁ ସମ୍ଭବିଛି ଏ ବିଶ୍ୱ ଜଗତ,
କୃଷି ଅନ୍ନଦାତା
କୃଷି ଆମ ଜୀବନର ଧାତା ।
ଗବାଦି ପଶୁ ସକଳ ହୁଅନ୍ତୁ ପ୍ରସନ୍ନ
ମାନବ ସମାଜ ହେଉ ଆନନ୍ଦିତ ମନ,
କୃଷିକର୍ମେ ହୋଇ ଉତ୍ସାହିତ
ରହନ୍ତୁ ତହିଁରେ ସର୍ବେ ହୋଇ ନିୟୋଜିତ ।

ଆନନ୍ଦ ମନରେ ହଳ ଚାଷ କରୁ କ୍ଷେତ
ଯୁଆଳି ବନ୍ଧନେ ହଳ ନ ହେଉ ବିବ୍ରତ
ପାଞ୍ଚଣ ପ୍ରୟୋଗେ ହଳ ନ ପାଉ ଯନ୍ତ୍ରଣା
ତା'ର ମୃଦୁ ସ୍ପର୍ଶ ହେଉ ତା' ପାଇଁ ପ୍ରେରଣା ।
ତାଡ଼ନା ନ ଦେଉ ତା'ରେ ପାଞ୍ଚଣ ପାହାର
ଆନନ୍ଦରେ କୃଷିକର୍ମ କରୁ ଆମ ହଳ,

ଲଙ୍ଗଳ ଲୌହ ଫଳକେ ଶୁଭଦା ସିଆର
ସୁଖ ବିଧାୟକ ହେଉ କୃଷି ସମାଜର,
କରୁଛୁ ବନ୍ଦନା,
ଶସ୍ୟ ଭରା କର କ୍ଷେତ ହୋଇ ପ୍ରୀତମନା ।
ଉତ୍ପାଦନ ହେଉ ହେ ପ୍ରଚୁର,
ସୁଖମୟ ହେଉ କୃଷିଜୀବୀର ସଂସାର ।

ହେ ବାୟୁ ! ହେ ସୂର୍ଯ୍ୟଦେବ ! ହେ ମେଘମଣ୍ଡଳ !
ଘେନ ଶ୍ରଦ୍ଧା ଭକ୍ତି ଅର୍ଘ୍ୟ ଦିଅ ବୃଷ୍ଟିଜଳ,
ସୃଷ୍ଟିଶୀଳ ହେଉ କ୍ଷେତ ଶସ୍ୟେ ପଲ୍ଲବିତ
ଏ ଧରିତ୍ରୀ ଶସ୍ୟ ଭାରେ ହେଉ ପୁଲକିତ,
ଶ୍ୟାମଶିରୀ ଘେନୁ କ୍ଷେତମାଳ
ହୃଦୟେ ହିଲ୍ଲୋଳି ଉଠୁ ଆନନ୍ଦ ଉଲ୍ଲୋଳ ।

•

- ସମ୍ରାଜାବସ୍ୟ ଭୁବନସ୍ୟ ରାଜତୋ
  ମିତ୍ରାବରୁଣା ବିଦଥେ ସ୍ୱର୍ଦୃଶା,
  ବୃଷ୍ଟିଂ ବାଂ ରାଧୋ ଅମୃତତ୍ୱମୀମହେ
  ଦ୍ୟାବାପୃଥିବୀ ବି ଚରନ୍ତି ତନ୍ୟବଃ ।

ଋ.ସଂ୨ । ମ୫ । ସୂ୬୪ । ମନ୍ତ୍ର : ୪୨୦୬

ହେ ପରମଶକ୍ତିଶାଳୀ ମିତ୍ର ଓ ବରୁଣ । ଆପଣ ଦ୍ୱିଲୋକ ଓ ଭୂଲୋକର ସମ୍ରାଟ ଅଟନ୍ତି । ଆପଣ ଯଜ୍ଞପୁରୁଷ ଓ ଯଜ୍ଞଦ୍ୱାରା ଆପଣଙ୍କର ଦୀପ୍ତି ପ୍ରକାଶିତ ହୁଏ । ଆମେ ଆପଣ ଦୁହିଁଙ୍କ ଠାରୁ (ମିତ୍ର ଓ ବରୁଣ) ବୃଷ୍ଟି, ଐଶ୍ୱର୍ଯ୍ୟ ଓ ଅମୃତତ୍ୱ ଲାଭ କରିବାକୁ କାମନା କରୁଛୁ । ଆପଣଙ୍କର ପ୍ରକାଶମାନ କିରଣ ଆକାଶ ଏବଂ ପୃଥିବୀରେ ପରିବ୍ୟାପ୍ତ ।

- "ସମ୍ରାଜା ଉଗ୍ରା ବୃଷଭା ଦିବସ୍ପତୀ
  ପୃଥିବ୍ୟା ମିତ୍ରାବରୁଣା ବିଚର୍ଷଣୀ ।
  ଚିତ୍ରେଭିରଭ୍ରୈରୁପ ତିଷ୍ଠଥୋ ରବଂ
  ଦ୍ୟାଂ ବର୍ଷୟଥୋ ଅସୁରସ୍ୟ ମାୟୟା ।"

ଋ.ସଂ୨।ମ୫।ସୂ୬୪। ମନ୍ତ୍ର ୪୨୦୭

ହେ ମିତ୍ରାବରୁଣ । ଆପଣ ଦୁହେଁ ଅତ୍ୟନ୍ତ ଶକ୍ତିସମ୍ପନ୍ନ, ପ୍ରକାଶମାନ ଏବଂ ବୃଷ୍ଟିକର୍ତ୍ତା ଅଟନ୍ତି । ଆପଣ ଦ୍ରଷ୍ଟା ସ୍ୱରୂପ ଏବଂ ଦ୍ୟୁଲୋକ ଓ ଭୂଲୋକର ଅଧିପତି । ଗର୍ଜନଶୀଳ ମେଘ ଆପଣଙ୍କର ଅଧୀନ । ଆପଣ ଶକ୍ତି ପ୍ରୟୋଗ କରି ମେଘକୁ ବିଶ୍ୱ ଭୁବନରେ ବର୍ଷଣଶୀଳ କରନ୍ତି ।

# ମିତ୍ରାବରୁଣ

ଆହେ ମିତ୍ର ଦେବ  ହେ ବରୁଣ ଦେବ
ମିତ୍ରାବରୁଣ ଏ ନାମେ
ଦ୍ୟାବାପୃଥିବୀର  ଅଧିପତି ରୂପେ
ପୂଜିତ ଏ ବିଶ୍ୱଧାମେ ।

ଆପଣଙ୍କ ତେଜେ  ତେଜୋଦୀପ୍ତ ରବି
ପ୍ରବାହିତ ବୃଷ୍ଟିଧାରା
ଯଜ୍ଞେ ଦୀପ୍ତିମାନ୍  ଶକ୍ତିରେ ମହାନ୍
ବଶୀଭୂତ ମେଘମାଳା ।

ପ୍ରସାରିତ ହୋଇ  ଅନନ୍ତ ଆକାଶେ
ହୁଅନ୍ତି ବର୍ଷଣଶୀଳ
ମଧୁଝରା ଧାରା  ଝରାଇ ଭୂଲୋକେ
ଅନ୍ନେ ଭରି ତା'ର ଥାଳ ।
ହେ ମଙ୍ଗଳମୟ ବେନି,
ବିଶ୍ୱର ମଙ୍ଗଳ ବିଧାନେ ସତତ
ଥାଏ ତୁମ ଧ୍ୟାନ ପୁଣି ।

ହେ ତେଜ ସମ୍ପନ୍ନ  ଯଜ୍ଞ ଅଧିପତି
ସତ୍ୟ ସମ୍ପାଦନ କର୍ତ୍ତା
ଏ ବିଶ୍ୱ ପ୍ରକୃତି  ପାଳକ ପୋଷକ
ତୁମେ ଅଟ ତା'ର ଭର୍ତ୍ତା ।
ହେ ମିତ୍ର, ବରୁଣ  ପରମ ମହାନ
କରୁଛୁ ପ୍ରାର୍ଥନା ପଦେ,
ମିଳୁ ଦିବ୍ୟ ପଥ  କର୍ମରେ ସାମର୍ଥ୍ୟ
ସେବା ଭାବ ଭରୁ ହୃଦେ ।

•

- ଯୋ ମ ଇତି ପ୍ରବୋଚତ୍ୟଶ୍ୱମେଧାୟ ସୂରୟେ
  ଦଦଦୃଚା ସନିଂ ଯତେ ଦଦନ୍ମେଧାମୃତାୟତେ ।

·ମନ୍ତ୍ର ୩୮୩୧

- ଇନ୍ଦ୍ରାଗ୍ନୀ ଶତଦାବ୍‌ନ୍ୟଶ୍ୱମେଧେ ସୁବୀର୍ଯ୍ୟମ୍
  କ୍ଷତ୍ରଂ ଧାରୟତଂ ବ୍ୟହଦ୍ଦିବି ସୂର୍ଯ୍ୟ ମିବାଜରମ୍ ।

ଋ.ସଂ. ୨।ମ୫।ସୂ୨୭।ମନ୍ତ୍ର ୩୮୩୩

ହେ ଅଗ୍ନିଦେବ ! ଯେ ଅଶ୍ୱମେଧ ଯଜ୍ଞର କର୍ତ୍ତା, ତାଙ୍କୁ ଅସରନ୍ତି ଶକ୍ତି ବିପୁଳ ଐଶ୍ୱର୍ଯ୍ୟ ଏବଂ ପ୍ରଚଣ୍ଡ ମେଧାର ଅଧିକାରୀ କରନ୍ତୁ ।

ହେ ଅଗ୍ନିଦେବ ! ଅସୁମାର ଐଶ୍ୱର୍ଯ୍ୟ ପ୍ରଦାନକାରୀ ଅଶ୍ୱମେଧ ଯଜ୍ଞକୁ, ଅଥବା ଅସରନ୍ତି ଶକ୍ତି ପ୍ରବାହ ସୃଷ୍ଟିକାରୀ ଯଜ୍ଞକୁ ଆପଣ ଦିବ୍ୟ ପୌରୁଷ ପ୍ରଦାନ କରନ୍ତୁ । ତାହା ସୂର୍ଯ୍ୟଙ୍କ ପରି ଦୀପ୍ତିମାନ୍ ହେଉ ।

ବି.ଦ୍ର. : ରାଷ୍ଟ୍ରର ମଙ୍ଗଳ କାମନା କରି ଅଶ୍ୱମେଧ ଯଜ୍ଞ କରାଯାଏ । ଭାରତବର୍ଷ ଏକ କୃଷିପ୍ରଧାନ ଦେଶ । କୃଷି ଓ ବାଣିଜ୍ୟ ପାଇଁ ସେ ଏହାର ପଶୁ ସମ୍ପଦ ଉପରେ ନିର୍ଭର କରିଥାଏ । ପଶୁଶକ୍ତି ସମୃଦ୍ଧିର ପ୍ରଥମ ସୋପାନ । ଆର୍ଯ୍ୟଭାରତର ଋଷିସମାଜ ପଶୁ ଶକ୍ତିକୁ ସମୃଦ୍ଧ ତଥା ତେଜୋଦୀପ୍ତ କରିବାପାଇଁ ଯଜ୍ଞଧାରାର ଆଶ୍ରୟ ନେଇଛନ୍ତି । ଯଜ୍ଞଶାଳାର ଯୂପ କାଠରେ ପଶୁ ସମ୍ପଦର ଏକ ପ୍ରତିନିଧିକୁ ଆବଦ୍ଧ କରି ରଖାଯାଏ । ଯଜ୍ଞ ଶେଷରେ ଏହାକୁ ମୁକ୍ତ କରିଦିଆଯାଏ । ବୈଦିକ ଅର୍ଥରେ 'ଅଶ୍ୱ' ଶବ୍ଦର ଅର୍ଥ 'ଶକ୍ତିପ୍ରବାହ', 'ମେଧ' ଶବ୍ଦର ଅର୍ଥ 'ଯଜ୍ଞ' । ଏହି ଦୃଷ୍ଟିରୁ ଅଶ୍ୱମେଧ ଯଜ୍ଞର ଅର୍ଥ, 'ଶକ୍ତି ପ୍ରବାହର ଯଜ୍ଞ' । ଆକ୍ଷରିକ ଅର୍ଥରେ ଅଶ୍ୱ ହିଁ ଶକ୍ତିର ପ୍ରତୀକ ତେଣୁ ଆମେ ଅଶ୍ୱଶକ୍ତି ବୋଲି କହୁ ଏବଂ ଯଜ୍ଞୀୟ ଧାରେରେଶକ୍ତିର ପ୍ରତୀକ ରୂପେ ଅଶ୍ୱଟିଏ ଯୂପକାଠରେ ବନ୍ଧାଯାଏ । ପବିତ୍ର ଯଜ୍ଞ ଧାରାରେ ପଶୁ ହତ୍ୟାର ପ୍ରଶ୍ନ ଉଠୁନି । ଉବଟଙ୍କ ଭାଷାରେ,

"ସର୍ବେପଶବଃ ଉତସ୍ରଷ୍ଟବ୍ୟାଃ ନ ତୁ ହିଂସ୍ୟାଃ ।"

# ଅଶ୍ୱମେଧ ଯଜ୍ଞ ଓ ବଳି

ବୈଦିକ ଜୀବନ ଅଟେ କି ମହାନ୍
ପ୍ରଜ୍ଞାଲୋକର ଧାରା,
କେଡ଼େ ଉଜ୍ଜ୍ୱଳ ସେ କାଳରେ ଥିଲା
ଆଲୋକି ବିଶ୍ୱ ସାରା ।
ପ୍ରତି ଶବଦର ମଧୁ ଗୁଞ୍ଜନ
ବିପୁଳ ଭାବର ସୁଧା ସିଞ୍ଚନ,
ଆଜି ଖାଲି ମିଳେ ଭାବ ଭ୍ରଂଶର
ଦଂଶନ ମତୁଆଳା ।

ଯଜ୍ଞ ପ୍ରଧାନ ଥିଲା ସେ ଜୀବନ
ଯଜ୍ଞରେ ପ୍ରକାଶିତ
ଦେବ ଗଣଙ୍କର ତୁଷ୍ଟି ବିଧାନେ
ଥିଲା ନିତି ଜାଗରିତ ।
ହରାଇଛି ଆଜି ତାର ଶୁଦ୍ଧତା
ଦୂରେଇ ଦେଇଛି ତା'ର ଦିବ୍ୟତା
ଅର୍ଥ ବହିଛି କଦର୍ଥ ଭାବ, ସମାଜରେ ପ୍ରସାରିତ ।
ବେଦ ବିଚାରରେ ଅଶ୍ୱ ଅଟଇ
'ଶକ୍ତି ପ୍ରବାହ ଉତ୍ସ'
'ମେଧ' ଶବ୍ଦଟି ଯଜ୍ଞ ପ୍ରତୀକ
ଯଜ୍ଞର, ପଉରୁଷ ।
'ଶକ୍ତି ପ୍ରବାହଯଜ୍ଞ' କରଣ
ଅଶ୍ୱ ମେଧର ଅର୍ଥ ଏ ପୁଣ,
ହିଂସାଚରଣ ନୁହେଁ ତା' ଅର୍ଥ,
ଯଜ୍ଞର ଅପଯଶ-
ସ୍ୱାର୍ଥାନ୍ଧଗଣ କରିଛନ୍ତି ଗାନ
ପଶୁରେ ଆଚରି ଦ୍ୱେଷ ।
ସ୍ୱାର୍ଥ ପୂରଣ ପାଇଁ
ବେଦେ ଥୋଇଛନ୍ତି ନେଇ ।

'ବଳି' ଶବ୍ଦନେଇ ସର୍ବଦା କଳି
ହତ୍ୟାରେ ହୁଏ ଗଣା,
ସ୍ୱାର୍ଥପରର ନବୀନ ଅର୍ଥ
ସମସ୍ତଙ୍କୁ କରେ ବଣା ।
ବିଦଗ୍ଧ ଋଷି ଦିବ୍ୟ ବଚନ
ଯଜ୍ଞେ ଆହୁତି, ନୈବେଦ୍ୟ ଦାନ
ବଳି ରୂପେ, ବଳି ଭୋଜ୍ୟ ପଦାର୍ଥ-
ଅର୍ପଣ ଅଟେ ସିନା ।
ପ୍ରାଣୀ ହତ୍ୟାର ଅର୍ଥ ନ ଅଟେ ଏହା
ଅର୍ଥକୁ ଆଜି କଦର୍ଥ କରି
କହୁଛନ୍ତି ଯିଏ ଯାହା ।

ଉତ୍ତମ ଗୃହସ୍ଥ ଆଚରଣ ନିତି-
'ବଳି ବୈଶ୍ୱଯଜ୍ଞ' ଗୃହେ
ଭୋଜ୍ୟ ପଦାର୍ଥ ପିଣ୍ଡୁଳା କରି
ଅର୍ପଣ କରେ ସ୍ନେହେ
ଶ୍ରାଦ୍ଧ ଆଚରେ ଶ୍ରଦ୍ଧାରେ ପୁଣ
ପ୍ରେତ ପୁରୁଷଙ୍କୁ ବଳି ଅର୍ପଣ,
ଗୋରୁ, ପିପିଲିକା, କାକ, କୁକୁରଙ୍କୁ
କରେ ଭୋଜ୍ୟ ବଳି ଦାନ
କେଉଁଠାରେ ଅଛି ହିଂସାର ଆଚରଣ ?
ବଳି ନାମେ କେବେ ହତ୍ୟା କରନି
ପ୍ରିୟ ପଶୁପକ୍ଷୀ ଗଣ ।

•

ବି.ଦ୍ର.: 'ବଳି' ଅର୍ଥ ଖାଦ୍ୟପିଣ୍ଡୁଳା । ଶ୍ରାଦ୍ଧ ଯଜ୍ଞରେ ଭୋଜ୍ୟ ପଦାର୍ଥକୁ ବଳି ବା ପିଣ୍ଡୁଳା କରି, ପିତୃପୁରୁଷ, ଗାଈଗୋରୁ, କୁଆ, କୁକୁର, ପିମ୍ପୁଡ଼ିଙ୍କୁ ଭୋଜନ ପାଇଁ ଦିଆଯାଏ ।

# ପ୍ରଜାପତି

- ପ୍ରଜାପତିର୍ବୈ ଭୁବନସ୍ୟ ପତିଃ ।
- ପ୍ରଜାପତିର୍ବ୍ରହ୍ମା । ଗୃହ୍ୟ ସୂତ୍ର :

ପ୍ରଜାପତି ସର୍ଜନାର ଆଦି ଉତ୍ସ ଏବଂ ପ୍ରଥମ ଦିବ୍ୟସତ୍ତା । ଦେବତାମାନଙ୍କ ମଧ୍ୟରେ ସେ ପ୍ରଥମେ ସୃଷ୍ଟି ହୋଇଥିଲେ । ତାଙ୍କର ଅନ୍ୟ ନାମ 'ବ୍ରହ୍ମା' । ତାଙ୍କ ଠାରୁ ସୃଷ୍ଟି ପ୍ରକ୍ରିୟା ଆରମ୍ଭ ହେଲା । ସେ ପ୍ରଥମେ ଏ ଜଗତକୁ ସର୍ଜନା କଲେ । ସେ ତ୍ରିଭୁବନର ସ୍ରଷ୍ଟା .. ପ୍ରଜାପତି ।

'କ'ବର୍ଣ୍ଣ ସୁଖର ପ୍ରତୀକ
ସୁଖାର୍ଥରେ ହୁଏ ତା' ପ୍ରୟୋଗ ।
ପ୍ରଜାପତିଙ୍କର ମଧ୍ୟ ଅଟେ ତାହା ନାମ
ସୁଖମୟ, ସେ ସୁଖଦ, ସିଏ ସର୍ବୋତ୍ତମ ।
ସୃଷ୍ଟି ସର୍ଜନା ପ୍ରକ୍ରିୟା ସେ ଆଦ୍ୟ ଜାତକ
ସର୍ବ ଦେବତାଙ୍କ ମଧ୍ୟେ-
ସେ ଅଗ୍ରଜ ସିଏ ଆଦିଦେବ ।
'ପ୍ରଜାପତି ବ୍ରହ୍ମା' ନାମେ ଅଭିହିତ ଯିଏ,
ସାରା ସୃଷ୍ଟି ସର୍ଜନାର ରୂପକାର ସିଏ ।
ସେଥିପାଇଁ ସେ ଅଟନ୍ତି -
ସଂସାରର ସ୍ୱାମୀ... ପ୍ରଭୁ ଅନ୍ତର୍ଯ୍ୟାମୀ ।
ତାଙ୍କ ଧନୁ, ଅଟେ ରକ୍ତ, ନୀଳ, ବେନି ବର୍ଣ୍ଣ
ଦୁର୍ଦ୍ଧର୍ଷ ଶକ୍ତିକୁ କରି ପାରେ ତା' ଦଳନ ।
ଏ ପୃଥିବୀ ଆକାଶକୁ ନିର୍ମାଣ ସେ କରି
ନେଇଛନ୍ତି ଦେବଲୋକ 'ସ୍ୱାମୀପଦ' ବରି ।
ସେ ଶକ୍ତି ଅଗ୍ରଜ
ସର୍ବଦେବ ପୂଜ୍ୟ,
'କ' ବର୍ଣ୍ଣର ବୀଜରୂପ ପ୍ରଜାପତି ବ୍ରହ୍ମା,
ସର୍ଜନାର ତୂଳି ହାତେ ଶୋଭା ।
ତ୍ରିଭୁବନ ତାଙ୍କ ସଂରଚନା
ସୂତ୍ରଧର ସର୍ବ ସମ୍ଭାବନା
ଏ ବିଶ୍ୱର ପତି
ପ୍ରଭୁ ପ୍ରଜାପତି ।

•

• ଯତ୍ତ୍ୱା ସୂର୍ଯ୍ୟ ସ୍ୱର୍ଭାନୁସ୍ତମସାବିଧ୍ୟଦାସୁରଃ
ଅକ୍ଷେତ୍ରବିଦ୍ୟଥା ମୁଗଧୋ ଭୁବନାନ୍ୟଦୀଧୟୁଃ ।

ମନ୍ତ୍ର ୩୯୪୭

• ସ୍ୱର୍ଭାନୋରଧ ଯଦିନ୍ଦ୍ର ମାୟା ଅବୋ ଦିବୋ ବର୍ତମାନା ଅବାହନ୍
ଗୂଲ୍ହଂ ସୂର୍ଯ୍ୟଂ ତମସାପବ୍ରତେନ ତୁରୀୟେଣ ବ୍ରହ୍ମଣାବିନ୍ଦଦତ୍ରିଃ ।

ଋ.ସଂ ୨।ମ୫।ସୂ୪୦।ମନ୍ତ୍ର ୩୯୪୮

ହେ ସୂର୍ଯ୍ୟଦେବ ! ଆପଣ 'ସ୍ୱର୍ଭାନୁ' ବା ରାହୁଗ୍ରସ୍ତ ହେବା ଦ୍ୱାରା ଏହାର ଘନ ତମିସ୍ରାରେ ତ୍ରିଭୁବନ ଅନ୍ଧକାରାଚ୍ଛନ୍ନ ହୋଇଗଲା ଏବଂ ଏହି ଅନ୍ଧକାର ମଧ୍ୟରେ, ସାରା ଜଗତ କବଳିତ ହୋଇ ଭ୍ରମିତ ହେଲା ।

ସୂର୍ଯ୍ୟଦେବ, ଇନ୍ଦ୍ରଦେବ ଓ ଅଗ୍ନିଦେବତାଙ୍କୁ ସ୍ମରଣ କଲେ । ଇନ୍ଦ୍ରଦେବ ନିଜ ଶକ୍ତିବଳରେ ସ୍ୱର୍ଭାନୁର ମାୟାକୁ ଦୂର କରିଦେଲେ । ମହର୍ଷି ଅତ୍ରି, ନିଜର ମହାନ୍ ମନ୍ତ୍ରଶକ୍ତି ବଳରେ ରାହୁଗ୍ରସ୍ତ ସୂର୍ଯ୍ୟଙ୍କୁ ପ୍ରକାଶିତ କଲେ ।

# ରାହୁଗ୍ରାସ

ଘନ ତମିସ୍ରାରୂପେ ଆକାଶ ତଳେ
ରାହୁ ରହିଛି ଘୋଟି ଅତି ପ୍ରବଳେ,
ଅଟଇ ପରା ତାହା ସ୍ୱର୍ଭାନୁ ମାୟା
ଆବୋରି ନିଏ ବଳେ ଭାନୁଙ୍କ କାୟା ।

ହୁଅଇ ରାହୁଗ୍ରାସ ତା' ପରିଣାମେ
ଆଂଶିକ ଅବା ପୂର୍ଣ୍ଣ ସେ ପରିମାଣେ
ହୋଇଲେ ରାହୁଗ୍ରାସ ଘୋଟେ ଅନ୍ଧାର
ଭ୍ରମେ ଭ୍ରମିତ ହୋଇଥାନ୍ତି ସକଳ ।

ମାୟା ମୋହିତ ସର୍ବେ ତମସା ଘେରା
ଦିବସେ ଦିବାଲୋକୁ ସେ ଦୂରେ ପରା,
ଖୋଜନ୍ତି କେଣେ ଗଲେ ଆଲୋକପତି
ଲୁଚାଇ ରଖିଅଛି କେ ମୂଢ଼ମତି ।

କରନ୍ତି ଦାନ ପୁଣ୍ୟ ଜଗତ ଜନ
ପ୍ରାର୍ଥନା କରିଥାନ୍ତି ହୋଇ ଉଛନ୍ନ,
ଇନ୍ଦ୍ର ଓ ଅଗ୍ନିଦେବ ସୁମରି ମନେ
କହନ୍ତି, 'ସୂର୍ଯ୍ୟଦେବେ ରଖ ଦୁର୍ଦ୍ଦିନେ' ।

ଇନ୍ଦ୍ରଦେବ ନିଜର ଶକତି ବଳେ
ସ୍ୱର୍ଭାନୁ ମାୟା ଦୂର କରିଲେ ହେଲେ,
ମହର୍ଷି ଅତ୍ରି, ଯଜ୍ଞ, ପୂଜା ଅର୍ଚ୍ଚନା
କରି ତୋଷିଲେ ଦେବଗଣ ଉନ୍ମନାଃ ।

ମହାନ୍ ମନ୍ତ୍ର ଶକ୍ତି ବଳରେ ଋଷି
ସୂର୍ଯ୍ୟଙ୍କୁ ପ୍ରକାଶିତ କଲେ ସେ ହସି,
ଦୂର ହୋଇଲା ତହୁଁ ରାହୁର ମାୟା
ପ୍ରକଟିତ ହୋଇଲା କିରଣ କାୟା ।

•

"ଯନ୍ନୂନମଶ୍ୟାମ ଗଣ୍ଡୀଂ ତଦାଭର
ବିଦ୍ୟାମ ତସ୍ୟ ତେ ବୟମକୂପାରସ୍ୟ ଦାବନେ ।"

ଋ.ସଂ ୨। ମ୫। ସୂ୩୯। ମନ୍ତ୍ର ୩୯୩୯

ହେ ଇନ୍ଦ୍ରଦେବ । ଆପଣ ଯେଉଁ ଧନବଳକୁ ଏତେ ପ୍ରାଧାନ୍ୟ ଦିଅନ୍ତି, ସେହି ଧନବଳରେ ଜଗତବାସୀଙ୍କୁ ଶକ୍ତିଶାଳୀ କରନ୍ତୁ । ଏହା ସହିତ ସେହି ଧନକୁ ଉଦାର ହୃଦୟରେ ଜନକଲ୍ୟାଣ ପାଇଁ ଦାନ କରିବାକୁ ଆମକୁ ଅନୁପ୍ରେରିତ କରନ୍ତୁ । ଏହାହିଁ ଆମର ଆପଣଙ୍କ ଠାରେ ବିନୀତ ପ୍ରାର୍ଥନା ।

# ଧନ ଓ ମନ

ଐଶ୍ୱର୍ଯ୍ୟ ଭଣ୍ଡାର ତୁମେ
ଆହେ ଇନ୍ଦ୍ରଦେବ !
ତୁମ ପାଇଁ ସମ୍ଭବିଛି ସୃଷ୍ଟି ଅଭିନବ,
ତୁମେ ଅଟ ଶତଶତ ଯଜ୍ଞ ଅଧୀଶ୍ୱର
ବିଶ୍ୱର ଈଶ୍ୱର ।

ଅମାପ ଶକ୍ତି ସଂପନ୍ନ ଆହେ ବଜ୍ରଧାରୀ
ଦ୍ୟୁଲୋକେ ଭୂଲୋକେ ଶକ୍ତି ସଂଚରଣ କରି-
ଏ ବିଶ୍ୱକୁ କରୁଛ ଶାସନ,
ଶତ୍ରୁକୁ ଦମନ କରି ଆହେ ଅରିନ୍ଦମ !
ସୁଖ, ଶାନ୍ତି, ଧନ ଦାନ କର ଏ ମହିରେ
ଐଶ୍ୱର୍ଯ୍ୟ ବିଭୂତି ଦେଇ
ଉଦାର ମନକୁ ନେଇ-
ପ୍ରଦାନ କର ହେ ପ୍ରଭୁ ! ସଭିଙ୍କ ଭିତରେ,
ବିଶ୍ୱ ମଣ୍ଡଳରେ ।
ସେ' ବିପୁଳ ମନୋବଳ ନେଇ
ଜନ କଲ୍ୟାଣରେ ଧନ
ତା'ର ବାଣ୍ଟିଦେଇ,
ପାଉ ସେ ଆନନ୍ଦ
ଦାନ ଧର୍ମେ ରହୁ ତା'ର ହୃଦ ।

ଦାନଶୀଳ, ସେବାଶୀଳ ଉଦାର ହୃଦୟ
ଦାନକର, ଆହେ ଦୟାମୟ ।
ଧନ ଦେଇ କର ଯଦି ତାକୁ ବିତ୍ତଶାଳୀ
ଭଲ ମନଟିଏ ଦେଇ ନିଃସ୍ୱାର୍ଥରେ ଚାଳି,
ସାର୍ଥକ କର ହେ ତା'ର ମାନବ ଜୀବନ
ହେଉ ତା'ର ଦିବ୍ୟ ଉତ୍ତରଣ ।

•

- ପ୍ର ବାତା ବାନ୍ତି ପତୟନ୍ତି ବିଦ୍ୟୁତ ଉଦୋଷଧୀର୍ଜିହତେ ପିନ୍ୱତେ ସ୍ୱଃ
  ଇରା ବିଶ୍ୱସ୍ମୈ ଭୁବନାୟ ଜାୟତେ ଯତ୍ପର୍ଜନ୍ୟଃ ପୃଥିବୀଂ ରେତସାବତି ।

ମନ୍ତ୍ର ୪୩।୩୬

- ଯସ୍ୟ ବ୍ରତେ ପୃଥିବୀ ନନ୍ନମୀତି ଯସ୍ୟ ବ୍ରତେ ଶଫଂବଜ୍ଜର୍ଭୁରୀତି
  ଯସ୍ୟ ବ୍ରତ ଓଷଧିର୍ବିଶ୍ୱରୂପାଃ ସ ନଃ ପର୍ଜନ୍ୟ ମହି ଶର୍ମ ଯଚ୍ଛ ।

ଋ.ସଂ ୨।ମ୫।ସୂ୮୩।ମନ୍ତ୍ର ୪୩।୩୭

ପର୍ଜନ୍ୟଦେବ ଜଳବିନ୍ଦୁରେ ପରିପୂର୍ଣ୍ଣ ହୋଇ, ଯେତେବେଳେ ଉର୍ଦ୍ଧ୍ୱ ଆକାଶରୁ ପୃଥିବୀ ଆଡ଼କୁ ନିମ୍ନମୁଖୀ ହୁଅନ୍ତି, ସେତେବେଳେ ବାୟୁ କ୍ଷିପ୍ର ଗତିରେ ପ୍ରବାହିତ ହୁଏ । ବିଦ୍ୟୁତ ଝଲସି ଉଠେ । ବନ ପ୍ରକୃତି ଔଷଧିଯୁକ୍ତ ହୋଇ ସମୃଦ୍ଧ ହୁଏ । ପୃଥିବୀ ପ୍ରାଣରସରେ ପରିପୁଷ୍ଟ ହୋଇ ଜଗତର ମଙ୍ଗଳ ଦାୟକ ହୋଇଥାଏ ।

ହେ ପର୍ଜନ୍ୟ ଦେବ ! ଆପଣ ପୃଥିବୀକୁ ଉତ୍ପାଦନକ୍ଷମ କରିଥାନ୍ତି । ପ୍ରାଣୀ ଜଗତ ପୋଷଣ ରସ ଲାଭକରି ପରିପୁଷ୍ଟ ହୁଅନ୍ତି । ବନସ୍ପତି ସମୂହ, ରୋଗନିବାରକ ଶକ୍ତି ରସରେ ପରିପୂର୍ଣ୍ଣ ହୁଅନ୍ତି । ଆପଣଙ୍କର ପୋଷଣ ପ୍ରବାହ, ଆମର ସର୍ବ ସୁଖର ଉତ୍ସରୂପେ କାମ କରେ । ଆପଣ ଆମର ପିତା ସ୍ୱରୂପ ପୋଷଣକର୍ତ୍ତା ।

# ପର୍ଜନ୍ୟ

ପର୍ଜ୍ଜନ୍ୟ ଦେବ କରି ଗର୍ଜ୍ଜନ ନରେ
ଆସନ୍ତି ନଇଁ
ବିଶ୍ୱ ବୁକୁରେ ଜଳସମ୍ପଦ ରାଶି
ଭରିବା ପାଇଁ ।

ବର୍ଷଣଶୀଳ ମେଘ ସେ ମହାଦାନୀ
ସେ ଜଳଦାନେ
କରନ୍ତି ପ୍ରକୃତିକୁ ଶ୍ୟାମ ସୁନ୍ଦରୀ
ନବ ଭୂଷଣେ ।
ଜଳରାଶିରେ ଯୁକ୍ତ ଶରୀର ତାଙ୍କ
ପୃଥିବୀ ପଥେ
ବାଢ଼ନ୍ତି ଅଭିଯାନ ଆନନ୍ଦଭରେ
ସେ ବାୟୁ ରଥେ ।

ଅଟଇ ଗତି ଧାର ଅତି ଚଞ୍ଚଳ
ଛୁଟଇ ବେଗେ
ବୃଷ୍ଟିହୁଅଇ ଜଳ କୁସୁମ ସମ
ତା' ଆଗେ ଆଗେ ।
ପର୍ଜ୍ଜନ୍ୟ ଗର୍ଜ୍ଜନର ନିର୍ଦ୍ଦେଶ ପାଇ
ବାରିଦ ମାଳା
ଆକାଶ ଆସନରୁ ଓହ୍ଲାନ୍ତି ତଳେ
ସେ ଭେଳାଭେଳା ।

କରନ୍ତି ସିଂହନାଦ ଗର୍ଜ୍ଜନ ତୋଳି
କମ୍ପେ ମେଦିନୀ
ବିଦ୍ୟୁତ୍ ଚମକଇ ଆଲୋକି ପଥେ
ବାଧା ନ ମାନି ।

ଜଳରାଶିରେ ଭିଜେ          ପୃଥିବୀ ବୁକୁ
ପାଏ ଜୀବନ
ବନସ୍ପତିରେ ଭରି          ଦିଅନ୍ତି ସେତ
ଔଷଧିଗୁଣ ।
ପ୍ରକୃତି ପରିପୁଷ୍ଟ          ହୁଏ ସେ ଜଳେ
ଜୀବ ଜଗତ
ପାଆନ୍ତି ପ୍ରାଣରସ          ଜୀବ ଜୀବନ
ସର୍ବେ ଉସତ ।
ସର୍ବ ସୁଖ ଐଶ୍ୱର୍ଯ୍ୟ          ଆଧାର ସିଏ
ଜୀବନ ସୁଧା-
ଲଭି ପ୍ରକୃତି ହୁଏ          ସର୍ଜନଶୀଳା
ତୃପ୍ତ ବସୁଧା ।
ପର୍ଜନ୍ୟଦେବ ଆମ          ପୋଷଣ କର୍ତ୍ତା
ସେ ଆମ ପିତା
କରିବା ସ୍ତୁତି ସର୍ବେ          ତାଙ୍କରି ପଦେ
ସେ ପ୍ରାଣଦାତା ।

•

# ବୈଶ୍ୱାନର ଦେବ ୧

"ବ୍ୟସ୍ତଭ୍ନାଦ୍ରୋହସୀ ମିତ୍ରୋ ଅଭୁତୋଽତର୍ବାବାବଦ କୃଣୋଜ୍ୟୋତିଷା ତମଃ
ବି ଚର୍ମଣୀବ ଧିଷଣେ ଅବର୍ତୟଦ୍ୱୈଶ୍ୱାନରୋ ବିଶ୍ୱସଧର ବୃଷ୍ୟମ"

ର.ସଂ ୨।ମ୬।ସୂ୮।ମନ୍ତ୍ର ୪୪୩୨

ବୈଶ୍ୱାନର ଦେବ ଅଗ୍ନିର ଅଧିଦେବତା ଅଟନ୍ତି । ଏହି ମହାନ୍ ଦେବଶକ୍ତି ଦ୍ୟୁଲୋକ ଓ ଭୂଲୋକକୁ, ସ୍ୱସ୍ୱ ସ୍ଥିତିରେ ସ୍ଥାପନ କଲେ । ନିଜର ତେଜୋଧାରା ଦ୍ୱାରା ବିଶ୍ୱକୁ ଆବୃତ କରିଥିବା ଅନ୍ଧକାର ଦୂରକଲେ । ଏହି ବୈଶ୍ୱାନର ଦେବ ବିଶ୍ୱର ଶକ୍ତି ଭଣ୍ଡାର । ତାଙ୍କ ମଧ୍ୟରେ ବର୍ଷଣ କ୍ଷମତା ପରିପୂର୍ଣ୍ଣ ହୋଇ ରହିଛି । ସେ ବିଶ୍ୱର ମଙ୍ଗଳ ରୂପ ।

ବୈଶ୍ୱାନର ଦେବ ।
ଅଗ୍ନିର ଅଧିଦେବତା, ବର୍ଷଣ ବିଭବ-
ତାଙ୍କ ମଧ୍ୟେ ହୋଇଅଛି ଠୂଳ,
ଏ ବିଶ୍ୱର ମିତ୍ରରୂପ, ସେ ମୂର୍ତ୍ତି ମଙ୍ଗଳ ।

ଯଥାସ୍ଥାନେ ସ୍ଥାପିଲେ ସେ, ଦ୍ୟୁଲୋକ ଭୂଲୋକ
ଅନ୍ଧକାର କଲେ ଦୂର, ସେ ଅଟନ୍ତି ଆଲୋକ ପ୍ରତୀକ,
ଭୂମଣ୍ଡଳ ତ୍ୱଚାରୂପେ ଅନ୍ତରିକ୍ଷ ଶୂନ୍ୟ ବଳୟକୁ
ଆବୃତ କରିଲେ ଘନ ନୀଳିମାରେ ତାକୁ ।
ସୁରକ୍ଷିତ କଲେ ଭୂମଣ୍ଡଳ,
କରିଥାଏ ଯଥା ରକ୍ଷା ତ୍ୱଚା, ଏ ଶରୀର ।

ଅମାପ ଶକ୍ତିର ଉତ୍ସ ବୈଶ୍ୱାନର ଦେବ
ଅଟନ୍ତି ରକ୍ଷାକବଚ, ଅଖଣ୍ଡ ପ୍ରଭାବ
ସର୍ବ ବିକାରର ପ୍ରତିକାର ପଥ ସିଏ
ବାହ୍ୟ ବିକାରର ପ୍ରତିରୋଧ ପ୍ରସ୍ତୁତିଏ ।
ଆଲୋକ ଉତ୍ତାପ ବାୟୁ, କରନ୍ତି ସଂଚାର
ସୁରକ୍ଷିତ ରଖିବାକୁ ଏ ବିଶ୍ୱ ସଂସାର,
ତ୍ୱଚା ରୂପ ଅୟନ ମଣ୍ଡଳେ
ସୁରକ୍ଷା ବଳୟ ସୃଷ୍ଟି କଲେ ନଭସ୍ଥଳେ ।

•

"ଶ୍ରୀୟେ ସଦୃଶୀରପୁରସ୍ୟ ଯାଃ
ସ୍ୱର୍ବିରୋଚମାନଃ କକୁଭାମଚୋଦତେ,
ସୁଗୋପା ଅସି ନ ଦଭାୟ ସୁକ୍ରତୋ
ପରୋ ମାୟାଭିର୍ଋତ ଆସ ନାମ ତେ ।"

ଋ.ସଂ. ୨।ମ୫।ସୂ୪୪।ମନ୍ତ୍ର୪୦୦୮

ହେ ଇନ୍ଦ୍ରଦେବ ! ଆପଣ ସ୍ୱର୍ଗାକାଶରେ ନିଜର ଆଭାଦ୍ୱାରା ପ୍ରକାଶିତ ହୋଇ, ଆକାଶକୁ ଶୋଭାମଣ୍ଡିତ କରନ୍ତି । ଆକାଶରେ ବର୍ଷାବାହୀ ମେଘ ମଧ୍ୟରେ ଜଳରାଶିକୁ ପ୍ରବାହିତ କରାନ୍ତି । ଆପଣ ପ୍ରଜାପାଳକ ଏବଂ ପ୍ରାଣୀମାନଙ୍କର ପ୍ରାଣପ୍ରିୟ । ଆପଣ ନୀତିହୀନ ବ୍ୟକ୍ତିକୁ ଦଣ୍ଡ ବିଧାନ କରନ୍ତି । ଆପଣଙ୍କର ଏହି ସଦ୍‌ଗୁଣ ପାଇଁ ସତ୍ୟଲୋକରେ ଆପଣଙ୍କର ନାମ ଶାଶ୍ୱତ ହୋଇ ରହିବ ।

# ଆକାଶପତି

ଆହେ ଇନ୍ଦ୍ରଦେବ ତୁମେ ଆକାଶର ପତି
ପ୍ରତିଭାତ ହୁଏ ତୁମ ଅନନ୍ତ ବିଭୂତି,
ଆଭା ବିଭା, ଆକାଶ ଅଙ୍ଗନେ
କି ଶାନ୍ତି ଦାୟକ ତାହା ଏ ବିଶ୍ୱଭୁବନେ ।

ଜଳୀୟ ବାଷ୍ପରେ ଭରା ଅନନ୍ତ ଆକାଶ
ବାଷ୍ପ ଆବରଣ ରଚେ ନୀଳାୟନ ବେଶ,
ସେ ନୀଳିମ ନୀଳଚର୍ଚ୍ଚା କେଡ଼େ ତୃପ୍ତିକର
ବିଶ୍ୱ ଜୀବନକୁ କରେ ନବୀନ ସୁନ୍ଦର ।

ଆକାଶରେ ପ୍ରବାହିତ ବାରିଦ ପ୍ରବାହ
ବହୁବର୍ଣ୍ଣ ରୂପଧରି ଭାସେ ଭସାମେଘ,
ଶୋଭାଯୁକ୍ତ କରିଥାଏ ଆକାଶର ବେଦି
ବିଜେ କରିଥାନ୍ତି ତହିଁ, ସୂର୍ଯ୍ୟଚନ୍ଦ୍ର ଆଦି ।

ଆସେ ଦିନ ଆସେ ରାତ୍ରି ହସେ ଉଷା ତହିଁ
ତାରା ବଧୂ ଆସିଥାନ୍ତି ଦୀପାଲୋକ ନେଇ,
ନିତିଦିନ ଚାଲେ ପୂଜା ଆଲୋକ ଉତ୍ସବ
ସର୍ଜନାର ପୂଜାୟନ ସ୍ରଷ୍ଟାର ଗୌରବ ।

ପ୍ରଜାଗଣ ପତି ତୁମେ, ହେ ଆକାଶ ପତି ।
ବିପୁଳ ଧରିତ୍ରୀ ବୁକେ ବୃଷ୍ଟିର ସୁରତି,
ସେ ଧରେ ତୁମର ସେଇ ଶ୍ୟାମଘନ ରୂପ
ପ୍ରୀତିମୟ ବୁକୁ ଧରେ ଶୃଙ୍ଗାର ସ୍ୱରୂପ ।
ଜ୍ୟୋତ୍ସ୍ନାମୟୀ ଚାନ୍ଦ୍ର ରଜନୀରେ
ତୁମେ ଧର ଶୁଭ୍ରରୂପ
ଚନ୍ଦ୍ରଲୀଳା ଚାଲେ ବସୁଧାରେ ।

•

"ଯଦ୍ରୋଦସୀ ପ୍ରଦିବୋ ଅସ୍ତି ଭୂମା
ହେଳୋ ଦେବାନାମୁତ ମର୍ତ୍ତ୍ୟତ୍ରା,
ତଦାଦିତ୍ୟା ବସବୋ ରୁଦ୍ରିୟାସୋ
ରକ୍ଷୋୟୁଜେ ତପୁରଘଂ ଦଧାତ ।"

ଋ.ସଂ ୨।ମ୬।ସୂ୬୨।ମନ୍ତ୍ର ୫୦୨୩

ଏ ସଂସାରରେ ସମସ୍ତେ ରୋଷଯୁକ୍ତ । ଏପରିକି ଦ୍ୟାବାପୃଥିବୀ ଆଦିତ୍ୟଗଣ, ମରୁଦ୍‌ଗଣ, ଦୁଇ ଅଶ୍ୱିନୀ କୁମାର ରୋଷଯୁକ୍ତ ଅଟନ୍ତି । ମଣିଷମାନେ ମଧ୍ୟ ରୋଷଗୁଣ ସମ୍ପନ୍ନ ।

ଅନୀତି ଅନ୍ୟାୟକୁ ପ୍ରତିରୋଧ କରିବାପାଇଁ ଈଶ୍ୱର ଆମମାନଙ୍କୁ ରୋଷଗ୍ରସ୍ତ କରିଛନ୍ତି । ଅସୁରମାନଙ୍କୁ ସଂହାର କରିବା ପାଇଁ ଦେବତାମାନଙ୍କୁ ମଧ୍ୟ ରୋଷଶକ୍ତି ପ୍ରଦାନ କରାଯାଇଛି । ରୋଷ ଶକ୍ତି, ଦେବାଭିଳଷିତ । ଲକ୍ଷ୍ୟ ସାଧନ ପାଇଁ ରୋଷଶକ୍ତିକୁ ପ୍ରୟୋଗ କରାଗଲେ ଅନିଷ୍ଟର କୌଣସି ସମ୍ଭାବନା ନାହିଁ କିମ୍ବା ଏହାକୁ ଅପପ୍ରୟୋଗ କରାଗଲା ବୋଲି କୁହାଯିବ ନାହିଁ ।

# ରୋଷାଗ୍ନି

ଏପରି ନାହିଁ କେହି ଯେ ରୋଷମୁକ୍ତ
ରୋଷ ଜର୍ଜର ସଦା ସାରା ଜଗତ,
ରୋଷାଗ୍ନି ସବୁଠାରେ ଜଳୁଛି ଦର୍ପେ
ଶାନ୍ତି ଲଭିବା ପାଇଁ ବ୍ୟାକୁଳ ସର୍ବେ ।

ମଣିଷ ପଶୁପକ୍ଷୀ ଦେବତାଗଣ
ଦ୍ୟାବା-ପୃଥିବୀ ଅବା ମରୁତଗଣ,
ରୋଷ ଯୁକତ ସାରା ସଂସାର ପରା
ଅଟଇ ଏହା ବିଶ୍ୱ ବିଧାନ ଧାରା ।

କି ଲକ୍ଷ୍ୟ ସାଧିବାକୁ ଜଗତ ସାଇଁ
ଭରିଲେ ସର୍ବ ହୃଦେ 'ରୋଷ'କୁ ନେଇ ?
ଦାରୁଣ ଦୁରାଚାରୀ ଦୈତ୍ୟ ନିଧନେ
ରୋଷାଗ୍ନି ଅସ୍ତ୍ର ଦେଲେ ଦେବତାଗଣେ,
ସେ ଅସ୍ତ୍ର ପ୍ରୟୋଗରେ କରିବେ ନାଶ
ଦାନବ କୁଳ ତହୁଁ ହେଲେ ବିନାଶ ।

ମାନବେ ରୋଷଯୁକ୍ତ କରିଲେ ସାଇଁ
ପାପ ଅନ୍ୟାୟ ସାଥେ ଲଢ଼ିବା ପାଇଁ,
ଅଧର୍ମ ଅପକର୍ମ ହୋଇବ ଦୂର
ରୋଷାଗ୍ନି ଅସ୍ତ୍ରାଘାତେ କରିବେ ଚୂର ।

ମଣିଷ ଧ୍ୱଂସକରେ ପ୍ରକୃତି ଯେବେ
ପ୍ରକୃତି ରୋଷଯୁକ୍ତ ହୁଅଇ ତେବେ,
ପ୍ରଳୟ ସୃଷ୍ଟିହୁଏ ଏ ବିଶ୍ୱ ପରେ
ତଥାପି ମୂଢ଼ ଜନ ବୁଝି ନପାରେ ।

ଅପପ୍ରୟୋଗ କଲେ ଶକତି ରୋଷ
ଅଚିରେ ଘଟିଥାଏ ହେ ସର୍ବନାଶ,
ମଣିଷ ଦୁଃଖ କଷ୍ଟେ ହୁଅଇ ଘାଣ୍ଟି
ଆପଣା ଅଣ୍ଟିଛୁରି କାଟଇ ତଣ୍ଟି ।

•

"ମା କସ୍ୟାଭୁତକ୍ରତୁ ଯକ୍ଷଂ ଭୁଜେମା ତନୂଭିଃ ।
ମା ଶେଷସା ମା ତନସା ।"

ଋ.ସଂ ୨।ମ୫।ସୂ୭୦।ମନ୍ତ୍ର୪ ୨୪୮

ହେ ମିତ୍ର ଓ ବରୁଣ ଦେବଦ୍ୱୟ ! ଆପଣ ଆମକୁ ସତ୍‌ପଥରେ ଗତି କରିବାପାଇଁ ପ୍ରେରଣା ଦିଅନ୍ତୁ । ପରଧନ ଲାଭ କରିବା ପାଇଁ ଆମ ମନ ମଧ୍ୟରେ ଅଭିଳାଷ ସୃଷ୍ଟି ନ ହେଉ । ନିଜର ବନ୍ଧୁଗଣ ଏବଂ ସମ୍ପର୍କୀୟମାନେ ମଧ୍ୟ ଧନ ଲାଳସାରୁ କ୍ଷାନ୍ତ ରହିବା ପାଇଁ, ସେମାନଙ୍କୁ ପ୍ରେରଣା ଦିଅନ୍ତୁ । ଏହାହିଁ ଆମର ପ୍ରାର୍ଥନା ।

# ଅର୍ଥଲୋଭ

ଆହେ ଜନାର୍ଦ୍ଦନ, ହେ ମିତ୍ରବରୁଣ ।
କରୁଛୁ ପ୍ରାର୍ଥନା ସାଇଁ
ସତ୍ ପଥରେ ମନ ଚଳାଅ ସର୍ବଦା
ସତ୍‌କର୍ମ କରିବା ପାଇଁ ।

ପ୍ରାଣେ ଭରିଦିଅ ଗଭୀର ସନ୍ତୋଷ
ଆନନ୍ଦରେ ଭରୁ ମନ,
ଯାହା ଦେଇଅଛ ତାହା ଆମ ପ୍ରାପ୍ୟ
ନ ଲୋଡୁ ଅପର ଧନ ।

ଜୀବନ ନ ହେଉ ଉଦ୍‌ବେଗ ବିକଳ
ପରଧନ ଲାଭ ଲୋଭେ,
ଈର୍ଷା କାତରତା ନଛୁଉଁ ମନକୁ
ଅନ୍ୟର ସମ୍ପତ୍ତି ଲାଭେ ।

ଧନ ଲାଳସାରେ ମଗ୍ନ ନ ରହନ୍ତୁ
ପରିବାର ପରିଜନ
ସମସ୍ତଙ୍କ ମଧ୍ୟେ ଦିଅ ସଦ୍‌ଭାବନା
ନିର୍ଲୋଭ ରହୁ ମନ ।

ଅନୀତି ପଥରୁ ଦୂରେଇ ରହନ୍ତୁ
ସତ୍ ପଥରେ କରି ଗତି
କରୁଛୁ ପ୍ରାର୍ଥନା, ଦିଅ ହେ ପ୍ରେରଣା
ଦିଅ ପ୍ରଭୁ ଶୁଭ ମତି ।
ସମ୍ପଦେ ନହେଉ ବଣା,
ଅଭାବ ନକରୁ ନୀତିହରା କା'ରେ
ନ ହେଉ ସୁବୁଦ୍ଧି ଊଣା ।

•

• ଈର୍ମାନ୍ୟଦ୍ୱପୁଷେ ବପୁଷ୍କକ୍ରଂ ରଥସ୍ୟ ଯେମଥୁଃ
ପର୍ଯ୍ୟନ୍ୟା ନାହୁଷା ଯୁଗା ମହ୍ନା ରଜାଂସି ଦୀୟଥଃ ।

ମନ୍ତ୍ର ୪୨୫୭

• ପ୍ର ଚ୍ୟବାନାଜ୍ଜୁଜୁରୁଷୋ ବାବ୍ରିମକ୍ରଂ ନ ମୁଞ୍ଚଥଃ
ଯୁବା ନଦୀ କୃଥଃ ପୁନରା କାମମୃଣ୍ୱେ ବଧ୍ୱଃ ।

ଋ.ସଂ୨। ମ..। ସୂ୭୩, ୭୪। ମନ୍ତ୍ର ୪୨୬୯

ହେ ଅଶ୍ୱିନୀକୁମାର ଦେବତାଦ୍ୱୟ । ଆପଣଙ୍କ ରଥର ଗୋଟିଏ ଚକକୁ ସୂର୍ଯ୍ୟଙ୍କର ଶୋଭାବର୍ଦ୍ଧନ ଓ ଗତିଶୀଳତା ପାଇଁ ପ୍ରୟୋଗ କରିଛନ୍ତି ଏବଂ ଅନ୍ୟ ଚକଟି ପୃଥିବୀର ଗତିଶୀଳତାକୁ ଅତୁଟ ରଖି, ଦିନରାତି ସଂଘଟନ ପ୍ରକ୍ରିୟା ସମ୍ପାଦନ କରୁଛି ।

ହେ ଅଶ୍ୱିନୀକୁମାର ଦ୍ୱୟ । ଆପଣ ଜରାଗ୍ରସ୍ତ ତପୋମଗ୍ନ ଚ୍ୟବନଋଷିଙ୍କର ରୂପକୁ, ନିଜର ଶକ୍ତି ବଳରେ, ପରିବର୍ତ୍ତନକରି, ଋଷିପତ୍ନୀଙ୍କର ପବିତ୍ର ପାତିବ୍ରତ୍ୟର ପୁରସ୍କାର ସ୍ୱରୂପ, ତାଙ୍କୁ ପୁଣି ଯୌବନଦୀପ୍ତ କରିଥିଲେ । ଫଳରେ ମହର୍ଷି ସାଂସାରିକ କର୍ତ୍ତବ୍ୟ ନିର୍ବାହ ପାଇଁ ସମର୍ଥ ହୋଇ ପାରିଲେ ।

ବି.ଦ୍ର : ଅଶ୍ୱିନୀ କୁମାର ଦ୍ୱୟ ସ୍ୱର୍ଗ ବୈଦ୍ୟ ଏବଂ ଭେଷଜ ତଥା ଶଲ୍ୟ ଚିକିତ୍ସକ ମଧ୍ୟ । ତାଙ୍କ ଚିକିତ୍ସାବଳରେ ଜରାଗ୍ରସ୍ତ ମହର୍ଷି ଯୌବନ ମଣ୍ଡିତ ହୋଇଥିଲେ । ବୈଦିକ ତଥା ତାତ୍ତ୍ୱିକ ଅର୍ଥ ଦୃଷ୍ଟିରୁ, ଅଶ୍ୱ ଅର୍ଥ କିରଣ ସମୂହ, ଏହା ଅନ୍ତରିକ୍ଷୀୟ ପୋଷଣ ପ୍ରବାହ ଓ ଏଥିରେ ଆରୋଗ୍ୟ ଶକ୍ତି ପରିପୂର୍ଣ୍ଣ ହୋଇ ରହିଛି ଯାହାକୁ ପ୍ରକୃତି ସେଥିରୁ ଲାଭକରିଥାଏ । ତେଣୁ ଏହା ପୁଷ୍ଟି ଦାୟକ ପ୍ରାକୃତିକ ପ୍ରବାହମଧ୍ୟ । ଏକ ଶକ୍ତିର ଏହା ଦୁଇ ସ୍ୱରୂପ, ଅନ୍ତରିକ୍ଷୀୟ ପ୍ରବାହ ଓ ପ୍ରାକୃତିକ ପ୍ରବାହ । ଏହାର ସମ୍ମିଳିତ ପ୍ରକାଶକୁ ମଧ୍ୟ "ଅଶ୍ୱିନୀକୁମାର ଦ୍ୱୟ" କୁହାଯାଏ । ଏହି ଦୁଇ ସ୍ରୋତ ମୁଖ୍ୟତଃ ଅଭିନ୍ନ ।

# ଅଶ୍ୱିନୀକୁମାର ଦ୍ୱୟ

ହେ ଦେବ ଦ୍ୱୟ, 'ଅଶ୍ୱିନୀ କୁମାର' ।
ତୁମେ ଅଟ ସ୍ୱର୍ଗ ବୈଦ୍ୟ ଦେବଗଣଙ୍କର ।
ଅଦ୍ଭୁତ ତୁମର ରଥ, ଚକ୍ର ବେନି ସଦା ଚଳମାନ
ଗତି କରିପାରେ ତାହା, ବ୍ୟାପ୍ତ ତ୍ରିଭୁବନ ।
ଏକ ଚକ୍ର ଗତିବଳେ ସୂର୍ଯ୍ୟାୟନ ନିତି
ଆନ ଚକ୍ର ସଂଘଟନ କରେ ଦିବାରାତ୍ରି ।
ପ୍ରାକୃତିକ ଗତିଧାରା ରୂପକାର ତୁମେ
ଆହେ ଦେବ ! ଏହି ତ୍ରିଭୁବନେ ।

ପତ୍ନୀ ଶୋକରେ ଅସ୍ଥିର ମୂର୍ଚ୍ଛିତ ମୁନିଙ୍କୁ
କୂପରୁ ଉଦ୍ଧାର କଲ ଚନ୍ଦନ ଋଷିଙ୍କୁ ।
ମୁନି ପତ୍ନୀ ସୁକନ୍ୟାଙ୍କ ଥିଲ ରୂପ ଲୁବ୍ଧ
ପାତିବ୍ରତ୍ୟ କଲା କିନ୍ତୁ ହୃଦୟକୁ ମୁଗ୍ଧ,
ତପୋମଗ୍ନ ଜରାଗ୍ରସ୍ତ ଚ୍ୟବନ ଋଷିଙ୍କୁ
ନବ ଯୌବନେ ଉଦୀପ୍ତ କଲ ପୁଣି ତାଙ୍କୁ ;
ସୁଖମୟ ସଂସାର ଜୀବନ
ଯାପିବାକୁ ଯୋଗ୍ୟ ତାଙ୍କୁ କରିଥିଲ ପୁଣ ।

ବିକଳାଙ୍ଗ 'ବିଶପଳା' ଚଳନ ଶକତି-
ଲଭିଲେ, ପ୍ରତିରୋପଣେ' ଲୌହଜଙ୍ଘ ଗୋଟି ।
ମଧୁ ବିଦ୍ୟା ବିଶାରଦ ଆହେ ଦେବ ଦ୍ୱୟ
ଶୁଭକର୍ମ ସମ୍ପାଦକ, ପ୍ରାଣୀଙ୍କ ଅଭୟ,
ସୁଖ ଦାନ କର ତୁମେ ଶତ୍ରୁ ବିନାଶନେ
ଐଶ୍ୱର୍ଯ୍ୟ ପ୍ରଦାତା ତୁମେ ନିଖିଳ ଭୁବନେ ।
ଜାଣ ତୁମେ ବୃକ୍ଷଲତା ଭେଷଜ ବିଭବ
ବିଶ୍ୱର କଲ୍ୟାଣ ପାଇଁ କର ତା' ପ୍ରୟୋଗ ।
ଯଜ୍ଞ ପୀଠେ କରୁଛୁ ଆହ୍ୱାନ
ଗ୍ରହଣ କର ହେ ଦେବ !
ହବ୍ୟାହୁତି ଆମ ।

•

- ବଳିତ୍ଥା ପର୍ବତାନାଂ ଖିଦ୍ରଂ ବିଭର୍ଷି ପୃଥିବି
  ପ୍ର ଯା ଭୂମିଂ ପ୍ରବତ୍ୱତି ମହ୍ନା ଜିନୋଷି ମହିନି ।

ମନ୍ତ୍ର ୪୩୪୩

- ସ୍ତୋମାସସ୍ତ୍ୱା ବିଚାରିଣି ପ୍ରତି ଷ୍ଟୋଭନ୍ତ୍ୟକ୍ତୁଭିଃ
  ପ୍ର ଯା ବାଜଂ ନ ହେଷନ୍ତଂ ପେରୁମସ୍ୟସ୍ୟର୍ଜୁନି ।

ମନ୍ତ୍ର ୪୩୪୪

- ଦୃଳହା ଚିଦ୍ୟା ବନସ୍ପତୀନ୍କ୍ଷ୍ମୟା ଦର୍ଧର୍ଷ୍ୟୋଜସା
  ଯତ୍ତେ ଅଭ୍ରସ୍ୟ ବିଦ୍ୟୁତୋ ଦିବୋ ବର୍ଷନ୍ତି ବୃଷ୍ଟୟଃ ।

ର.ସଂ୨। ମ୫ । ସୂ୮୪। ମଂ ୪୩୪୫

ଅତ୍ରିଭୌମ ଋଷି, ଉପରୋକ୍ତ ତିନୋଟି ମନ୍ତ୍ର ପୃଥବୀ ଦେବୀଙ୍କ ଉପରେ ରଚନା କରିଛନ୍ତି । ଏହି ମନ୍ତ୍ରର ସାମଗ୍ରିକ ଅର୍ଥ ହେଉଛି, "ପୃଥିବୀ ଦେବୀ ସର୍ବଗୁଣ ସମ୍ପନ୍ନା ଓ ମହିମାମୟୀ। ସେ ଚରାଚରର ଜନନୀରୂପେ ତାହାର ପରିପୋଷଣ କରନ୍ତି । ସେ ସମୁଚ୍ଚ ପର୍ବତମାନଙ୍କୁ ଧାରଣ କରି ପ୍ରାକୃତିକ ସନ୍ତୁଳନ ରକ୍ଷାକରିଥାନ୍ତି । ଆକାଶ ମାର୍ଗରୁ ମେଘମାଳା ଆକର୍ଷଣ କରି, ବୃଷ୍ଟିଧାରା ପ୍ରବାହିତ କରନ୍ତି । ପ୍ରକୃତି ଶସ୍ୟ ଶ୍ୟାମଳା ହୁଏ । ସ୍ତୋତାଗଣ ପୃଥିବୀ ମାତାଙ୍କୁ ଭକ୍ତିର ସହିତ ସ୍ତୁତି କରିଥାନ୍ତି । ବଜ୍ର, ବିଦ୍ୟୁତ୍ ଓ ବାରିବର୍ଷଣ ମଧ୍ୟରେ ସେ ବନସ୍ପତି ସମୂହକୁ ପଲ୍ଲବିତ କରି ଦୃଢ଼ତା ଧାରଣ କରିଥାନ୍ତି । ପୃଥିବୀ ଦେବୀ ଅତ୍ୟନ୍ତ ମହନୀୟା ଏବଂ ପରମ ପୂଜନୀୟା ।

# ପୃଥିବୀ

ହେ ପୃଥିବୀ ମାତା !
ମହିମା ମଣ୍ଡିତା ଦେବୀ ରୂପସମନ୍ୱିତା,
ସର୍ବଗୁଣମୟୀ
ଗୋ ପୃଥିବୀ ଅୟି !

ବହୁ ବର୍ଣ୍ଣା ପ୍ରକୃତିକୁ ମଣ୍ଡିଛ କୋଳରେ
ବିମୁଗ୍ଧ କରିଛ ସର୍ବେ ରୂପର ସମ୍ଭାରେ ।
ତୁମେ ଗୋ ଜନନୀ ଅଟ, ବିଶ୍ୱ ଚରାଚର
ତୁମେ ଗୋ ମଙ୍ଗଳଦାତ୍ରୀ ମାନବ ଜାତିର ।
ଦେବତା ଗନ୍ଧର୍ବ ଆଉ କିନ୍ନର କିନ୍ନରୀ
ଏ ଭୋଗ ଭୁବନେ ଆସି ଲୀଳା ଖେଳା ରଚି
ସ୍ୱଚ୍ଛାନନ୍ଦେ ଉଠନ୍ତି ଶିହରି ।

ପ୍ରକୃତି ମେଳାଏ ଏଥି ରୂପର ପସରା
ବହୁ ରୂପେ, ବହୁବର୍ଣ୍ଣେ ମଣ୍ଡିତ ଏ ଧରା,
ତା' ବୁକୁରେ ଊର୍ଦ୍ଧ୍ୱବାହୁ ତାପସ ପର୍ବତ
ଅନନ୍ତ କାଳରୁ ସିଏ ସାଧୁଛି ତା' ବ୍ରତ-
ଭେଟିବାକୁ ଅନନ୍ତ ପ୍ରକାଶ,
ବ୍ରତ ତା'ର ହୋଇ ନାହିଁ ଶେଷ ।
ଗର୍ଜନ କରନ୍ତି ଚୂଳେ ପର୍ଜନ୍ୟ ମଣ୍ଡଳୀ
ସେ ତାଙ୍କର ଗତିପଥ ଓଗାଳୁଛି ବୋଲି,
ଦମ୍ଭେ ଛିଡ଼ା ହୋଇଥାଏ-
ଫିଟାଏନି ଗଳା,
ତା' ଶରୀରେ ମଥା ପିଟୁଥାନ୍ତି-
ମେଘ ମାଳା
କରେ ତାଙ୍କୁ ମହି ମୁଖ
ମହିତଳ ଗାମୀ,
ଆକାଶରୁ ଛୁଟି ଆସେ
ବର୍ଷା ରିମ୍‌ଝିମ୍ ।

ପ୍ରକୃତିକୁ କରେ ଶ୍ୟାମଶୀଳା,
ଧରଇ ସେ ଶୋଭାମୟୀ
ରୂପ ବର୍ଣ୍ଣମାଳା ।

ନଦୀ ହ୍ରଦ ପ୍ରପାତ ନିର୍ଝର
ପରିବ୍ୟାପ୍ତ ନୀଳାଭ ସାଗର,
ସୂର୍ଯ୍ୟ ଚନ୍ଦ୍ରାଲୋକେ ସ୍ନାତ ଶରୀର ସୁଷମା
ଆଗୋ ବସୁନ୍ଧରା ରାଣୀ ରୂପର ପୂର୍ଣ୍ଣିମା ।
ତୁମେ ଅଟ ସୃଜନର ସୌନ୍ଦର୍ଯ୍ୟ ପସରା
କର ଆତ୍ମହରା ।
ହେ ଜନନୀ ଘେନ ମୋ ପ୍ରଣତି
ଆଗୋ ବସୁମତୀ ।

•

"ଅଭ୍ରାତରୋ ନ ଯୋଷଣୋ ବ୍ୟନ୍ତଃ
ପତିରିପୋ ନ ଜନୟୋ ଦୂରେବାଃ,
ପାପାସଃ ସନ୍ତୋ ଅନୃତା ଅସତ୍ୟା
ଇଦଂ ପଦମଜନତା ଗଭୀରମ୍ ।"

ଋ.ସଂ୨।ମ୪।ସୂକ୍ତ।ମନ୍ତ୍ର ୩୧୨୮

ଏ ସଂସାର ଏକ ମିଳନ ସ୍ଥଳ । ଏଠାରେ ଯେ ବନ୍ଧୁହୀନ, ସେ ଅତ୍ୟନ୍ତ ଦୁଃଖୀ । ପତିପତ୍ନୀଙ୍କୁ ନେଇ ଏ ସଂସାର ସୁଖମୟ । ପତି ବିଦ୍ରୋହିଣୀ ପତ୍ନୀଙ୍କୁ, ବହୁଦୁଃଖ ଭୋଗ କରିବାକୁ ପଡ଼ିଥାଏ । ଏ ଜୀବନ ଯଜ୍ଞମୟ । ଯେ ଯଜ୍ଞଧାରା ପାଳନକରନ୍ତି ନାହିଁ, ସେ ଦୁଃଖ ଭୋଗ କରନ୍ତି । ମିଥ୍ୟାବାଦୀ ପାପାଚାରୀ ବ୍ୟକ୍ତିଙ୍କୁ ନର୍କଯନ୍ତ୍ରଣା ଭୋଗିବାକୁ ପଡ଼ିଥାଏ ।

# ଅନୁଶାସନ

ଜୀବନେ ଅଛି ଯଦି ଦୁର୍ଲଭ ଧନ
ଅଟଇ ତାହା ସଦା ସୁବନ୍ଧୁ ଜନ,
ବନ୍ଧୁବିହୀନ ଯିଏ ଅଟଇ ନର
ଦୁଃଖ କଷଣେ ସଦା ହୁଏ ଅସ୍ଥିର ।

ଦାମ୍ପତ୍ୟ ଜୀବନରେ ପତି ଓ ଜାୟା
ଏକଇ ପ୍ରାଣ ଅଟେ ଦୁଇଟି କାୟା,
ଜଣେ ଅଟେ ଅନ୍ୟର ପରିପୂରକ
ଭିନ୍ନତା ମଧ୍ୟେ ଏହା ଅଭିନ୍ନ ରୂପ ।

ପତି ବିଦ୍ୱେଷେ ସଦା ଲିପ୍ତ ଯେ ନାରୀ
ହୁଅଇ ସନ୍ତାପରେ ସନ୍ତତଃ ଘାରି,
ଅସୀମ ଦୁଃଖଭୋଗ କରେ ସେ ସିନା
ଯେ ପ୍ରତିପ୍ରାଣା ଅଟେ ସେ ମହତ୍ତମା ।

ଯେ ପାପାଚାରୀ ମିଥ୍ୟାବାଦୀ ଜୀବନେ
ଜୀବନ ଯଜ୍ଞଧାରା ଅନୁଶାସନେ,
ନ ଚଳେ ନୀତି ମାନି, ସେ ଅତି ଦୁଃଖୀ
ବନ୍ଧୁ କଷଣ ଭାଗ୍ୟେ ଆଣିଛି ଲେଖି ।

ଅସତ୍ୟ ଭାଷଣରେ ଯେ କାଟେ ଦିନ
ସଂସାରେ ନାହିଁ କେହି ତା'ଠାରୁ ହୀନ,
ଧର୍ମ ଧାରଣ କରିଅଛି ଏ ମହି
ଏ ଧରା, ପାପଭାରା ନ ପାରେ ସହି ।

ପାପୀ ଜୀବନ ଅଟେ ନରକ ସମ
ପାପ ତା' ପାଇଁ ଅଟେ ଅମୃତ ଭ୍ରମ,
ଅସୀମ ଦୁଃଖ
ଲଭେ ସେ ଜୀବନରେ ନ ପାଏ ସୁଖ ।

•

• ଧ୍ରୁବଂ ଜ୍ୟୋତିର୍ନିହିତଂ ଦୃଶୟେ କଂ ମନୋ
ଜବିଷ୍ଟଂ ପତୟତ୍ସ୍ୱନ୍ତଃ
• ବିଶ୍ୱେ ଦେବାଃ ସମନସଃ ସକେତା ଏକଂ
କ୍ରତୁମଭି ବି ଯନ୍ତି ସାଧୁ ।

ମନ୍ତ୍ର ୪୪୧

ହେ ବୈଶ୍ୱାନର ଅଗ୍ନିଦେବ ! ଆପଣ ସ୍ଥିର ଥାଇ ମଧ୍ୟ ମନ ଠାରୁ ଅଧିକ ଦ୍ରୁତଗାମୀ । ଜଗତର ସମସ୍ତ ପ୍ରାଣୀଙ୍କୁ ଆପଣ ଆନନ୍ଦମୟ ପଥର ସଂଧାନ ଦିଅନ୍ତି । ଆପଣଙ୍କର ଏହି ଶ୍ରେଷ୍ଠ କର୍ମକୁ ସମ୍ମାନିତ କରିବାପାଇଁ ଦେବଗଣ ଆପଣଙ୍କ ପାଖକୁ ଆସନ୍ତି ।

• ବି ମେ କର୍ଣ୍ଣା ପତୟତୋ ବି ଚକ୍ଷୁର୍ବୀ ୩ ଦଂ
ଜ୍ୟୋତିର୍ହୃଦୟ ଆହିତଂ ଯତ୍
ବି ମେ ମନଶ୍ଚରତି ଦୂରଆଧୀଃ କିଂ
ସ୍ୱିଦ୍ୱକ୍ଷ୍ୟାମି କିମୁ ନୂ ମନିଷ୍ୟେ ।

ଋ.ସଂ ୨। ମ୬। ସୂ୯। ମନ୍ତ୍ର ୪୪୨

ହେ ବୈଶ୍ୱାନର ଅଗ୍ନିଦେବ ! ଆମର କର୍ଣ୍ଣ ଆପଣଙ୍କର ସ୍ତୁତିଗାନ ଶୁଣିବା ପାଇଁ ଉତ୍କଣ୍ଠିତ । ଆମର ନୟନ ଆପଣଙ୍କ ଦିବ୍ୟ ଦର୍ଶନ ପାଇଁ ତୃଷାତୁର । ଆପଣଙ୍କର ସ୍ୱରୂପ ବିଷୟରେ ଧାରଣା ସୃଷ୍ଟି କରିବା ପାଇଁ ଅନ୍ତଃର୍ମନ ସର୍ବଦା ବ୍ୟାକୁଳ । ଆମର ଜ୍ଞାନ ଆପଣଙ୍କ ବିଷୟରେ ଜାଣିବା ପାଇଁ ସର୍ବଦା ତତ୍ପର । ଆପଣଙ୍କର ମହିମାଗାନ ଆମେ ଆଉ କିପରି କରିବୁ ।

# ବୈଶ୍ୱାନର

-୨-

ବୈଶ୍ୱାନର, ହେ ବିଶ୍ୱପାଳକ ।
ତୁମରି ସର୍ଜନା ଅଟେ ଦ୍ୟୁଲୋକ ଭୂଲୋକ,
ବୈଶ୍ୱାନର ଅଗ୍ନିଦେବ ତବ ଗୁଣ ଗାନ
କରିବାକୁ ନାହିଁ ଭାଷା, ନାହିଁ ଆମ ଜ୍ଞାନ ।

ଶ୍ରବଣ ସର୍ବଦା ଆମ ରହିଛି ତତ୍ପର
ଶୁଣିବାକୁ ତୁମ ଯଶକୀର୍ତ୍ତି ନିରନ୍ତର,
ଏ ନେତ୍ର ଯୁଗଳ ଦିବ୍ୟ ଦରଶନ ପାଇଁ
ଦିବ୍ୟାନନ୍ଦ ଲଭିବାକୁ ରହିଛି ଅନାଇ ।

ଦୂରସ୍ଥ ଜ୍ୟୋତିଃରେ ମନ ସର୍ବଦା ଅସ୍ଥିର
ଅନ୍ତର୍ଜ୍ୟୋତିଃ ଦରଶନ ତା' ପାଇଁ ବିରଳ,
ସେ ମହା ଦର୍ଶନ ପାଇଁ ବ୍ୟାକୁଳିତ ମନ
ଉତ୍କଣ୍ଠାଆକୁଳ ନେତ୍ର ପାଏନି ଦର୍ଶନ ।

ଜୀବର ମର ଶରୀରେ ସେ ଅମର ଜ୍ୟୋତି
ଅବିନାଶୀ ସ୍ଥିର ସିଏ, ସେ ଦିବ୍ୟବିଭୂତି,
ରଚନା କରିଅଛନ୍ତି ଏ ଜୀବନ ଚକ୍ର
ବିପୁଳ ଜୀବନ ଧାରା ଭରା ଏ ଭୂଲୋକ ।

ଆଦିତ୍ୟ ରୂପରେ ସିଏ ରହି ଆକାଶରେ
ରଚିଛନ୍ତି ଋତୁଚକ୍ର ବିଶ୍ୱ ପ୍ରକୃତିରେ,
ସେ ସ୍ଥିର ଥିଲେ ବି ଗତି ଅତ୍ୟନ୍ତ ପ୍ରଖର
ଅତିକ୍ରମ କରିପାରେ ବେଗ ଏ ମନର ।

ସେ ଦେଖାନ୍ତି ସର୍ବେ, ପଥ ଆନନ୍ଦଦାୟକ
ବୈଶ୍ୱାନର ନୀତି ନିର୍ଣ୍ଣାୟକ,
ଆସନ୍ତି ଦେବତାଗଣ ତାଙ୍କ ସନ୍ନିଧାନେ
ପୂଜିବାକୁ ତାଙ୍କୁ ସସମ୍ମାନେ ।

•

- ମାନୋ ବୃକାୟ ବୃକ୍ୟେ ସମସ୍ମା
  ଅଘାୟତେ ରୀରଧତା ଯଜତ୍ରାଃ
  ଯୂୟଂ ହି ଷ୍ଠା ରଥ୍ୟୋ ନସ୍ତନୂନାଂ
  ଯୂୟଂ ଦକ୍ଷସ୍ୟ ବଚସୋ ବଭୂବ ।

ମନ୍ତ୍ର ୪୯୦୭

ହେ ପୂଜ୍ୟ ଦେବତାଗଣ ! ଆପଣମାନେ ଆମକୁ କୁଟିଳତା ଏବଂ କ୍ରୂର କର୍ମରୁ ଦୂରେଇ ରଖନ୍ତୁ । ଆମକୁ ଶକ୍ତିସମ୍ପନ୍ନ କରି ଆମର ବାକ୍‌ଶକ୍ତିକୁ ଉତ୍ତମ ଦିଗରେ ପ୍ରଭାବିତ କରନ୍ତୁ ।

- ମା ବ ଏନୋ ଅନ୍ୟକୃତଂ ଭୁଜେମ ମା ତତ୍କର୍ମ ବସବୋ ଯଚ୍ଚୟଧ୍ୱେ
  ବିଶ୍ୱସ୍ୟ ହି କ୍ଷୟଥ ବିଶ୍ୱଦେବାଃ ସ୍ୱୟଂ ରିପୁସ୍ତନ୍ୱଂ ରୀରିଷୀଷ୍ଟ

ମନ୍ତ୍ର ୪୯୦୮

ହେ ଦେବଗଣ ! ଅନ୍ୟଦ୍ୱାରା କରାଯାଇଥିବା ପାପକର୍ମର ପ୍ରଭାବ ଆମକୁ ଭୋଗିବାକୁ ନପଡୁ । ଆମେ ମଧ୍ୟ ପାପକର୍ମ କରିବା ପାଇଁ ଉଦ୍ୟମ ନକରୁ । ହେ ବିଶ୍ୱଦେବ ! ଆପଣଙ୍କ ପ୍ରଭାବରେ ଶତ୍ରୁ ଆପେ ଆପେ ଧ୍ୱଂସ ହୋଇ ଯାଉ ।

- 'ଅପି ପନ୍ଥାମଗ୍ମହି ସ୍ୱସ୍ତିଗାମନେହସମ୍
  ଯେନ ବିଶ୍ୱାଃ ପରି ଦ୍ୱିଷୋ ବୃଣକ୍ତି ବିନ୍ଦତେ ବସୁ ।

ଋ.ସଂ.୨ । ମ୬ । ସୂ୫୧ । ମନ୍ତ୍ର ୪୯୧୭

ଯେଉଁ ମାର୍ଗ ଶତ୍ରୁରହିତ ଏବଂ ଆମପାଇଁ ଅନୁସରଣୀୟ, ସେହି ମଙ୍ଗଳମୟ ମାର୍ଗରେ ଗମନ କରିବା ପାଇଁ, ହେ ଦେବଗଣ ! ଆମ ମାନଙ୍କୁ ପ୍ରେରଣା ଦିଅନ୍ତୁ ।

# ଦେବଗଣ

ପାରେନି ମନଟାଣି ନନ୍ଦନବନ
ସ୍ୱର୍ଗ ଆସନ ତେଜି ଦେବତାଗଣ,
ଆସନ୍ତି ମହିତଳେ, ଭେଟିବା ପାଇଁ
ବିଶ୍ୱ ପ୍ରକୃତି ରଚିଛନ୍ତି ଯେ ସାଇଁ ।

ଭୁବନସ୍ୱାମୀ ସୂର୍ଯ୍ୟ ଆସନ୍ତି ଏଥି
ଆଲୋକ ଉତ୍ତାପ ସେ ବିତରି ନିତି,
ଭରି ଦିଅନ୍ତି ଭବେ ଜୀବନ ସତ୍ତା
ଅଟନ୍ତି ଏ ବିଶ୍ୱର ସେପରା କର୍ତ୍ତା ।

ଚନ୍ଦ୍ରମା ଚାରୁଶୀଳା ଚାନ୍ଦିନୀ ନେଇ
ଚର୍ଚ୍ଚିତ କରିବାକୁ ଆସନ୍ତି ମହି,
କରନ୍ତି ଏ ବିଶ୍ୱକୁ ଶୁଭ୍ରବରଣା
ଚକୋର ତୃଷା ନିବାରଇ ଜୋଛନା ।

ପୂଜ୍ୟ ଦେବତାଗଣ ଆସନ୍ତି ଏଥି
ମଙ୍ଗଳ ବିଧାନରେ ହୁଅନ୍ତି ବ୍ରତୀ,
କରନ୍ତି ବସୁଧାର ଦୁଃଖ ସେ ଦୂର
ଦେବ କଲ୍ୟାଣ ଲଭେ ଏ' ଚରାଚର ।

କ୍ରୂର କୁଟିଳ ଭାବୁ କର ହେ ରକ୍ଷା
ବଚନ ହେଉ ଦୀପ୍ତ, ମିଳୁ ସୁରକ୍ଷା,
ଉତ୍ତମ ପଥେ ଗତି କରିବା ପାଇଁ
ଦିଅ ପ୍ରେରଣା ଦେବ ! ଆଶିଷ ଦେଇ ।

ଅନ୍ୟର ପାପକର୍ମ କୁ ପରିଣାମ
ଦୁଃଖର କାରଣ ତା' ନ ହେଉ ଆମ,
ନିଜେ ନ ଚଳୁ ଘୋର ସେ ପାପ ପଥେ
ନ ଆସୁ ପାପବୋଧ ହୃଦୟଗତେ ।

ହେ ଦେବଗଣ ତୁମ ଶୁଭ ଆଗମ
କରିଦିଏ ପବିତ୍ର ଏ ବିଶ୍ୱଧାମ,
ଜୀବନ ଯାତ୍ରାବାଟ୍ଟୁ ସେ ଶୁଭପଥେ
ସହାୟହୁଅ ଚଲୁ ବିବେକମତେ ।

ସଦ୍‌ବୁଦ୍ଧି ଜ୍ଞାନ ଲଭି ଆଶିଷ ବଳେ
ଶ୍ରେୟ ମାର୍ଗରେ ଗତି କରୁହେ ହେଳେ,
ସର୍ବ ମଙ୍ଗଳମୟ ହେ ଦେବଗଣ !
କାମନା କରୁଅଛୁ ବିଶ୍ୱ କଲ୍ୟାଣ
ବିଶ୍ୱ ସୁରକ୍ଷା
ହେ ଦେବଶକ୍ତି ଆମ ଏତିକି ଭିକ୍ଷା ।

ସୃଜନ ପୋଷଣ, ତଥା ପରିବର୍ତ୍ତନ
ଏ ସୃଷ୍ଟି ପ୍ରକ୍ରିୟା ଯେ ଅଭ୍ରାନ୍ତ ପୁଣ,
ଦେବତା ଗଣ ଦେଇଥାନ୍ତି ସୁରକ୍ଷା
ତାଙ୍କରି ପଦେ ଆମ ଏତିକି ଭିକ୍ଷା
ମହିମଣ୍ଡଳେ
ଶାନ୍ତି ବିରାଜୁ, ରଖ ସର୍ବେ କୁଶଳେ ।

•

"କେତୁଂ କୃଣ୍ୱନ୍ନକେତବେ ପେଶୋ ମର୍ଯ୍ୟା ଅପେଶସେ
ସମୁଷଭିରଜାୟଥାଃ ।"

ଋ.ସଂ ୧। ମ ୧। ସୂ ୬। ମନ୍ତ୍ର୩

ମଣିଷ ରାତିରେ ନିଦ୍ରାଭିଭୂତ ହୋଇ ଅଚେତନ ଅବସ୍ଥାରେ ରହେ । ସେ ସେହି ସମୟରେ ଚଳହୀନ ହୋଇଥାଏ । ଏହା ତାହାର ସାମୟିକ ମୃତ୍ୟୁ ବୋଲି କୁହାଯାଏ । ପ୍ରାତଃକାଳରେ ସେ ସଚେତନ ହୋଇ ପୁଣି କର୍ମ ଚଞ୍ଚଳ ହୁଏ । ଏହା ତାହାର ନବଜନ୍ମ ସହିତ ସମାନ । ଏହିପରି ମଣିଷ ଜୀବନରେ, ନିତିଦିନ ଜନ୍ମମୃତ୍ୟୁର ଲୀଳା ଚାଲିଥାଏ ।

# ନବଜୀବନ

ସୂର୍ଯ୍ୟ ଗଲେ ଅସ୍ତାଚଳ ଚୂଳେ
ରାତ୍ରି ପଦଧ୍ୱନି ଶୁଭେ, ଦୂର ଚକ୍ରବାଳେ,
ନଇଁ ଆସେ ସଂଧ୍ୟା ଯବନିକା
ବାହୁଡ଼ନ୍ତି ନୀଡ଼େ ପକ୍ଷୀ, ଗାଇ ଗାଇ
ବିଦାୟ ଗୀତିକା ।
ବିକଳ ମନ ତାଙ୍କର
ଶାବକର ଚଞ୍ଚୁ ଚୁମିବାକୁ,
ନୀଡ଼ କୋଳେ ରାତ୍ରି ଯାପିବାକୁ ।

ଆସନ୍ତି ବାହୁଡ଼ି ଗୋଠେ, ଗୋ ଗୋଠ ଆନନ୍ଦେ
ଚାହିଁଥାନ୍ତି ବତ୍ସତରୀ, ମା'କୁ ଆବେଗେ-
ସ୍ତନ୍ୟପାନ ପାଇଁ,
ଶାନ୍ତିରେ ମା'ର କୋଳେ ପଡ଼ିବେ ସେ ଶୋଇ ।

କର୍ମକ୍ଳାନ୍ତ ନରଗଣ ବାସଗୃହେ ଫେରି
ପାଆନ୍ତି ଅମାପ ଶାନ୍ତି ସୁଧା ପ୍ରାଣଭରି,
ସାଂଧ୍ୟ ମିଳନରେ ତୋଳି ମୁଗ୍ଧ କୋଳାହଳ
କରିଥାନ୍ତି ମୁଖରିତ ତାଙ୍କ ପ୍ରୀତି ପୁର ।

ଘନରାତ୍ରି ଆସେ ନଇଁ ନିରବତା ତୋଳି
ତିମିରିତ କୋଳେ ସର୍ବେ ଶୋଇଯିବେ ବୋଲି,
ଏ ଜଗତ ଚଳହୀନ ନିଦ୍ରାଅଭିଭୂତ,
ଘୋଟିଯାଏ ସାମୟିକ ମରଣର ସ୍ରୋତ ।
ଦିଗ୍‌ବଧୂ କୋଳ ତେଜି ପ୍ରଭାତ ଆସିଲେ
ପ୍ରାଚୀ ପଥେ ନବାରୁଣ ଆନନ୍ଦେ ହସିଲେ,
ବହିଯାଏ ପୁଣି ନବ ଜୀବନର ସ୍ରୋତ
ନବଜନ୍ମ ଲଭିଥାଏ ଏ' ବିଶ୍ୱ ଜଗତ ।

•

"ନମ ଇଦୁଗ୍ରଂ ନମ ଆ ବିବାସେ
ନମୋ ଦାଧାର ପୃଥିବୀମୁତ ଦ୍ୟାମ,
ନମୋ ଦେବେଭ୍ୟୋ ନମ ଈଶ ଏଷାଂ
କୃତଂ ଚିଦେନୋ ନମସା ବିବାସେ ।"

ଋ.ସଂ ୨।ମ୬।ସୂ୫୧।ମନ୍ତ୍ର୪୯୦୯

ବାସ୍ତବରେ 'ନମନ' (ପ୍ରଣାମ) ମହାନ ଅଟେ । ଏହା ପୃଥିବୀ ଓ ଦ୍ୟୁଲୋକର ଧାରଣକର୍ତ୍ତା । ଏହାର ବୈଶିଷ୍ଟ୍ୟ ନେଇ ଆମେ ଏହାକୁ ଆଚରଣରେ ପ୍ରକାଶ କରିଥାଉ । ନମନ ବା ଭକ୍ତିପୂତ ପ୍ରଣତି ସମସ୍ତଙ୍କୁ ପ୍ରଭାବିତ କରିଥାଏ । ଆମେ ଆମର ଅପକର୍ମର ପ୍ରଭାବ ନଷ୍ଟ କରିବାପାଇଁ, ଦେବଗଣଙ୍କୁ ପ୍ରଣାମ କରିଥାଉ ।

'ନମନ'ର ଆକ୍ଷରିକ ଅର୍ଥ ହେଉଛି ନଇଁବା । ନଇଁକରି ପ୍ରଣାମ କରିବା ହେଉଛି ବିଧି ସମ୍ମତ । ଯାହାଙ୍କୁ ନମନ କରାଯାଏ ସେ ନମସିତ ବା ପୂଜିତ ହୋଇଥାନ୍ତି । ସ୍ରଷ୍ଟାଙ୍କ ଅନୁଶାସନକୁ ସ୍ୱୀକାର କରିବାର ଏହା ଏକ ପ୍ରତୀକ । ଅନୁଶାସନସିଦ୍ଧ ଜୀବନ ହିଁ ଦ୍ୟାବାପୃଥିବୀର ଅସ୍ତିତ୍ୱକୁ ଉଜ୍ଜୀବିତ କରି ରଖିଛି । ଏହି ନମନ ରୂପି ଆଧ୍ୟାତ୍ମିକ ପ୍ରକ୍ରିୟା ଦ୍ୱାରା, ଦେବଗଣ ପ୍ରଭାବିତ ହୋଇ ବ୍ୟକ୍ତିକୁ ଶକ୍ତିଦାନ କରନ୍ତି ଫଳରେ ସେ ବିପଦରୁ ନିଜକୁ ରକ୍ଷା କରେ । 'ନମସ୍କାର' ଏକ ପ୍ରଭାବଶାଳୀ ଆଧ୍ୟାତ୍ମିକ ପ୍ରକ୍ରିୟା ।

# ନମନ

ଆଧ୍ୟାତ୍ମିକ ଆଚରଣ ସଂହିତାର ଧାରା
ନମସ୍ୟେ ନମନ ଅଟେ-
ସମାଜର ସୁସ୍ଥ ପରମ୍ପରା,
ଆଚରଣେ ହୋଇଲେ ପ୍ରକାଶ
ଜୀବନ ମହାନ୍ ହୁଏ, ହୋଇଥାଏ ଶକ୍ତିର ବିକାଶ ।
ନମନର ମହାଶକ୍ତି ମହାତେଜ ପୁଣ
ଦ୍ୟୁଲୋକ ଓ ଭୂଲୋକକୁ କରିଛି ଧାରଣ
ଅଟେ ମହନୀୟ
ବିଶ୍ୱ ବରଣୀୟ ।

ପ୍ରଭାବିତ କରେ ଏହା ସମସ୍ତଙ୍କ ମନ
ପ୍ରଣମୁଁ ଭକ୍ତିରେ ଆମେ ପୂଜ୍ୟ ଦେବଗଣ,
କୃତକର୍ମ ପରାଭବୁ କରିବାକୁ ରକ୍ଷା
ତାଙ୍କରି କରୁଣା କଣା କରିଥାଉ ଭିକ୍ଷା ।
ଅହଂକାର କରିବାକୁ ଦୂର,
ମାୟାମୁଗ୍ଧ କରିଛି ଯା' ଭୋଗର ସଂସାର ।

'ନମନ' କରି ହେ ଆମେ ହୋଇ ନମନୀୟ
ସ୍ରଷ୍ଟାନୁଶାସନ ମାନି ଲଭିବା ଅଭୟ,
ଅନୁଶାସନ ଶୃଙ୍ଖଳାସିଦ୍ଧ ଯା' ଜୀବନ
ସମୃଦ୍ଧି ପଥରେ ତା'ର ହୁଏ ଉତ୍ତରଣ ।

ଯେ ଅଟେ ନମନଶୀଳ ସମର୍ପିତ ଯା'ଜୀବନ ଧାରା
ଦେବ ଅନୁଗ୍ରହ ସାଥେ ଦିବ୍ୟଶକ୍ତି ମିଳିଥାଏ ପରା,
ନମନ ନମ୍ରତା ଆଉ ନମନୀୟ ଭାବ
ଜୀବନରେ ଭରିଥାଏ ସୁଗୁଣ ସୌରଭ ।
ଆଚରଣେ କରିବା ପ୍ରକାଶ,
ନମୋଃପଲବ୍ଧିରୁ ହେଉ ଆତ୍ମାର ବିକାଶ ।

•

• ଅଞ୍ଜନ୍ତି ତ୍ୱାମଧ୍ୱରେ ଦେବୟନ୍ତୋ
ବନସ୍ପତେ ମଧୁନା ଦୈବ୍ୟେନ,
ଯଦୂର୍ଦ୍ଧ୍ୱସ୍ତିଷ୍ଠା ଦ୍ରବିଣେହ ଧତ୍ତାଦ୍ୟଦ୍ୱା
କ୍ଷୟ ମାତୁରସ୍ୟା ଉପସ୍ଥେ ।

ମନ୍ତ୍ର ୨୫୨୯

ହେ ବନସ୍ପତି ଦେବ ! ଋତ୍ୱିକ୍‌ଗଣ ଯଜ୍ଞଧାରା ଅନୁସରଣ କରି ଯଜ୍ଞୀୟ ପ୍ରୟୋଗ ଦ୍ୱାରା, ହବ୍ୟାହୁତି ପ୍ରଦାନ ପୂର୍ବକ ମଧୁ ସିଞ୍ଚନ କରନ୍ତି । ଏବଂ ତୁମମାନଙ୍କୁ ପରିପୁଷ୍ଟ ଓ ବିକଶିତ କରିଥାନ୍ତି । ତୁମେ ପ୍ରକୃତି ମାତାର କୋଳରେ ପରିବର୍ଦ୍ଧିତ ହୋଇ ଆମମାନଙ୍କର (ଋଷି ସମାଜର) ତଥା ବିଶ୍ୱବାସୀଙ୍କର ମଙ୍ଗଳ ସାଧନ କର ।

• ଯୁବା ସୁବାସାଃ ପରିବୀତ ଅଗାତ୍ତ
ଉ ଶ୍ରେୟାନ୍‌ଭବତି ଯାୟମାନଃ
ତଂ ଧୀରାସଃ କବୟ ଉନ୍ନୟନ୍ତି
ସ୍ୱାଧ୍ୟୋ ମନସା ଦେବୟନ୍ତଃ

ମନ୍ତ୍ର ୨୫୩୨

ପ୍ରକୃତିର ଏହି ବିପୁଳ ବୃକ୍ଷରାଜି ପରିପୁଷ୍ଟ ହୋଇ ଶ୍ୟାମବସ୍ତ୍ର ପରିଧାନ ପୂର୍ବକ ଶୋଭା ମଣ୍ଡିତ ହୋଇଛନ୍ତି । ଦେବତ୍ୱ କାମନା କରୁଥିବା, ଶାସ୍ତ୍ରଜ୍ଞାନ ନିପୁଣ ପ୍ରକୃତି ପୂଜକ ପ୍ରକୃତିପ୍ରାଣ ମୁନିଋଷିଗ. ପ୍ରକୃତିର ଉନ୍ନତି ସାଧନ କରନ୍ତି । ଯଜ୍ଞ ପ୍ରଭାବରେ ବୃକ୍ଷଲତା ଗୁଳ୍ମ ଗୁଡ଼ିକର ପୋଷକ ଶକ୍ତିର ମାନୋନ୍ନୋତି ହୋଇଥାଏ ।

• ବନସ୍ପତେ ଶତବଲ୍‌ଶୋ ବି ରୋହ
ସହସ୍ରବଲ୍‌ଶା ବି ବୟଂ ରୁହେମ,
ଯଂ ତ୍ୱାମୟଂ ସ୍ୱଧିତିସ୍ତେଜମାନଃ
ପ୍ରଣିନାୟ ମହତେ ସୌଭଗାୟ ।।

ଋସଂଭା୨ । ମ୩ । ସୂ୯ । ମନ୍ତ୍ର୨୫୩୯

ହେ ବନସ୍ପତି ସମ୍ଭୂତ ସମିଧଗଣ ! ବୃକ୍ଷାଂଶ ଛେଦନ କରି, ଯଜ୍ଞଧାରା ସମ୍ପନ୍ନ ପାଇଁ, ତୁମକୁ ପ୍ରସ୍ତୁତ କରାଯାଇଛି । ତୁମେ ଅଗ୍ନିକୁ ଉଦ୍ଦୀପିତ କରି ଅସୁମାର ଶାଖାଯୁକ୍ତ କର ଏବଂ ବିଶ୍ୱବାସୀଙ୍କର ଶ୍ରୀ ଓ ସୁଖବର୍ଦ୍ଧକ ହୁଅ ।

## ବୃକ୍ଷପୂଜା

ଏ ଆର୍ଯ୍ୟ ଭାରତେ ଆମ ମୁନିଋଷିଗଣ
ବନସ୍ପତି ପୂଜନେ ନିପୁଣ,
ଦେବତା ସମ୍ମାନ ଲଭିଛନ୍ତି ବୃକ୍ଷରାଜି
ବନସ୍ପତି ଦେବ ରୂପେ ପୂଜିତ ସେ ଆଜି ।

ବୈଦିକ ଆଚାର୍ଯ୍ୟଗଣ ଉଦ୍ଭିଦ ବିଜ୍ଞାନୀ
ଯଜ୍ଞ ଧାରା ଉପଚାରେ-
ଉଦ୍ଭିଦର ମାନବୃଦ୍ଧି କରୁଥିଲେ ପୁଣି ।
ଦ୍ରବ୍ୟଗୁଣ ରସାଳ ସମ୍ଭାର,
ବୃଦ୍ଧି କରୁଥିଲେ କରି ମନ୍ତ୍ର ଉପଚାର ।
ହେଉଥିଲେ ସମ୍ବର୍ଦ୍ଧିତ ବନସ୍ପତି ତହିଁ
ସେମାନଙ୍କ ଦାନ ଥିଲା -
ମାନବର କଲ୍ୟାଣ ପାଇଁ ।

ବନସ୍ପତି ଅଂଶଅଟେ ପବିତ୍ର ସମିଧ
ଯଜ୍ଞ ପୀଠେ ଅଗ୍ନିଶିଖା କରେ ଉଦ୍ଦୀପିତ,
ସମିଧରେ ସୁପ୍ତଭାବେ ଥାଏ ଯେଉଁ ଅଗ୍ନି
ଶିଖାୟିତ ହୋଇଥାଏ ସଂଯୋଗେ ଯଜ୍ଞାଗ୍ନି ।
ଗତି ତା'ର ହୁଏ ଊର୍ଦ୍ଧ୍ୱାୟନ,
ଏହା ତାର ଭବ୍ୟ ଉତ୍ତରଣ ।

ହୋମ ଧୂମ ହୋଇଥାଏ ଶୁଭ୍ରଜ୍ୟୋତିର୍ମୟ
ପ୍ରତୀତ ହୁଅନ୍ତି, ଯଥା ହଂସ ପଂକ୍ତିଚୟ,
ଊର୍ଦ୍ଧ୍ୱଗତି ତୋଳି,
ଦ୍ୟାବାପୃଥିବୀକୁ ଭେଦି-
ଅନ୍ତରିକ୍ଷେ ଯାଏ ତା ସଂଚରି ।
ଦେବଶକ୍ତି ସନ୍ତୋଷ ବିଧାନେ
ସୂକ୍ଷ୍ମ ଉର୍ଜଃକଣ ରୂପେ ଭାସେ ମହାଶୂନ୍ୟେ

•

- ଜୀମୂତସ୍ୟେବ ଭବତି ପ୍ରତୀକଂ
ଯଦ୍‌ବର୍ମୀ ଯାତି ସମଦାମୁପସ୍ଥେ
ଅନାବିଦ୍ଧୟା ତନ୍ୱା ଜୟ ତ୍ୱଂ ସ ତ୍ୱା
ବର୍ମଣୋ ମହିମା ପିପର୍ତ୍ତୁ ।

ମନ୍ତ୍ର ୫୧୧୫

ଯେତେବେଳେ ସୈନ୍ୟଗଣ ରଣଭୂମିକୁ ଗମନ କରନ୍ତି, ସେମାନେ ଆତ୍ମରକ୍ଷାପାଇଁ କବଚ ପରିଧାନ କରିଥାନ୍ତି । କବଚହିଁ ସେମାନଙ୍କର ବିଜୟଲାଭର ପଥ ସୁଗମ କରେ । ଯୁଦ୍ଧପାଇଁ ବାଣ ଧାରଣକରି ଯାତ୍ରା କରିବାବେଳେ, ସୈନ୍ୟବଳ ମେଘପଟଳ ପରି ପ୍ରତୀୟମାନ ହୁଅନ୍ତି ।

- ରଥେ ତିଷ୍ଠନ୍ନୟତି ବାଜିନଃ ପୁରୋ
ଯତ୍ରଯତ୍ର କାମୟତେ ସୁଷାରଥିଃ
ଅଭୀଶୂନାଂ ମହିମାନଂ ପନାୟତ ମନଃ
ପଶ୍ଚାଦନୁ ଯଚ୍ଛନ୍ତି ରଶ୍ମୟଃ ।

ଋ.ସଂ ୨।ମ୬।ସୂ୭୫।ମନ୍ତ୍ର ୫୧୨୦

ଯେ ଉତ୍ତମ ସାରଥି, ସେ ରଥାରୋହଣ କରି, ଅଶ୍ୱକୁ ନିଜ ଇଚ୍ଛାନୁସାରେ ପରିଚାଳନା କରିଥାଏ । ଲଗାମ, ଅଶ୍ୱରଗତି ଶୃଙ୍ଖଳିତ କରିବା ସହିତ, ଅଶ୍ୱର ଅବାଧ ଆଚରଣକୁ ସଂଯତ କରିଥାଏ । ତେଣୁ ସେହି ଶୃଙ୍ଖଳା ଓ ସଂଯମତା ପ୍ରଦାନକାରୀ 'ଲଗାମ'କୁ ଆମେ ପ୍ରାଧାନ୍ୟଦେଇ ତା'ର ସ୍ତୁତିଗାନ କରୁ ।

ବି.ଦ୍ର : ବ୍ୟକ୍ତିଗତ ଜୀବନପାଇଁ ଏହା ଏକ ମୂଲ୍ୟବାନ ସନ୍ଦେଶ । ମଣିଷ ଲଗାମ ଛଡ଼ା ହେଲେ ତା' ମନ ଶଇତାନିର ଗନ୍ତାଘର ପାଲଟିଯାଏ । ମନୁଷ୍ୟର ଜୀବନ ଯୁଦ୍ଧରେ ଜୀବାତ୍ମା ସାରଥି, ମନ, ଅଶ୍ୱ ଏବଂ ରଥ ହେଉଛି ଶରୀର । ବିବେକ ତାହାର ଲଗାମ ପରି ।

# କବଚ

ମନୁଷ୍ୟ ଜୀବନ ମହାସମର ପ୍ରାନ୍ତର
ଜୀବାତ୍ମା ସାରଥି, ରଥ ଅଟେ ଏ ଶରୀର,
ମନ ଅଟେ ତାର ଅଶ୍ୱ ଚଞ୍ଚଳ ଅତ୍ୟନ୍ତ
ବିବେକ, ଲଗାମ ଟାଣି କରେ ଶୃଙ୍ଖଳିତ,
ଏ ସଂଗ୍ରାମେ ଜିତିବାକୁ ମହାଋଷିଗଣ
କରିଛନ୍ତି ନିରାପତ୍ତା ମନ୍ତ୍ରର ବିଧାନ ।

ବିଜୟ ଲାଭ କରିବା ସୂତ୍ରଅଛି ଭରି
ପାରିବ କିପରି ଦୁଷ୍ଟ ଶତ୍ରୁକୁ ସଂହାରି,
ପରାଜୟ ପରାଭବୁ ପାଇବାକୁ ରକ୍ଷା
କବଚ ବ୍ୟବସ୍ଥା ତାଙ୍କ ଦିଅଇ ସୁରକ୍ଷା ।

ଜୀବନ କ୍ଷେତ୍ରରୁ ପୁଣି ରଣକ୍ଷେତ୍ର ଯାଏ
ସଂଘର୍ଷ କରଇ ସେହୁ ଶତ୍ରୁର ବିଳୟେ,
ଧର୍ମ ଅଧର୍ମ ମଧ୍ୟରେ ହୁଅଇ ଲଢ଼େଇ
ପରାଜିତ ହୋଇଥାଏ ଅଧର୍ମ ବଢ଼େଇ ।

ପ୍ରୟୋଗ କରେ ସେ ଆଣି ରଣେ ଧନୁର୍ବାଣ
ଆତ୍ମରକ୍ଷା ପାଇଁ କରେ କବଚ ଧାରଣ,
ଗୁରୁ ଜନ, ଶାସ୍ତ୍ର ଅନୁଶାସନର ନୀତି
ଜୀବନ ସମରେ ତୋଳେ ବିଜୟର ଛତି ।

'ବେଦମନ୍ତ୍ର' ଅଟେ ଆମ କବଚ ସ୍ୱରୂପ
ଦେବ ଦିବ୍ୟଗୁଣ ନେଇ ଲଭୁ 'ବାଣ' ରୂପ,
ଜୀବନ ସଂଗ୍ରାମେ ନିଶ୍ଚେ ହୋଇବା ବିଜୟୀ
ମାନବ ଜୀବନ ମର୍ତ୍ତ୍ୟେ ସାର୍ଥକତା ପାଇଁ ।
ବିବେକ ଲଗାମ,
ଶୃଙ୍ଖଳିତ କରୁ ଆମ ମନ ଆଚରଣ ।

•

"ନହି ଗ୍ରଭାୟାରଣଃ ସୁଶେବୋଽନ୍ୟୋଦର୍ଯ୍ୟୋ
ମନସା ମନ୍ତବା ଉ
ଅଧା ଚିଦୋକଃ ପୁନରିତ୍ସ ଏତ୍ୟା ନୋ
ବାଜ୍ୟ ଭୀଷାଳେତୁ ।"

ଋ.ସଂ ୩ । ମ ୭ । ସୂ ୪ ମନ୍ତ୍ର ୫ । ୧ । ୮ । ୭

ହେ ଦେବ ! ପୋଷ୍ୟପୁତ୍ର ହୁଏତ ପୋଷ୍ୟ ଗ୍ରହଣ କରିଥିବା ଦମ୍ପତିଙ୍କର ସେବାକାରୀ ହୋଇପାରେ କିନ୍ତୁ ପିତାଙ୍କର କିଛି ଋଣଥିଲେ, ତାହା ପରିଶୋଧ କରିବା ପାଇଁ ଇଚ୍ଛାପ୍ରକାଶ କରେ ନାହିଁ । ଯେଉଁ ମାତା ପିତାଙ୍କ ଠାରୁ ସେ ପୋଷ୍ୟସନ୍ତାନ ହୋଇ ଆସିଛି ସେମାନଙ୍କ ପ୍ରତି ତା'ର ଆକର୍ଷଣୀ ଓ ଆସକ୍ତି ଅଧିକ । ପୋଷ୍ୟପୁତ୍ର ଆତ୍ମସନ୍ତୋଷ ଦେଇପାରେ ନାହିଁ, ତେଣୁ ହେ ପ୍ରଭୁ ! ଆମକୁ ଶତ୍ରୁ ଦମନକାରୀ ସନ୍ତାନ ଦାନ କରନ୍ତୁ ।

# ପୋଷ୍ୟପୁତ୍ର

ପୁତ୍ର ପୋଷ୍ୟପୁତ୍ର ବେନି ନୁହନ୍ତି ସମାନ
ପୋଷ୍ୟ ପୁତ୍ର ଦେଇପାରେ ପିତାଙ୍କୁ ସମ୍ମାନ,
ସେବା ତାଙ୍କ କରିପାରେ ଅବା,
ସାମାଜିକ କର୍ତ୍ତବ୍ୟକୁସିଏ ତୁଲାଏବା,
ଆତ୍ମାର ଆବେଗ-
ନଥାଏ ତହିଁରେ କେବେ ଆନ୍ତରିକ ଭାବ ।
କରେ କର୍ମ କର୍ତ୍ତବ୍ୟବୋଧରେ
ନିମଜ୍ଜିତ ଥାଏ ମନ ଧ୍ୟାନ ସ୍ୱ ପିତାରେ ।

ଯେତେ ଯାହା କଲେ ମଧ୍ୟ-
ଏ' ପିତାର ଋଣବୋଝ ସିଏ
ଗ୍ରହଣ କରିବା ପାଇଁ ମନ ତା' ନଥାଏ ।
ସନ୍ତାନହୀନ ଦମ୍ପତି ଦୁଃଖେ ହୋଇଘାରି
ସନ୍ତୋଷ ପାଆନ୍ତିନାହିଁ ପୋଷ୍ୟପୁତ୍ର କରି,
ନିଃସନ୍ତାନ ଦୋଷ କାଟିବାକୁ
ଗ୍ରହଣ କରନ୍ତି ସିନା ପୋଷ୍ୟପୁତ୍ରଟିକୁ,
ମନେ ଭରି ଦ୍ୱନ୍ଦ୍ୱ-
ଆଶା ଆଉ ହତାଶାର ଛନ୍ଦ ।

ମାଗୁଛୁ କୋଳକୁ ପ୍ରଭୁ, ସନ୍ତାନଟିଏ
ପୁତ୍ରଅବା କନ୍ୟା ହେଉ ରକ୍ତପଦ୍ମ ସିଏ,
ଜୀବନ ସାରା ପ୍ରତୀକ୍ଷା ପ୍ରାଣପଦ୍ମ ପାଇଁ
ହୃଦୟର ସରୋବରେ ଫୁଟାଅ ହେ ସାଇଁ ।
ଏତିକି ମିନତି,
ମାଗୁ ପ୍ରଭୁ ସଭକ୍ତିରେ ସନ୍ତାନ ସନ୍ତତି ।
ସେ ଅରିଦମନ
କରିବେ ନିଶ୍ଚୟ ମୋର ସନ୍ତାନ ଗଣ ।

•

"ନ୍ୟକ୍ରତୂନ୍ ଗ୍ରଥିନୋ ମୃଧ୍ରବାଚଃ
ପଣୀଁରଶ୍ରଦ୍ଧାଁ ଅବୃଧାଁ ଅୟଜ୍ଞାନ
ପ୍ରପ୍ର ତାନ୍ଦସ୍ୟୂଁରଗ୍ନିବିର୍ବାୟ
ପୂର୍ବଶ୍ଚକାରାପରାଁ ଅୟଜ୍ୟୂନ୍ ।"

ଋ.ସଂ୭।ମ୭।ସୂ୭।ମନ୍ତ୍ର ୫୨୦୧

ଏ ସଂସାରରେ ବହୁ ଅକର୍ମା, ବହୁଭାଷୀ, ପ୍ରଗଲ୍‌ଭ, ପଣି ଆଦାୟକାରୀ, ଶ୍ରଦ୍ଧାହୀନ ଓ ଯଜ୍ଞକର୍ମ କରୁନଥିବା ପତିତମାନଙ୍କୁ ଅଗ୍ନିଦେବ ନିଜର ତେଜ ଶକ୍ତିରୁ ବଞ୍ଚିତ କରି ସେମାନଙ୍କୁ ନିଷ୍ପ୍ରଭ କରିଦିଅନ୍ତି । ସେମାନେ ଜୀବନରେ ଉନ୍ନତି କରିପାରନ୍ତି ନାହିଁ । ଅଗ୍ନିଦେବଙ୍କର ଏହା ଏକପ୍ରଚ୍ଛନ୍ନ ପ୍ରକ୍ରିୟା ।

# ପତିତ

ସମାଜରେ ଭରିଛନ୍ତି ଅକର୍ମା ଅନେକ
ପରାଙ୍ଗ ପୁଷ୍ଟ ସେ, ନାହିଁ ବିଚାର ବିବେକ,
କର୍ମମୟ ଜୀବନରେ ହୋଇ କର୍ମକୁଣ୍ଠ
କାଟନ୍ତି ଜୀବନ ତାଙ୍କ, ସେ ଶ୍ରମ ବିମୁଖ ।

ଏଠାରେ ଅଛନ୍ତି କେତେ ବହୁଭାଷୀ ଜନ
କଥାର କୁହୁକେ ତୋଷୁଥାନ୍ତି ଅନ୍ୟ ମନ,
ଦିବାରାତ୍ର ଘଣ୍ଟପରି ବାଜୁଥାଏ ପାଟି
ସମୟ କରନ୍ତି ନଷ୍ଟ, କର୍ମରେ ନଖଟି ।

ସେ ବାଚାଳ ମଧ୍ୟେ ଥାନ୍ତି ବହୁ କଟୁଭାଷୀ
ବଚନ ବେଢାରେ ତାଙ୍କ ବିଷଥାଏ ମିଶି,
ନ ମିଳେ ତୁଣ୍ଡରୁ ପଦେ ମଧୁର ବଚନ
କର୍କଶ କଥାରେ କ୍ଷତ କରିଥାନ୍ତି ମନ-
ହୃଦୟ, ଅନ୍ତର,
ବ୍ୟବହାର ଅଟେ ତାଙ୍କ ତୀବ୍ର ହଳାହଳ ।
ଅନେକ ଅଛନ୍ତି ସଦା ପଣି ଆଦାୟରେ
ଜୀବନ ବିତାଇଥାନ୍ତି କର୍ମହୀନତାରେ,
କଷ୍ଟ ସହି ଉପାର୍ଜନ କରନ୍ତିନି ସିଏ
ଅନ୍ୟର ସମ୍ପଦଗ୍ରାସି ଚଳନ୍ତି ନିର୍ଭୟେ
ନାହିଁ ତାଙ୍କ ମାନସନମାନ,
ପରଧନ କରିଥାନ୍ତି ସେ ଅପହରଣ ।
ଏ ସଂସାରେ ଭରିଛନ୍ତି ଶ୍ରଦ୍ଧାଶୂନ୍ୟ ବ୍ୟକ୍ତି
ଜୀବନ ବିତାଇଥାନ୍ତି ଘୃଣା ବାଣ୍ଟି ବାଣ୍ଟି,
ଘୃଣା ବିଷଚକ୍ରେ ସଦା ହେଉଥାନ୍ତି ଘାରି
ବ୍ୟାକୁଳିତ ପାଇବାକୁ ଟୋପେ ଶ୍ରଦ୍ଧାବାରି
ମିଳେନି ଜୀବନେ,
ଚାଲିଯାନ୍ତି ଏ ସଂସାରୁ ଘୋର ଅଭିମାନେ ।
ଯଜ୍ଞହୀନ ଯା' ଜୀବନ, ପତିତ ସେ ନର
ନିସ୍ତାର କରହେ ତାଙ୍କୁ ପ୍ରଭୁ ଜ୍ୟୋତିଶ୍ୱର ।

•

"ତାମଗ୍ନେ ଅସ୍ମେ ଇଷମେରୟସ୍ୱ
ବୈଶ୍ୱାନର ଦ୍ୟୁମତୀଂ ଜାତବେଦଃ
ଯୟା ରାଧଃ ପିନ୍ୱସି ବିଶ୍ୱବାର
ପୃଥୁ ଶ୍ରବୋ ଦାଶୁଷେ ମର୍ତ୍ତ୍ୟାୟ ।"

ଋ.ସଂ.୩ । ମ୭ । ସୂ୫ । ମନ୍ତ୍ର୫ ୧ ୯ ୭

ହେ ଅଗ୍ନିଦେବ ! ଆପଣ ସର୍ବପୂଜ୍ୟ ଅଟନ୍ତି । ଆପଣ ମାନବଗଣର ଚିର ବରଣେୟ । ସେମାନଙ୍କୁ ଆପଣ ଯଶଃ ଦାନ କରିଥାନ୍ତି । ସେମାନଙ୍କର ଅନ୍ନ ଓ ଧନବୃଦ୍ଧି ନିମିତ୍ତ ବିଦ୍ୟୁତ୍ ଯୁକ୍ତ ବୃଷ୍ଟି ଦାନ କରନ୍ତୁ । ଏହା ମୃତ୍ତିକାର ଉତ୍ପାଦନ ଶକ୍ତି ବଢ଼ାଇବା ସହିତ ପ୍ରକୃତିକୁ ଶ୍ରୀ ମଣ୍ଡିତ କରିବ ।

# ବିଦ୍ୟୁତ୍

ମେଘମାସ ଆସିଲେ ମହିରେ
ବିଜୁଳି ଝଲସି ଉଠେ ନୀଳ ଆକାଶରେ,
କଳାମେଘ ବୁକୁଚିରି ଘନଘନ ଝଟକେ ବିଜୁଳି
ତା' ସାଥେ ପୃଥିବୀ ବୁକେ -
ଝରିଯାଏ ଧାରଧାର ବାରି ।

ଗୁରୁ ଗୁରୁ ଗର୍ଜନରେ
କମ୍ପି ଉଠେ ଆକାଶ ମେଦିନୀ,
ବଜ୍ରବାଣେ ଫାଟିପଡ଼େ -
ଦିଗବ୍ୟାପ୍ତ ଘନ ମେଘ ପୁଣି,
ମେଘମାଳା ଖଣ୍ଡ ଖଣ୍ଡ ହୋଇ
ପବନରେ ଭାସୁଥାନ୍ତି ବର୍ଷାବାରି ବାହି ।

ଏ ପୃଥିବୀ, ଅନନ୍ତ ପ୍ରକୃତି
ଆନନ୍ଦରେ ଉଲ୍ଲସିତ ନିତି,
ମେଘାକାଶେ ପକ୍ଷୀଗଣ ପବନ ପହଁରା
ମୟୂର ନର୍ତ୍ତନ ବନେ ଦୃଶ୍ୟ ଆତ୍ମହରା
ଉଲ୍ଲାସ ଉଚ୍ଛୁଳା ପ୍ରତୀକ୍ଷିତି ନରଗଣ,
ନବମେଘେ ଚୋଳିଥାନ୍ତି ପ୍ରାଣାଭିନନ୍ଦନ ।
ଅନ୍ନଥାଳି ଧରି,
ସତେ ଅବା ଆସେ ମେଘ
ବାରିଧାରା ଢାଳି ।

ବିଦ୍ୟୁନ୍ମୟୀ ବର୍ଷା ପାଇଁ ଏ ସୃଷ୍ଟି ପାଗଳ
ବିଦ୍ୟୁତ୍ ସର୍ଜଇ ଉର୍ବରତା ଅନୁକଣା -
ପୃଥିବୀକୁ ଯା' କରେ ଉର୍ବର ।
ବାଷ୍ପୀୟ ବଳୟ,
ଏହା ଅଟେ ସର୍ଜନାମୟ ।

ବିଜୁଳିର ମହାଦାନ ବିଶ୍ୱଜଗତକୁ
ଆହ୍ୱାନ କରନ୍ତି ଯଜ୍ଞେ ଋଷିଗଣ ତାକୁ,
ବାଷ୍ପ ମଧ୍ୟେ ରଚିବାକୁ ଉର୍ବର କଣିକା
ପ୍ରକୃତିରେ ଭରିବାକୁ ଶକ୍ତି ଉତ୍ପାଦିକା ।
ଋଷିମତ, ବିଜ୍ଞାନର ମତ,
ଏହା ଅଟେ ଆଧ୍ୟାତ୍ମିକ ବୈଜ୍ଞାନିକ ସତ୍ୟ
ହେ ବିଦ୍ୟୁତ୍ ଘେନ ନମସ୍କାର
ଏ ବିଶ୍ୱବାସୀଙ୍କୁ ମିଳୁ ବିଦ୍ୟୁତ୍ ସମ୍ଭାର ।

ବି.ଦ୍ର. :ବିଦ୍ୟୁତ୍‌ର ଝଲକ, ନାଇଟ୍ରୋଜେନ ଓ ଅନ୍ୟାନ୍ୟ ଅନୁକୂଳ ବାଷ୍ପ ମଧ୍ୟରେ ଉର୍ବର କଣିକାର 'ଅଣୁ' ସୃଷ୍ଟି କରିଥାଏ । ଏହି ଦୃଷ୍ଟିରୁ ବୈଦିକ ଋଷିଗଣ ବିଦ୍ୟୁତ୍‌ମୟୀ ବର୍ଷା ଲାଭ ପାଇଁ ପ୍ରାର୍ଥନା କରନ୍ତି ।

ଆଚାର୍ଯ୍ୟ ଶ୍ରୀରାମ ଶର୍ମା
ଯୁଗଶକ୍ତି ଗାୟତ୍ରୀ

•

ଆଧ୍ରେଣ ଚିଉଦ୍ୱେକଂ ଚକାର ସିଂହ୍ୟଂ ଚିତ୍ପେତ୍ୱେନା ଜଘାନ
ଅବ ସ୍ରକ୍ତୀର୍ବେଶ୍ୟାବୃଣ୍ଣଦିନ୍ଦ୍ରଃ ପ୍ରାୟଚ୍ଛଦ୍ୱିଶା ଭୋଜନା ସୁଦାସେ ।

ଋ,ସଂ,୩ । ମ୭ । ସୂ୧୮ । ମନ୍ତ୍ର ୫୨୯୫

'ସୁଦାସ' ରାଜ ଜଣେ ମହାନ ସମ୍ରାଟ । ସେ ଏକାଧାରରେ ଦାନୀ, ମାନୀ ଏବଂ ଯଶସ୍ୱୀ ଅଟନ୍ତି । ଇନ୍ଦ୍ରଦେବ ତାଙ୍କ ମାଧ୍ୟମରେ ଅସୁମାର ଜନହିତକାରୀ କର୍ମ ସମ୍ପାଦନ କରିଥିଲେ । ତାଙ୍କର ଅସୁମାର କଲ୍ୟାଣମୟ କାର୍ଯ୍ୟକୁ ଦେଖିଲେ ମନେହୁଏ, ସତେ ଯେପରି ଦରିଦ୍ର ମହାଦାନ କରିଛି । ବା ସ୍ୱଳ୍ପ ଶକ୍ତି ବିଶିଷ୍ଟ ଛେଳି ପଶୁରାଜ ସିଂହକୁ ହତ୍ୟା କରିଛି କିମ୍ବା ଛାର ଛୁଞ୍ଚି ଦ୍ୱାରା ଦାରୁ ଛେଦନ କରାଯାଇ ପାରିଛି । ଇନ୍ଦ୍ରଦେବ ତାଙ୍କରି, ମହାନ୍ କାର୍ଯ୍ୟ ଧାରାରେ ସନ୍ତୁଷ୍ଟ ହୋଇ ତାଙ୍କୁ ବିଭୂତି ପ୍ରଦାନ କଲେ ।

# ମହାଦାନୀ

ପ୍ରାଚୀନ କାଳର ରାଜା ଅଟନ୍ତି 'ସୁଦାସ'
ଜ୍ଞାନୀ, ମାନୀ, ଦାନୀ ରୂପେ ଥିଲା ତାଙ୍କ ଯଶ,
ସେଥିଲେ ସଂସ୍କାରଶୀଳ ଧନରେ କୁବେର
ପରମ ଭକ୍ତ ଅଟନ୍ତି ଇନ୍ଦ୍ରଦେବଙ୍କର ।

ଭଦ୍ରମୁଖ, ତପୋନିଷ୍ଠ ଶାସନେ କୁଶଳୀ
ଜିତେନ୍ଦ୍ରିୟ ଚଳୁଥିଲେ ମୁନିଋଷି ଭଳି,
ଆଧ୍ୟାତ୍ମିକ ମାର୍ଗେ ସିଏ କରୁଥିଲେ ଗତି
ବିଶ୍ୱର ମଙ୍ଗଳ ପାଇଁ ଥିଲେ ସଦା ବ୍ରତୀ ।

ବିପୁଳ ବିକ୍ରମେ ସିଏ ଅରିଙ୍କୁ ଦମନ
କରୁଥିଲେ ଆସ୍ଥାଘାତେ ଅସୁର ନିଧନ,
ରହୁଥିଲେ ନିରାପଦେ ମୁନି ଋଷିମାନେ
କରୁଥିଲେ ତପ, ଧ୍ୟାନ, ଶାନ୍ତ ବନାଶ୍ରମେ ।

'ସୁଦାସ'ଙ୍କ ପୂଜ୍ୟଦେବ 'ଇନ୍ଦ୍ର' ବଜ୍ରଧାରୀ -
ମରୁଦ୍‌ଗଣଙ୍କ ମଧ୍ୟେ ଦେଲେ ଶକ୍ତି ଭରି,
ସାମର୍ଥ୍ୟ ଦେବାକୁ ପୁଣ୍ୟଶୀଳ ରାଜାଗଣେ
ଲଭିବେ ବିଜୟ ଶତ ଶତ୍ରୁର ନିଧନେ ।

ମହାନ ଜ୍ଞାନ ପ୍ରତୀକ ସୁଦାସ ରାଜନ
'ଜୀବଚେତନା' ପ୍ରତୀକ ଇନ୍ଦ୍ରଦେବ ପୁଣ,
ମଣିଷ ମଧ୍ୟେ ଯେ ଅଛି ବିକାର ସମସ୍ତ
ଶୁଭଜ୍ଞାନ ଆଚରଣେ ହୁଏ ଦୂରୀଭୂତ ।
'ସୁଦାସ'....ସୁଗୁଣ,
ମାନବକୁ କରଇ ମହାନ୍ ।

•

• ଯସ୍ୟ ଶର୍ମନ୍ନୁପ ବିଶ୍ୱେ ଜନାସ ଏବୈସ୍ତସ୍ଥୁଃ ସୁମତିଂଭିକ୍ଷମାଣାଃ
ବୈଶ୍ୱାନରୋ ବରମା ରୋଦସ୍ୟୋରାଗ୍ନିଃ ସସାଦ ପିତ୍ରୋରୁପସ୍ଥଭ୍ ।

ଋ,ସଂ,୩ । ମ୭ । ସୂ୬ । ମନ୍ତ୍ର ୫୨୦୪

ଏହି ମନ୍ତ୍ରଟି ଏକ ପ୍ରତୀକାତ୍ମକ ଅର୍ଥ ବହନ କରିଛି । ଏହାର ଅର୍ଥ, ବୈଶ୍ୱାନର ଅଗ୍ନିଙ୍କ ନିକଟରେ ହବି ଦାତା ଶୁଭବୁଦ୍ଧି କାମନା କରି, ସତ୍‌କର୍ମ ସହିତ ଉପସ୍ଥିତ ହୁଅନ୍ତି । ଏବଂ ବିଶ୍ୱର ମଙ୍ଗଳକାରୀ ଅଗ୍ନିଦେବ, ଦ୍ୟାବାପୃଥିବୀରେ ପ୍ରକଟିତ ହୁଅନ୍ତି ।

ଏଠାରେ ଦ୍ୟାବାପୃଥିବୀର ଅର୍ଥ, ଆକାଶଠାରୁ ପୃଥିବୀ ପର୍ଯ୍ୟନ୍ତ ନିହିତ ପଞ୍ଚଭୂତ (ଆକାଶ, ବାୟୁ, ଅଗ୍ନି, ଜଳ, ପୃଥିବୀ)କୁ ଲକ୍ଷ୍ୟ କରାଯାଇଥିବା ଅନୁମିତ ହୁଏ ।

• ବିଦୁଃ ପୃଥିବ୍ୟା ଦିବୋ ଜନିତ୍ରଂ-
ଶୃଣ୍ୱନ୍ତ୍ୟାପୋ ଅଧ କ୍ଷରନ୍ତୀଃ ।

ଋ,ସଂ,୩ । ମ୭ । ସୂ୩୪ । ମନ୍ତ୍ର ୫୪୪୧

ଏହାର ଅର୍ଥ, ଆକାଶରୁ କ୍ଷରଣଶୀଳ ଜଳ ବା ଜୀବନପ୍ରବାହ, ଦ୍ୟାବା-ପୃଥିବୀ ଉତ୍ପତ୍ତିର ଜ୍ଞାତା ଅଟେ । ପ୍ରକଟିତ ଅବସ୍ଥାରେ ସେମାନେ ମଧ୍ୟ ଏହି ଜୀବନ ପ୍ରବାହକୁ ପ୍ରତ୍ୟକ୍ଷ କରନ୍ତି । ଅନ୍ୟ ଅର୍ଥରେ ଏହି କ୍ଷରଣଶୀଳ ପ୍ରବାହ, 'ଚେତନ' ପ୍ରବାହ ଅଟେ । ଋଷିମାନେ ପ୍ରକୃତିର ସେହି ଚେତନ ପ୍ରବାହକୁ ନିଜର ମନ୍ତ୍ର ସ୍ତୁତି ଦ୍ୱାରା ପ୍ରଭାବିତ କରିଥାନ୍ତି ।

# ଚେତନ ପ୍ରବାହ

ସର୍ବତ୍ର ସଂଚରିତ 'ଆତ୍ମଚେତନା'
ଅଗ୍ନିର ଅଂଶରୂପେ ଅଟେ ତା'ଗଣା,
କାୟା ମଧ୍ୟରେ ପଶି ତା' ଏକ ଅଂଶ
'ଚେତନ ଆତ୍ମା' ରୂପେ ହୁଏ ପ୍ରକାଶ ।

ଉଷାକାଳେ ଚଞ୍ଚଳ ପ୍ରାଣ ପ୍ରବାହ
ଚେତନାଗ୍ନିର ଉର୍ଦ୍ଧ୍ୱ ଧାରା ସମୂହ,
ଋଷଙ୍କ ଦିବ୍ୟ ମନ୍ତ୍ର ସ୍ତୁତି ପରଶେ
ହୁଏ ତା' ପ୍ରଭାବିତ ଅଧ୍ୟାତ୍ମ ରସେ ।
କ୍ଷରିତ ଦ୍ୟୁଲୋକରୁ ଜୀବନ ଧାରା
ଅଟଇ ଚେତନାର ପ୍ରବାହ ପରା,
ଦ୍ୟାବାପୃଥିବୀ ଅଟେ ଏ ପଞ୍ଚଭୂତ
ଚେତନ ଶକ୍ତି ଉତ୍ସ ଅଟେ ଏ ନିତ୍ୟ ।

ଆକାଶ, ବାୟୁ, ଅଗ୍ନି, ପୃଥିବୀ, ଜଳ
ଚେତନ ପ୍ରବାହର ଅଂଶ ସକଳ,
ଜୀବନ ପ୍ରବାହ ଯେ ଏହାର ଜ୍ଞାତା
ଜାଣେ ଦ୍ୟାବାପୃଥିବୀ ଉତ୍ପତ୍ତି କଥା ।

ହୋଇଲେ ପ୍ରକଟିତ ସେମାନେ ଯେବେ
ପ୍ରତ୍ୟକ୍ଷ କରିଥିଲେ ତାହାକୁ ତେବେ,
କ୍ଷରଣଶୀଳ ଏଇ ପ୍ରବାହ ଧାରା
ଚେତନ ପ୍ରବାହର ସ୍ୱରୂପ ପରା ।
ଜଗତ ଜୀବନର ଆଦ୍ୟ 'ଓଁ'କାର
ସର୍ଜନା ସମୃଦ୍ଧିର ଦିବ୍ୟ ଭଣ୍ଡାର ।
    ଚେତନ, ଧାରା
ଆବୋରି ରହିଅଛି ଏ' ବିଶ୍ୱପରା ।

•

"ଯେଷାମିଳା ଘୃତହସ୍ତା ଦୁରୋଣ
ଆଁ ଅପି ପ୍ରାତା ନିଷୀଦତି
ତାଁସ୍ତ୍ରାୟସ୍ୱ ସହସ୍ୟ ଦ୍ରୁହୋ ନିଦୋ
ଯଚ୍ଛା ନଃ ଶର୍ମ ଦୀର୍ଘଶ୍ରୁତ୍ ।"

ଋ,ସଂ,୩ । ମ୭ । ସୂ୧୬ । ମନ୍ତ୍ର ୫୨୬୭

ଯେଉଁ ଗୃହରେ, ଯଜ୍ଞ କର୍ମ ସମ୍ପାଦନ ପାଇଁ, ଘୃତପାତ୍ର ଓ ହବିଷ୍ୟାନ୍ନ ନେଇ, ସୌଭାଗ୍ୟବତୀ, ଦେବୀସ୍ୱରୂପା, ନାରୀଗଣ ବାସ କରନ୍ତି, ହେ ସର୍ବରକ୍ଷକ ଅଗ୍ନିଦେବ, ସେହି ଗୃହ ଓ ଗୃହସ୍ଥ ରମଣିମାନଙ୍କୁ ଆପଣ ଅଭୟ ଦାନକରି ରକ୍ଷାକରନ୍ତୁ । ଶତ୍ରୁଗଣ ତାଙ୍କର କୌଣସି କ୍ଷତି କରନ୍ତୁ ନାହିଁ । ନାରୀ ନିନ୍ଦୁକମାନଙ୍କ ବିଷ ଦୃଷ୍ଟିରୁ ସେମାନେ ରକ୍ଷା ପାଆନ୍ତୁ ।

# ନାରୀ ସୁରକ୍ଷା

ଯେ ଗୃହେ କରନ୍ତି ବାସ
ଦେବୀରୂପା ନାରୀ
ଶୁଦ୍ଧ ପୂତ ମନ ନେଇ ଗୃହଧର୍ମ
ଥାଆନ୍ତି ଆଚରି ।
ଅନାବିଳ ହୃଦୟରେ ସେବା ଯଜ୍ଞେ
ଦିଅନ୍ତି ଆହୁତି
ଗାର୍ହପତ୍ୟ ଅଗ୍ନିଥାପି ଗୃହସ୍ଥର
ଧର୍ମ ଆଚରନ୍ତି ।
ଗୃହେ ନିତି ଯଜ୍ଞ ପାଇଁ ହବିପାତ୍ର
ଧରିଥାନ୍ତି ହସ୍ତେ
ପ୍ରସ୍ତୁତ କରନ୍ତି ସ୍ନେହେ ହବିଷ୍ୟାନ୍ନ
ଯଜ୍ଞ ଭାଗ ମତେ ।
ହେ ଯଜ୍ଞ ପୁରୁଷ ଦିଅ ଅଭୟ ତାହାଙ୍କୁ
କର ହେ ଅନୁପ୍ରେରିତ, ନୀତି ଧର୍ମ ନିତି ପାଳିବାକୁ ।

ପରିବାର ଶାନ୍ତି ପାଇଁ ହୃଦେ ତାଙ୍କ
ଭର ପ୍ରଶାନ୍ତିମା
ଉଦିତ ହେଉ ଅନ୍ତରେ ସୁଧା ସ୍ନିଗ୍ଧ
ହୃଦୟ ଚନ୍ଦ୍ରମା ।
ପାପୀ ଜନ ପାପ ଦୃଷ୍ଟି ନକରୁ ପରଣ
ନିନ୍ଦା, ଅପବାଦ, ଈର୍ଷା, ସେ ଶୁଦ୍ଧତା ନକରୁ କଳୁଷ ।

ହେ ସର୍ବ ରକ୍ଷକ ତାଙ୍କୁ ରକ୍ଷାକର
ଶତ୍ରୁ କବଳରୁ
ବିଶ୍ୱର କଲ୍ୟାଣ ପାଇଁ ନାରୀ ହେଉ
ଶାନ୍ତି ଦାତ୍ରୀ ଛାୟା ମୟୀ ତରୁ ।
ପରିବାର ଧର୍ମ ହେଉ ରକ୍ଷା -
ହେ ଦେବତା ତୁମ ପଦେ
ଏଇ ଆମ ଭିକ୍ଷା ।

•

- ସଂବତ୍ସରଂ ଶଶୟାନା ବ୍ରାହ୍ମଣା ବ୍ରତଚାରିଣଃ
  ବାଚଂ ପର୍ଜନ୍ୟଜିନ୍ୱିତାଂ ପ୍ର ମଣ୍ଡୂକା ଅବାଦିଷୁଃ ।

ଋ,ସଂ,୩ । ମ୭ । ସୂ୧୦୩ । ମନ୍ତ୍ର ୫୯୪୦

ବ୍ରତଚାରୀ ବ୍ରାହ୍ମଣ ଓ ତପସ୍ୱୀଙ୍କ ପରି ମଣ୍ଡୂକଗଣ ବର୍ଷସାରା ଗୁପ୍ତ ଅବସ୍ଥାରେ ରହନ୍ତି । ବର୍ଷାର ଆଗମନ ହେଲେ, ସେମାନେ ଆନନ୍ଦିତ ହୋଇ, ପର୍ଜନ୍ୟଙ୍କୁ ପ୍ରୀତି ଉଲ୍ଲସିତ ତଥା ସମ୍ଭାଷଣ ଜଣାଇବା ପାଇଁ ବର୍ଷାସଙ୍ଗୀତ ଗାନ କରନ୍ତି । ଏହାର ଅର୍ଥ ତପଃଚାରୀ ତପସ୍ୱୀ ଓ ଋଷିଗଣ, ପ୍ରଭାବଶାଳୀ ମନ୍ତ୍ରଗାନ ଦ୍ୱାରା ପ୍ରକୃତିକୁ ପ୍ରଭାବିତ କରି ଅଭିଳଷିତ ଲକ୍ଷ୍ୟ ସାଧନ କରିଥାନ୍ତି । ଏହିପରି ମଜ୍ଜନଶୀଳ ମଣ୍ଡୂକ ତା'ର ଗାନ ପ୍ରଭାବରେ ବର୍ଷଣଶୀଳ ମେଘକୁ ପ୍ରଭାବିତ କରିଥାଏ ।

- "ଅନ୍ୟୋ ଅନ୍ୟମନୁ ଗୃଭ୍ଣାତ୍ୟେନୋରପାଂ ପ୍ରସର୍ଗେ ଯଦମନ୍ଦିଷାତାମ୍
  ମଣ୍ଡୂକୋ ଯଦଭିବୃଷ୍ଟଃ କନିଷ୍କନ୍‌ପୃଶ୍ନିଃ ସମ୍ପୃଙ୍‌କ୍ତେ ହରିତେନ ବାଚମ୍ ।

ଋ,ସଂ,୩ । ମ୭ । ସୂ୧୦୪ । ମନ୍ତ୍ର ୫୯୪୩

ବର୍ଷା ହେବାପରେ ଗାତ ଭିତରେ ଲୁଚି ରହିଥିବା ବେଙ୍ଗମାନେ ଆନନ୍ଦରେ ଚିତ୍କାର କରି, ବାହାରେ ଆସି ଡ଼ିଅନ୍ତି । ଏହି ଆନନ୍ଦ ନୃତ୍ୟଗାନ ସେମାନଙ୍କୁ ବିଭୋରିତ କରିଥାଏ । ବହୁ ବର୍ଣ୍ଣର ବେଙ୍ଗ ବେଙ୍ଗୁଲୀ, ପ୍ରୀତି ପଲ୍ଲବିତ ହୋଇ ମଧୁ ସଙ୍ଗମରେ ମାଦକିତ ହୁଅନ୍ତି ।

# ମଣ୍ଡୂକ

ମଣ୍ଡୂକଟିଏ କରିଦିଅ ପ୍ରଭୁ !
ମଣ୍ଡନ କରେ ମହି,
ମେଘ ମହ୍ଲାରେ ନୃତ୍ୟ ରଚେ ମୁଁ
ପ୍ରାଣ ସଙ୍ଗୀତ ଗାଇ ।
ଜଳରେ ବୁଡ଼େ ମୁଁ, ସ୍ଥଳରେ ରଡ଼େ ମୁଁ
ତୋଳେ ମୋ ହର୍ଷଧ୍ୱନି,
ଭାବ ସମୁଦ୍ରେ ମଗ୍ନ ରହେ ମୁଁ
ମୁଗ୍ଧ ଚିତ୍ତ ଘେନି ।
'ମଣ୍ଡ' ଅଟଇ 'ମଜ୍ଜନା' ପରା
ପ୍ରସନ୍ନ ମାଦକତା
ଜଳେ ମଜ୍ଜିତ ମଣ୍ଡୂକ ସଦା
ମେଘାଗମେ ପ୍ରମତ୍ତତା -
ଥାଏ ବେଙ୍ଗର ବୋଲି,
'ମଣ୍ଡ'ରୁ ସିଏ 'ମଣ୍ଡୂକ' ନାମ ଧରି ।

ମଣ୍ଡୂକଗୁଣେ ମଣ୍ଡିତ ଋଷି
ସର୍ଜନଶୀଳ କବି,
ସଦା ବ୍ରତଚାରୀ ବ୍ରାହ୍ମଣ, ତପୀ,
ମଣ୍ଡୂକ ପଦ ଲଭି -
ବୁଡ଼ି ରହିଥାନ୍ତି ଗଭୀର ତପସ୍ୟାରେ,
ମଗ୍ନ ରହନ୍ତି ନିଜର ସର୍ଜନାରେ,
ମଜ୍ଜିତ ସଦା କଠୋର ବରତ ଭାରେ ।
ସେଥିରୁ ମିଳଇ ଆନନ୍ଦ ତାଙ୍କୁ
ଅନ୍ତର ପ୍ରମୁଦିତ
ଉଚ୍ଚାରଣରେ ପ୍ରମତ୍ତ ସିଏ
ଉଚ୍ଛଳ ଉଦାତ୍ତ ।
ମଣ୍ଡୂକ ଭାବ ଘେନି
ଭାବ ସଂଚାରେ ବାଣୀ ।

•

"ନ ପାପାସୋ ମନାମହେ ନାରାୟାସୋ ନ ଜହ୍ଲବଃ
ଯଦିନ୍ୱିନ୍ଦ୍ରଂ ବୃଷଣଂ ସଚା ସୁତେ ସଖାୟଂ କୃଣବାମହୈ ।"

ଋ,ସଂ,୩ । ମ ୮ । ସୂ ୬୨ । ମନ୍ତ୍ର ୭ ୧ ୨୩

ଆମେ ଇନ୍ଦ୍ରଦେବଙ୍କୁ ପାପ ପ୍ରବୃତ୍ତିର ବୋଲି ମନେକରୁ ନାହିଁ । କିମ୍ବା ଯଜ୍ଞ କର୍ମପାଇଁ ସେ ହୀନବୋଲି ବିଚାର କରୁନାହିଁ । ଦିବ୍ୟ ଶକ୍ତିଯୁକ୍ତ, ଐଶ୍ୱର୍ଯ୍ୟଶାଳୀ ଇନ୍ଦ୍ରଦେବଙ୍କୁ ଆମର ମିତ୍ରରୂପେ ଆମେ ବରଣ କରୁଛୁ ।

ଏହାର ଅର୍ଥ, କାହାକୁ ମିତ୍ର ରୂପେ ବରଣ କରିବା ପୂର୍ବରୁ ସେ ମର୍ଯ୍ୟାଦାଶୀଳ କି ନୁହେଁ, ତାହା ବିଚାର କରିବା ଉଚିତ୍ । କେବଳ ବଳ ଓ ବିଭବକୁ ବିଚାରକୁ ନେଇ, ଯେକୌଣସି ହୀନବ୍ୟକ୍ତିକୁ ମିତ୍ର ପଦରେ ବରଣ କରିବା ଉଚିତ ନୁହେଁ ।

# ମିତ୍ର

ଏ ସଂସାରେ ସବୁଠାରୁ ଦୁଃଖୀ ଅଟେ ସିଏ
ଯାହାର ନିଜର ହୋଇ ନାହିଁ ମିତ୍ରଟିଏ,
ମିତ୍ରବଳ ସବୁବଳଠାରୁ ଶକ୍ତିଶାଳୀ
ସଂସାରର ସବୁ ଦୁଃଖ ଦେଇପାରେ ଟାଳି ।
ପରମ ସୌଭାଗ୍ୟବଳେ ମିଳଇ ସୁମିତ୍ର
ଶରଧାବଳେ ମିତ୍ରତା ହୋଇପାରେ ଶକ୍ତ ।

ମିତ୍ର ନିର୍ବାଚନ ବେଳେ
ଧ୍ୟାନ ଦିଅ ଲୟେ
ମର୍ଯ୍ୟାଦାବନ୍ତକୁ ବାଛ
ସବୁ ବିନିମୟେ ।
ହେଉ ଯେତେ ବଳଶାଳୀ
ବିତ୍ତଶାଳୀ ବ୍ୟକ୍ତି
ଯଦି ଅଟେ ଘୃଣ୍ୟମୟ
ହୀନ ତା ପ୍ରବୃତ୍ତି -
ଯେତେଅବା ପ୍ରତିପତ୍ତି
ଥାଉ ତା' ସମାଜେ
ମିତ୍ର ରୂପେ ଗ୍ରହଣୀୟ ନୁହେଁ ସେହି କେବେ ।

ସର୍ବନାଶ କରିବ ସେ ପାଇଲେ ସୁଯୋଗ
ଜୀବନରେ ଦେବ ସିଏ ମୃତ୍ୟୁ ପରାଭବ,
ଇନ୍ଦ୍ରଙ୍କୁ ଭାବନ୍ତି ନାହିଁ ଋଷିମାନେ ହୀନ
ପାପ ପ୍ରବୃତ୍ତିର ବୋଲି ନ ଭାବଇ ମନ ।
ଦିବ୍ୟ ଶକ୍ତିର ଆଧାର
ସେ ଐଶ୍ୱର୍ଯ୍ୟଶୀଳ
ନିମନ୍ତ୍ରିତ ସଦା ଯଜ୍ଞ -
ପୀଠକୁ ସକଳ ।
ସେ ମହାନ୍ ପୂଜ୍ୟ,
ପାନ କରିଥାନ୍ତି ସିଏ ଯଜ୍ଞ ପୂତ ଆଜ୍ୟ ।

•

• ଉତାସି ମୈତ୍ରାବରୁଣୋ ବସିଷ୍ଠୋର୍ବଶ୍ୟା ବ୍ରହ୍ମନ୍ମନସୋଽଧି ଜାତଃ
ଦ୍ରପ୍‌ସଂ ସ୍କନ୍ନଂ ବ୍ରହ୍ମଣା ଦୈବ୍ୟେନ ବିଶ୍ୱେ ଦେବାଃ ପୁଷ୍କରେ ତ୍ୱାଦଦନ୍ତ ।

ମନ୍ତ୍ର ୫୪୩୬

ହେ ମହର୍ଷି ବଶିଷ୍ଠ ! ଆପଣ ମିତ୍ରାବରୁଣଙ୍କ ସନ୍ତାନ ଅଟନ୍ତି । ଆପଣ ସ୍ୱର୍ଗର ଅପସରା ଉର୍ବଶୀଙ୍କ ମନରୁ ସମ୍ଭୂତ । ଦିବ୍ୟ ମନ୍ତ୍ରଶକ୍ତି ବଳରେ ବିଶ୍ୱେଦେବଗଣ ଆପଣଙ୍କୁ ପୁଷ୍କରରେ ଧାରଣ କରିଥିଲେ । ଅଥବା ପୁଷ୍ଟିଦାୟକ ବିପୁଳ ପଦାର୍ଥ ମଧ୍ୟରେ ପରିପୁଷ୍ଟ କରିଥିଲେ ।

• ସତ୍ରେ ହ ଜାତାବିଷିତା ନମୋଭିଃ କୁମ୍ଭେ ରେତଃ
ସିଷିଚତୁଃ ସମାନମ୍ ।
ତତୋ ହ ମାନ ଉଦିୟାୟ ମଧ୍ୟାତ୍ତତୋ
ଜାତମୃଷିମାହୁର୍ବସିଷ୍ଠମ୍ ।

ଋ,ସଂ,୩ । ମ୭ । ସୂ ୩୩ । ମନ୍ତ୍ର ୫୪୩୮

ଉଭୟ ମିତ୍ର ଓ ବରୁଣ ସେହି ଯଜ୍ଞରେ ଏକ ସହିତ ନିଜର ରେତଃ ବା ଉତ୍ପାଦକ ବୀର୍ଯ୍ୟକୁ କୁମ୍ଭ ମଧ୍ୟରେ ସ୍ଥାପନ କଲେ । କାଳକ୍ରମେ ସେହି ନବୀନ ପ୍ରକ୍ରିୟା ଦ୍ୱାରା ଅଗସ୍ତ୍ୟ ଋଷି ଜନ୍ମ ଲାଭ କଲେ । ସେହି ଏକ ପ୍ରକାର ପ୍ରକ୍ରିୟା ଦ୍ୱାରା ବଶିଷ୍ଠ ଋଷି ମଧ୍ୟ ଜନ୍ମ ଲାଭ କରିଥିବାର ସୂଚନା ମିଳେ ।

## ଜନ୍ମ ରହସ୍ୟ

ରସାୟନ ପ୍ରାୟୋଗିକ ବିଧି ଅନୁସରି
ବିଜ୍ଞାନ ନବୀନ ଦିଗ ଉନ୍ମୋଚନ କରି -
ପକାଇଛି ଚହଲ ବିଶ୍ୱରେ,
ମାନବ ଶିଶୁଙ୍କୁ ଜନ୍ମ ଦେଇପାରେ
ପରୀକ୍ଷା ନଳୀରେ ।

ପରୀକ୍ଷା ନଳୀରେ ରଜଃ ବୀର୍ଯ୍ୟ ବିକଶିତ
ଆନ ନାରୀ ଗର୍ଭେ ନେଇ କଲେ ସଂସ୍ଥାପିତ,
ବୃଦ୍ଧି ହୁଏ ଭ୍ରୁଣ ଗୋଟି ମାତୃ ଗର୍ଭେ ରହି
ଜନ୍ମଲାଭ କରିଥାଏ ଶିଶୁଟିଏ ହୋଇ ।

ବିଜ୍ଞାନର ନୂଆ ଦାନ ନୁହେଁ କେବେ ଏହା
ଅତୀତରେ ମୁନିଋଷି ଜାଣିଥିଲେ ତାହା,
କେତେ ଋଷି ଜନ୍ମିଛନ୍ତି ଅତୀତେ ଏପରି
ଅଗସ୍ତ୍ୟ ବଶିଷ୍ଠଋଷି ଜନ୍ମ ଏହିପରି ।

ଉର୍ବଶୀ ମାତୃତ୍ୱ ଦାନ କରିଛନ୍ତି ଗର୍ବେ
କେତେ ଭ୍ରୁଣ ସଂସ୍ଥାପନ କରି ନିଜ ଗର୍ଭେ,
ଯେଉଁ ନାରୀ କରୁଛନ୍ତି ନିଜ ଗର୍ଭ ଦାନ
ସେମାନେ ଅଟନ୍ତି ସ୍ୱର୍ଗ ଉର୍ବଶୀ ସମାନ ।
ଉରୁବଂଶ ନାରୀ
ଅଜ୍ଞାତ ପୁରୁଷ ରେତଃ ଗର୍ଭରେ ଆଦରି
ଜୀବ ଦାନ କରନ୍ତି ଶିଶୁକୁ
ରୂପଦାନ କରିଥାନ୍ତି ବିଜ୍ଞାନର ମହା ପ୍ରୟାସକୁ ।

ଅତୀତରେ ଘଟ ମଧ୍ୟେ ଭ୍ରୂଣର ବିକାଶ
କରାଯାଉଥିଲା ଦେଇ ମନ୍ତ୍ର ଶକ୍ତି ରସ,
ବିଜ୍ଞାନ କରୁଛି ତାହା ପରୀକ୍ଷା ନଳୀରେ
ବିକଶିତ କରେ ରସାୟନ ପ୍ରଣାଳୀରେ ।

ଏତିକି ପ୍ରଭେଦ
କହୁଛି ସେ କରିଅଛି ଏ ରହସ୍ୟ ଭେଦ ।

କ୍ଲୋନିଂ ପଦ୍ଧତି ବଳେ ଶରୀର ସୂକ୍ଷ୍ମାଂଶ
ନେଇ ବିକଶିତ ହୁଏ ଜୀବନ ପ୍ରକାଶ,
ଜନ୍ତୁନ୍ତି, ଘୁଷୁରି, ଛେଳି, ମେଣ୍ଢା ପରି ଜୀବ
ପରୀକ୍ଷାଗାରରେ ଏତ ସୃଷ୍ଟି ଅଭିନବ ।

ଏହା ମଧ୍ୟ ଜଣାଥିଲା ଦୀର୍ଘ ଅତୀତରୁ
କୌରବଗଣଙ୍କ ଜନ୍ମ ମାଂସ ପିଣ୍ଡଳାରୁ,
ମହାବୀର କର୍ଣ୍ଣ, କୁନ୍ତୀ କାନୀନ ସନ୍ତାନ
ଅପ୍ରାପ୍ତ ବୟସେ ଲଭି ମାତୃତ୍ୱ ସମ୍ମାନ ।

ଅଭିଚାର ମନ୍ତ୍ରବଳେ ହେଲେ ସେ ଜନନୀ
କି ନୂତନ ତଥ୍ୟ ଦିଏ କ୍ଲୋନିଂ ବିଜ୍ଞାନୀ,
ଅତୀତ ପୁରାଣେ ଅଛି ବିଜ୍ଞାନ ରହସ୍ୟ
ଉଦ୍‌ଘାଟନ କର ଆହେ, ମିଳିବ ଅବଶ୍ୟ -
ଗୂଢ଼ ତତ୍ତ୍ୱ ରାଜି,
ତଥ୍ୟର ଭଣ୍ଡାର ଅଛି, ତୁମ ପାଇଁ ହେ ବିଜ୍ଞାନୀ ଆଜି ।

•

- ମ୍ନା ସମସ୍ମୁ ହିନୋତ ଯଜ୍ଞଂ
  ଦଧାତ କେତୁଂ ଜନାୟ ବୀରମ୍ ।
- ରାଜା ରାଷ୍ଟ୍ରାନାଂ ପେଶୋ ନଦୀନାମ୍ -
  ନୁତ୍ତମସ୍ମୈ କ୍ଷତ୍ରଂ ବିଶ୍ୱାୟୁ ।

ଋ.ସଂ.୩ । ମ୭ । ସୂ ୩୪ । ମନ୍ତ୍ର ୫୪୪୫, ୫୪୫୦

ମନୁଷ୍ୟ ଜୀବନ ସଂଗ୍ରାମ ମଧ୍ୟରେ ଅବିରତ ଗତି କରୁଛି । ଧୈର୍ଯ୍ୟ ଓ ସାହସର ସହିତ ଏହି ସଂଗ୍ରାମର ସମ୍ମୁଖୀନ ହେବା ଉଚିତ । ବିଶ୍ୱର ମଙ୍ଗଳ ପାଇଁ ମନୁଷ୍ୟ ସର୍ବବିଧ ସଂଗ୍ରାମର ସମ୍ମୁଖୀନ ହେବା ସହିତ, ଅନ୍ୟକୁ ପ୍ରେରଣା ଦେବା ଏବଂ ଯଜ୍ଞଧାରା ବଞ୍ଚାଇ ରଖିବା ଆବଶ୍ୟକ । ସଂଘର୍ଷ ଓ ସଂଗ୍ରାମ ମଧ୍ୟ ଏକ ଯଜ୍ଞ । ବରୁଣ ଦେବତା ରାଷ୍ଟ୍ର ସମୂହର ରାଜା ସଦୃଶ । ସେ ନଦୀ ରୂପରେ ବହୁ ସଂଘର୍ଷର ସମ୍ମୁଖୀନ ହୋଇ ପ୍ରବାହିତ ହୋଇଥାନ୍ତି ।

# ଜୀବନ ସଂଗ୍ରାମ

ଏ' ବିଶ୍ୱଜୀବନେ ଚାଲେ ଅହରହ
ଜୀବନ ସଂଗ୍ରାମ
ପ୍ରକୃତିର ଯଜ୍ଞଧାରା ସମ
କେ ପାରିବ ପ୍ରତିହତ କରି ?
ସଂଗ୍ରାମବିହୀନ ହେଲେ -
ଏ' ଜୀବନ ଅଟେ ମୃତ୍ୟୁ ସରି ।

ଅନୀତିର ମାୟାପୁରୀ ମଣିଷ ଜୀବନ
ସଦା ସିଏ ହୁଏ ମୁହ୍ୟମାନ -
ବିଭ୍ରମିତ ସର୍ବଦା ବିଚାର,
ରକ୍ଷା ପାଇବାକୁ ହେଲେ ...
ସଂଗ୍ରାମରେ ହୁଅ ଅଗ୍ରସର ।

ଯେ ଚାଲିଛି ନୀତି ପଥେ ପରାଜୟ ଭୁଲି
ଅନୀତିର ପ୍ରତିରୋଧ କରି,
ଦିଅ ତାଙ୍କୁ ଅମାପ ପ୍ରେରଣା
ସଂଗ୍ରାମ ଅଟଇ ଯଜ୍ଞ ...
ହୁଅ ନାହିଁ ଏଥି ବାଟବଣା ।

ବରୁଣ ଦେବତା ରାଷ୍ଟ୍ର ସମୂହ ରାଜନ
ଏ ସଂସାର କରନ୍ତି ରକ୍ଷଣ
ପ୍ରବାହିତ ନଦୀ ରୂପ ଧରି,
ନିଜ ଶକ୍ତି ବଳେ ସିଏ, ପ୍ରବାହର ଶଯ୍ୟାଟିଏ ପାରି ।
ହେ ମନୁଷ୍ୟ ଗଣ !
ସଫଳ କର ହେ ତୁମ ଜୀବନ ସଂଗ୍ରାମ ।

•

- ଶଂ ନୋ ଭଗଃ ଶମୁ ନଃ ଶଂ ସୋ ଅସ୍ତୁ
  ଶଂ ନଃ ପୁରନ୍ଧିଃ ଶମୁ ସନ୍ତୁ ରାୟଃ
  ଶଂ ନଃ ସତ୍ୟସ୍ୟ ସୁୟମସ୍ୟ ଶଂ ସଃ
  ଶଂ ନୋ ଅର୍ଯ୍ୟମା ପୁରୁଜାତୋ ଅସ୍ତୁ ।

ମନ୍ତ୍ର ୫୪୬୬

ହେ ବିଶ୍ୱେଦେବ ! ମନୁଷ୍ୟମାନଙ୍କ ଦ୍ୱାରା ଆକାଂକ୍ଷିତ ଶାନ୍ତି ଆମକୁ ପ୍ରଦାନ କରନ୍ତୁ । ଆମର ବୃଦ୍ଧି ଏବଂ ଧନର ସୁବିନିଯୋଗ ସହିତ ତାହା ଶାନ୍ତି ଦାନ କରୁ । ଆମେ ଶାନ୍ତି ଓ ଶିଷ୍ଟ ବଚନର ଅଧିକାରୀ ହେଉ, ଯାହା ଆମ ପାଇଁ ଶାନ୍ତିଦାୟକ ହେବ । ଅର୍ଯ୍ୟମା ଦେବ ଆମ ପାଇଁ ଶାନ୍ତିଦାୟକ ହୁଅନ୍ତୁ ।

- ଶଂ ନୋ ଦେବଃ ସବିତା ତ୍ରାୟମାଣଃ
  ଶଂ ନୋ ଭବନ୍ତୂଷସୋ ବିଭାତୀଃ,
  ଶଂ ନଃ ପର୍ଜନ୍ୟୋ ଭବତୁ ପ୍ରଜାଭଃ ।
  ଶଂ ନଃ କ୍ଷେତ୍ରସ୍ୟ ପରିରସ୍ତୁ ଶମ୍ଭୁଃ ।

ର. ସଂ.୩ । ମ ୭ । ସୂ ୩୫ । ମନ୍ତ୍ର ୫୪୭୪

ହେ ପ୍ରାଣ ପ୍ରଦାନକାରୀ ସୂର୍ଯ୍ୟଦେବ! ଆମକୁ ଶାନ୍ତି ପ୍ରଦାନ କରନ୍ତୁ । ହେ ତେଜୋମୟୀ ଉଷା ଦେବୀ! ଆପଣ ଆମକୁ ଶାନ୍ତି ପ୍ରଦାନ କରନ୍ତୁ । ହେ ପର୍ଜନ୍ୟ ଏବଂ କ୍ଷେତ୍ରାଧିପତିଗଣ ! ଆପଣ ବିଶ୍ୱର ପ୍ରଜାମାନଙ୍କର ମଙ୍ଗଳ ବିଧାନ କରି ଶାନ୍ତି ପ୍ରଦାନ କରନ୍ତୁ ।

# ଶାନ୍ତି

ଘେନ ପ୍ରାର୍ଥନା ଆମ,
ଆମେ ପରା ତୁମ ଆଶ୍ରିତ ପ୍ରଭୁ!
ତୁମେ ଆମ ଭଗବାନ ।

କିଛି ମାଗୁନାହୁଁ ଏତିକି ମାଗୁଣି
ଶାନ୍ତି ଟିକିଏ ପାଇଁ
ସାରା ଜୀବନର ଅଭିଳାଷ ଏତ
ମାଗୁଛୁ ଶ୍ରୀପଦେ ସାଇଁ ।
ଦେଇଅଛ ଯେଉଁ ବୁଦ୍ଧି ବିବେକ
ଧନମାନ ଯଶଶିରୀ ।
ସତ୍‌ପଥେ ତାହା, ହେଉ ବିନିଯୋଗ
ଢାଳୁ ତା’ ଶାନ୍ତିବାରୀ ।

ମଙ୍ଗଳମୟୀ ଜ୍ୟୋତି ପ୍ରଦାୟିନୀ
ପ୍ରଶାନ୍ତମୟୀ ଉଷା,
ଆହେ ଦେବରାଜ ଦଶଦିଗପାଳ
ବିଶ୍ୱପ୍ରାଣ ଦେବ ପୂଷା ।
ତୁମରି ପଦରେ ଏତିକି ପ୍ରାର୍ଥନା ଆମ
ଏ ଜୀବନ କର ଶାନ୍ତି ଶୁଭଦ
ମଙ୍ଗଳମୟ ଧାମ ।

ପ୍ରକୃତି ମାତା ବିଶ୍ୱ ଜନନୀ
ତୁମରି ଶାନ୍ତିକୋଳେ
ପ୍ରଶାନ୍ତ ସେଇ ନୀଳ ଆକାଶରୁ
ଶାନ୍ତିର ସୁଧାଝରେ ।
ଆହେ ଦେବ ଦେବ ପ୍ରଭୁ ସୋମଦେବ
ଦିବସ ରଜନୀ ଆମ
ଶାନ୍ତିରେ ବିତୁ ଶୁଭ ଚିନ୍ତନେ
ଆମେ ତ ଶାନ୍ତିକାମ ।

ଅଗ୍ନି ଦେବହେ ! ଆହେ ବାୟୁଦେବ
କରୁଛୁ ମିନତି ପଦେ,
ଶାନ୍ତି ଭାବନା ଭରିଦିଅ ମନେ
ଅନ୍ତରେ ପ୍ରାଣେ, ହୃଦେ ।
ଆଉ କିଛି ଲୋଡ଼ା ନାହିଁ
ଜୀବନ ଯଜ୍ଞେ ଦେଉଛୁ ଆହୁତି
ଟିକିଏ ଶାନ୍ତି ପାଇଁ ।

ଗଭୀର ଗର୍ଭେ ଶାନ୍ତି ବଳୟ
ସାଗର ବୁକୁର ମାୟା,
ଆମରି ପରାଣେ ପ୍ରତିଭାତ ହେଉ
ଶାନ୍ତି ଶୀତଳ ଛାୟା ।

ଆହେ ବାଣୀ ଦେବୀ ବୀଣା ଝଙ୍କାରେ
ତୋଳ ଶାନ୍ତିର ଗାନ,
ଶାନ୍ତିର ବାଣୀ ହେଉ ଝଙ୍କୃତ
ବିଶ୍ୱଜୀବନ ଗାନ ।
ହେଉ ଏ ବିଶ୍ୱ ଶାନ୍ତିର ମହୋଦଧି,
ହେଉ ଏ ଶାନ୍ତି ସନ୍ତାପ ମହୌଷଧି ।

•

# ଜଳଦେବ

"ଯା ଆପୋ ଦିବ୍ୟା ଉତ ବା ସ୍ରବନ୍ତି ଖନିତ୍ରିମା ଉତବା ଯାଃ ସ୍ୱୟଞ୍ଜାଃ
ସମୁଦ୍ରାର୍ଥା ଯାଃ ଶୁଚୟଃ ପାବକାସ୍ତା ଆପୋ ଦେବୀରିହ ମାମବନ୍ତୁ ।"

ଋ.ସଂ୩।ମ୭।ସୂ୫୦।ମନ୍ତ୍ର୫୫୫୯

ଆକାଶର ଜଳସମ୍ପଦ, ବର୍ଷାହୋଇ ପୃଥିବୀକୁ ଆସେ । ଆମେ ମଧ୍ୟ କୂପ ଖନନ କରି ଜଳ ପାଇଥାଉ । ଏହି ଜଳ, ସ୍ରୋତ ରୂପରେ ତାର ସେବା ଓ ପବିତ୍ରତା ବିତରଣ କରି ସମୁଦ୍ର ଅଭିମୁଖରେ ଗତି କରିଥାଏ । ଏହି ପବିତ୍ର ଜଳ, ଆମର ଜୀବନ ସ୍ୱରୂପ । ସେ ଆମକୁ ସୁରକ୍ଷା ଦେଉ ।

ଆକାଶ ଅଙ୍ଗନରେ ଜଳର ଧାରା
ବାଷ୍ପୀୟ ରୂପ ନେଇଥାଏ ସେ ପରା,
ଅନ୍ତରିକ୍ଷର ସେହି ଦିବ୍ୟ ବିଭବ
ଅଟଇ ଏହା ବିଶ୍ୱପ୍ରାଣ ସ୍ୱରୂପ ।
ବୃଷ୍ଟି ରୂପରେ ଝରେ ବସୁଧା ବୁକେ
ଜଳର ସ୍ପର୍ଶ ପାଇ ପ୍ରାଣ ପୁଲକେ,
ନଦୀ ନିର୍ଝରେ ଅଟେ ତା' ଗତିଶୀଳ
ବସୁଧା ଗର୍ଭୁ ମଧ୍ୟ ମିଳଇ ଜଳ ।

ଅମୃତସମ ତାହା ଜୀବ ଜୀବନ
ତୀର ବାସୀଙ୍କୁ କରେ ତା' ବିତରଣ,
ସମୁଦ୍ର ବୁକେ ଲୋଟିଯାଏ ସେ ପ୍ରେମେ
ପ୍ରାଣ ବାନ୍ଧବ ସେତ ଏ' ମର୍ତ୍ତ୍ୟ ଭୂମେ ।
ଜଳ ପ୍ରବାହେ ପୁଷ୍ଟ ଭଣ୍ଡାର ତା'ର
ଅଟନ୍ତି ତୀର୍ଥରାଜ, ମହାସାଗର,
ଅନ୍ତରିକ୍ଷରୁ ମିଳେ ଯେ ଜଳଧନ
ଅନ୍ତରିକ୍ଷକୁ ତାହା ପଠାନ୍ତି ପୁଣ ।
ଦିବ୍ୟ ବିଭବ ମର୍ତ୍ତ୍ୟେ ଅଟଇ ଜଳ
ତାହାକୁ ଲଭି ସର୍ବେ ଚଳଚଞ୍ଚଳ ।
ଜଳେ ନିବାସ ରାଜା ବରୁଣ ସୋମ
ସର୍ବଦେବତା, ଅଗ୍ନି ଆଳୟ ପୁଣ
କରନ୍ତୁରକ୍ଷା,
ଜଳଦେବଙ୍କ ପଦେ ଏତିକି ଭିକ୍ଷା ।

•

ଓଁ

ତ୍ର୍ୟମ୍ବକଂ ଯଜାମହେ ସୁଗନ୍ଧିଂ ପୁଷ୍ଟିବର୍ଧନମ୍
ଉର୍ବାରୁକମିବ ବନ୍ଧନାନ୍ମୃତ୍ୟୋର୍ମୁକ୍ଷୀୟ ମାମୃତାତ୍ ।

ଋ.ସଂ୭।ମ୭।ସୂ୬୦। ମନ୍ତ୍ର ୫୬୩୫

ହେ ତିନିଦେବଙ୍କର ସମାହାର'ତ୍ର୍ୟମ୍ବକ', ଅଥବା ପ୍ରଭୁ ମଙ୍ଗଳମୟ ଶିବ । ଆପଣ ସୃଷ୍ଟିରେ ତ୍ରିଶକ୍ତି (ପୁଣ୍ୟ, କୀର୍ତ୍ତି ଓ ପୁଷ୍ଟି) ଦାନ କରି ତାହାକୁ ସମୃଦ୍ଧକରନ୍ତି । ଆପଣ ଏହାର ସଂରକ୍ଷକ ହିସାବରେ ପ୍ରଭୁ ବିଷ୍ଣୁଦେବ ଓ ଏହାର ସଂହାରକ ଭାବରେ 'ରୁଦ୍ର'ଦେବ ଅଟନ୍ତି । ଆମର ବିନୀତ ପ୍ରାର୍ଥନା, ଆପଣ ଆମକୁ ଉର୍ବାରୁକ (କାକୁଡ଼ି) ପରି ମୃତ୍ୟୁ ବନ୍ଧନରୁ ପରିତ୍ରାଣ କରନ୍ତୁ । ଏବଂ ଆମକୁ ଅମୃତତ୍ୱରୁ ବଞ୍ଚିତ କରନ୍ତୁ ନାହିଁ ।

ବି.ଦ୍ର. : କାକୁଡ଼ି, ତରଭୁଜ ଆଦି ଫଳ, ପରିପକ୍ୱ ହେବାପରେ, ଆପେ ଆପେ ଡେମ୍ଫରୁ ଅଲଗା ହୋଇଯାଏ । ଆମେ ସେହି ପ୍ରକ୍ରିୟାରେ ଆପେ ଆପେ ଜୀବନ ପ୍ରବାହରୁ ବା ଭବ ବନ୍ଧନରୁ ମୁକ୍ତିଲାଭ କରୁ । ଏହାହିଁ ମଙ୍ଗଳମୟ ଶିବଙ୍କ ଠାରେ ଆମର ପ୍ରାର୍ଥନା ।

## ତ୍ରିୟମ୍ବକ

ତୁମେ ତ୍ରିନେତ୍ର ତ୍ରିୟମ୍ବକ ହେ !
ଶିବ ଶଙ୍କର ପ୍ରଭୁ !
ମଙ୍ଗଳମୟ ତୁମେ ବି ରୁଦ୍ର
ବିଶ୍ୱବନ୍ଦ୍ୟ ବିଭୁ ।
ତୁମେ ବି ବ୍ରହ୍ମା ତୁମେ ତ ବିଷ୍ଣୁ
ତୁମେ ଅଟ ମହେଶ୍ୱର
ତୁମେ ଦେବ ଦେବ ସ୍ରଷ୍ଟା ଅଟ ହେ
ସୃଷ୍ଟି ଓ ପ୍ରଳୟର ।
ତୁମେ ମଧ୍ୟ ତିନି ପୋଷଣ ପ୍ରବାହ
କର୍ତ୍ତା ଏ ଜଗତରେ,
ପୁଣ୍ୟ, କୀର୍ତ୍ତି ପୁଷ୍ଟି ପ୍ରବାହ
ପ୍ରଖରିତ ଜୀବନରେ,
ସୃଷ୍ଟି, ସ୍ଥିତି ଓ ଲୟ
ତୁମ ଇଙ୍ଗିତେ ଗତିଶୀଳ ପ୍ରଭୁ !
ସଂସାର ଲୀଳାଚୟ ।

ହେ ପ୍ରଭୁ କରୁଛୁ ପ୍ରାର୍ଥନା ତୁମ ପଦେ
ଇହ ଲୀଳା ଆମେ ସାଙ୍ଗ କରୁହେ ।
କର୍କଟିକାର ମତେ ।
ଆପେ ଆପେ ତାହା ଡେମ୍ଫରୁ ଯଥା
ହୋଇ ଯାଇଥାଏ ଦୂର,
ସେଇପରି ପ୍ରଭୁ ! ଭବ ବନ୍ଧନୁ
ଆପେ ହୋଇଯାଉ ପାର ।
ହେ ପ୍ରଭୁ ରୁଦ୍ର ଦେବ !
ମହାକାଳ ତୁମେ, ମଙ୍ଗଳମୟ ଶିବ ।
ପ୍ରଭୁ !
ମୃତ୍ୟୁରେ ବନ୍ଧୁ ଅମୃତତ୍ୱର ଧାରା-
ଏତିକି ମିନତି ଆମ,
ଏ' ପ୍ରାଣ ପ୍ରୟାଣେ ମିଳୁ ଅମୃତ ଧାମ ।

•

"ଜୟେମ କାରେ ପୁରୁହୂତ କାରିଣୋଽଭି ତିଷ୍ଠେମ ଦୂଢ୍ୟଃ
ନୃଭିର୍ବୃତଂ ହନ୍ୟାମ ଶୂଶୁୟାମ ଚାବେରିନ୍ଦ୍ର ପ୍ର ଣୋ ଧିୟଃ"

ଋ.ସଂ୩।ମ୮।ସୂ୨୧।ମନ୍ତ୍ର ୬୪୯୬

ହେ ଇନ୍ଦ୍ରଦେବ ! ଆପଣ ସମସ୍ତଙ୍କ ଦ୍ୱାରା ପ୍ରାୟ ଆହୂତ । ଆମେ ମଧ୍ୟ ଆପଣଙ୍କ ସହଯୋଗ ପାଇଁ ପ୍ରାର୍ଥନା କରୁଛୁ । ଆପଣ ଆମକୁ ଶକ୍ତିଶାଳୀ କରନ୍ତୁ, ଆମେ ଆମର ହିଂସା ଜର୍ଜରିତ ଦୁଷ୍ଟ ଶତ୍ରୁମାନଙ୍କୁ ଜୟଲାଭ କରୁ । ଆପଣ ଯେପରି ବୃତ୍ରାସୁରକୁ ସଂହାର କରିଥିଲେ, ଆମେ ସେହିପରି ଆମର ଅନ୍ତର୍ନିହିତ ଶକ୍ତିକୁ ଆବୃତ କରିରଖିଥିବା ବୃତରୂପୀ ଅଜ୍ଞାନ ଅନ୍ଧକାରକୁ ଦୂର କରି ଆମ ବ୍ୟକ୍ତିତ୍ୱର ବିକାଶ କରୁ । ହେ ଇନ୍ଦ୍ରଦେବ ! ଆପଣ ଆମର ଯଜ୍ଞକୁ ରକ୍ଷାକରିବା ସହିତ ଆମକୁ ସୁରକ୍ଷା ପ୍ରଦାନ କରନ୍ତୁ ।

# ବୃତ୍ରାସୁର

ବୃତ୍ରାସୁର ନାମେଥିଲା ଦୁର୍ଦ୍ଦାନ୍ତ ଅସୁର
ଘୋର ଶତ୍ରୁଥିଲା ସିଏ ଇନ୍ଦ୍ର ଦେବଙ୍କର,
ଆକାଶର ମେଘମାଳା ରଖିଲା ଆବୋରି
ମେଘ ପାଇଲାନି ବାଟ, ବର୍ଷିବାକୁ ବାରି ।

ହାହାକାର ପଡ଼ିଗଲା ଏ ବିଶ୍ୱ ଭୁବନେ
ତ୍ରାହି ତ୍ରାହି ଡାକଦେଲେ ସର୍ବେ ବିଶ୍ୱଜନେ,
ଫାଟିଲା ମେଦିନୀ ତାପେ, ଜଳିଲା ବନସ୍ତ
ଶୁଖିଗଲା ନଈନାଳ ପୋଖରୀ ସମସ୍ତ ।

କାନ୍ଦିଲେ ଜଗତବାସୀ ହେଲା ଟଳମଳ
ଇନ୍ଦ୍ର ଦେବଙ୍କ ଆସନ, ହେଲେ ସେ ଚଞ୍ଚଳ,
ଆଗ୍ନେୟାସ୍ତ୍ର ବଜ୍ରଧରି ଗଲେ ବଜ୍ରଧାରୀ
ଶାନ୍ତ କରିଲେ ପୃଥିବୀ, ବୃତ୍ରକୁ ସଂହାରି ।
ଦୂର ହେଲା ବୃତ୍ରର ବନ୍ଧନ,
ମୂଷଳ ଧାରାରେ ବାରି ହୋଇଲା ବର୍ଷଣ ।

ଜଳର ପ୍ଲାବନେ ଭରିଗଲା ନଦୀ ନାଳ
ତାପଦଗ୍ଧ ଧରା ହେଲା ଶାନ୍ତ ଓ ଶୀତଳ,
ପ୍ରକୃତି ପିନ୍ଧିଲା ପାଇ ଶ୍ୟାମ ଶାଢ଼ି ନୂଆ
ବନ୍ଦିଲା ଇନ୍ଦ୍ରଦେବଙ୍କୁ ବିଶ୍ୱବନ୍ଦନୀୟା ।

ଖରା ଭରା ଧରା ଆଜି ଧାରାମୟୀ ସାଜି
ପଲ୍ଲବିତ କରିଅଛି ବନ ତରୁ ରାଜି,
ମଣ୍ଡୂକ ଉଠିଛି ଗର୍ଜ୍ଜି ତୋଳି ଜୟଗାନ
ଏ ବିଶ୍ୱ ପାଇଛି ଆଜି ନବୀନ ଜୀବନ ।
ଇନ୍ଦ୍ରଦେବ କୃପାବଳ ଲଭି,
ବଦଳି ଯାଇଛି ଏବେ
ତାପକ୍ଲିଷ୍ଟ ପ୍ରକୃତିର ଛବି ।

ବୃତ୍ରରୂପୀ ଆସୁରିକ ମାୟାଚ୍ଛନ୍ନ ମନ
ଅବରୁଦ୍ଧ ହୋଇଅଛି ବ୍ୟକ୍ତିତ୍ୱ ମହାନ୍,
ହୋଇପାରୁନାହିଁ ଆମ ପ୍ରଜ୍ଞାର ପ୍ରକାଶ
କର ଅଜ୍ଞାନତା ଦୂର ଆହେ ନିଖିଳେଶ ।

•

• ଯୁଷ୍ମେ ଦେବା ଅପି ଷ୍ମସି ଯୁଧ୍ୟନ୍ତଇବ ବର୍ମସୁ
ଯୂୟଂ ମହୋ ନ ଏନସୋ ଯୂୟମର୍ଭାଦୁରୁଷ୍ୟତା ନେହସୋ ବ
ଉତୟଃ ସୁଉତୟୋ ବଉତୟଃ ।

ମନ୍ତ୍ର ୬୯୮୭

ହେ ଦେବତାଗଣ ! ଆମେ ସର୍ବଦା ଆପଣଙ୍କ ପାଖରେ ସମର୍ପିତ ହୋଇ, ସଂସାରର ପାପାବର୍ତ୍ତରୁ ନିଜକୁ ଦୂରେଇରଖୁ । ଆପଣ ମନୁଷ୍ୟ ମାନଙ୍କର ରକ୍ଷାକବଚ । ବୀର ସୈନିକମାନେ କବଚ ଧାରଣକରି ଯେପରି ସୁରକ୍ଷିତ ରହନ୍ତି, ଆପଣ ଆମକୁ ସେପରି ସୁରକ୍ଷା ପ୍ରଦାନ କରନ୍ତୁ ।

• ନିଷ୍କଂ ବା ଘା କୃଣବତେ ସ୍ରଜଂ ବା ଦୁହିତର୍ଦ୍ଦିବଃ
ତ୍ରିତେ ଦୁଷ୍ଷ୍ୱପ୍ନ୍ୟଂ ସର୍ବମାପ୍ତ୍ୟେ ପରି ଦଦ୍ମସ୍ୟନେହସୋ ବ
ଉପୟଃ ସୁଉତୟୋ ବ ଉତୟଃ ।।

ମନ୍ତ୍ର ୬୯୯୪

ତ୍ରିତଆପ୍ତ୍ୟ ଋଷି ପ୍ରାର୍ଥନାକରି କହୁଛନ୍ତି; ଗଠନ କରୁଥିବା ତଥା ମାଳା ପ୍ରସ୍ତୁତ କରୁଥିବା ବ୍ୟକ୍ତିର ଦୁଃସ୍ୱପ୍ନକୁ ଆପଣ ଦୂରକିଦିଅନ୍ତୁ । ଏଠାରେ ଉପଯୁକ୍ତ ମଣିଷ ଗଠନ କରିବା ଓ ସତ୍‌ପୁରୁଷଙ୍କୁ ମାଳା ସଦୃଶ ଗୁନ୍ଥିବାର ଗୂଢ଼ାର୍ଥ ଲୁଚି ରହିଛି ।

• ଯଥା କଳାଂ ଯଥା ଶଫଂଂ ଯଥା ଋଣଂ ସନ୍ନୟାମସି
ଏବା ଦୁଷ୍ଷ୍ୱପ୍ନ୍ୟଂ ସର୍ବମାପ୍ତ୍ୟେ ସଂ ନୟାମସ୍ୟନେହସୋ ବ
ଉତୟଃ ସୁଉତୟୋ ବ ଉତୟଃ ।

ଋସଂ୮।୮।ସୂ୪୭। ମନ୍ତ୍ର : ୬୯୯୬

ଯେପରି ଯଜ୍ଞାର୍ଥେ ସମସ୍ତ ବସ୍ତୁକୁ ଦାନ କରାଯାଏ ଏବଂ ଧାର ଆଣିଥିବା ଅର୍ଥକୁ ସମୂଳ ସୁଧ ପରିଶୋଧ କରାଯାଏ, ସେହିପରି ମୁଁ ମୋର ସମସ୍ତ ଦୁଃସ୍ୱପ୍ନକୁ ପୂରା କରିଦେବି । ଏହାର ଅର୍ଥ, ହୀନ ସଂକଳ୍ପ ସମସ୍ତ ଦୁଃସ୍ୱପ୍ନର କାରଣ ହୋଇଥିବାରୁ ଏହାକୁ, ଋଣ ପରିଶୋଧ କଲାପରି ମନରୁ ପରିହାର କରିଦେବା ଆବଶ୍ୟକ । ଏହି ମନ୍ତ୍ର ତିନିଟି ଗୂଢ଼ ଅର୍ଥବୋଧକ ।

# ମନ

ମଣିଷ ମନ ଅଟେ ଶୁଦ୍ଧ, ନିର୍ମଳ
ସୁନ୍ଦର ଶ୍ରଦ୍ଧାମୟ ସଦା ସରଳ,
କରେ କୁଟୀଳ ତାର କୁଟୀଳ ଭାବ
ଶାନ୍ତ ସରଳ ବିଭୁ ଦତ୍ତ ସ୍ୱଭାବ ।

ସଂକଳ୍ପ ତା'ର ଯଦି ହୋଇବ ହୀନ
ଦୁର୍ଭାବନା ତାହାର ଗ୍ରାସିଲେ ମନ,
ପାପ ଭାବନା, ପାପ କର୍ମରେ ଲିପ୍ତ
ହୁଅଇ ମନ ତା'ର ସଦା ସନ୍ତପ୍ତ ।

ଘାତକ ଅସ୍ତ୍ର ସମ ଅଟଇ ପାପ
ମନୁଷ୍ୟ ପଣିଆ ତା' କରଇ ଲୋପ,
ଦେବ ଅନୁସରଣ ଅନୁଶାସନ
ଅଟେ ରକ୍ଷାକବଚ ବିପଦେ ପୁଣ ।

ଦେବତା ପଦେ ସଦା ରହିଲେ ଲୟ
ନଥାଏ ଜୀବନରେ ପତନ ଭୟ,
ଦେବଶକ୍ତି ବଢ଼ାଏ ସୁଖ ସମୃଦ୍ଧି
ଆନନ୍ଦେ ତା' ଜୀବନ ଯାଅଇ ବିତି ।

ଦୁର୍ଭାବନା ଅଟଇ ଦୁଃସ୍ୱପ୍ନ ସମ
ହୀନ ସଂକଳ୍ପ ତାକୁ, କରଇ ହୀନ
ତାଠାରୁ ଅବିରତ ରୁହ ହେ ଦୂରେ,
ଶୁଭ ଚିନ୍ତନ ଭରି ହୃଦୟ ପୁରେ -
ଗଠନ କର ସଦା ଶ୍ରେଷ୍ଠ ମଣିଷ
କଣ୍ଠମାଳା କର ହେ ସାଧୁ ପୁରୁଷ ।
ଦୁଃସ୍ୱପ୍ନ ଦୂର-
ହୋଇବ ମନମଧ୍ୟୁ ହୋଇ ନିର୍ମଳ ।

•

- ଇନ୍ଦ୍ରଶ୍ଚିଦ୍‌ଘା ତଦବ୍ରବୀତ୍‌ସ୍ତ୍ରିୟା ଅଶାସ୍ୟଂ ମନଃ
ଉତୋ ଅହ କ୍ରତୁଂ ରଘୁମ୍ ।।

ମନ୍ତ୍ର ୬୭୩୫

"ଇନ୍ଦ୍ର ମଧ୍ୟ ଏହା କହିଥିଲେ ଯେ," ସ୍ତ୍ରୀମାନଙ୍କର ମନକୁ ଜୟ କରିବା ସହଜ ନୁହେଁ, କାରଣ ସେମାନଙ୍କର କାମନାର ସୀମା ନାହିଁ ।

- ଅଧଃ ପଶ୍ୟସ୍ୱ ମୋପରି ସତରାଂ ପାଦକୌ ହର
ମା ତେ କଶପ୍ଲକୌ ଦୃଶନ୍ତସ୍ତ୍ରୀ ହି ବ୍ରହ୍ମା ବଭୁବିଥ ।

ଋ.ସଂ.। ୩ । ମ ୮। ସୂ ୪୭। ମନ୍ତ୍ର: ୬୭୩୭

ଏଠାରେ ଗୋଟିଏ ବୈଦିକ ଘଟଣାର ବର୍ଣ୍ଣନା କରାଯାଇଛି । "ପ୍ରୟୋଗି" ନାମରେ ଅତୀତରେ ଜଣେ ଗଣ୍ୟମାନ୍ୟ ବ୍ୟକ୍ତି ଥିଲେ । ତାଙ୍କର ଅନୈତିକ କର୍ମ ପାଇଁ ତାଙ୍କୁ ଦେବାଭିଶାପ ଭୋଗିବାକୁ ପଡ଼ିଲା । ସେ ପୁରୁଷ ହୋଇ ମଧ୍ୟ ଅଭିଶାପ ବଳରେ ନାରୀ ପାଲଟି ଗଲେ । ଇନ୍ଦ୍ରଦେବ ତାଙ୍କର ନାରୀ ରୂପ ଦେଖି କହିଲେ, "ହେ ପ୍ରୟୋଗି ! ଏବେ ତୁମେ ନାରୀରେ ପରିଣତ ହୋଇଗଲ । ଏଣୁ ନାରୀ ଧର୍ମ ପାଳନ କର । ଦେହକୁ ନାରୀ ବସ୍ତ୍ରରେ ଆବୃତ କର । ଲଜ୍ଜା ଲୋହିତ ମୁଖ ମଣ୍ଡଳକୁ ଅବଗୁଣ୍ଠନରେ ଆବରଣ କର । ନାଭିଚକ୍ର (ପିଣ୍ଡିକା) ଓ ବକ୍ଷୋଜକୁ ଅଙ୍ଗ ବସନରେ ଆବୃତ କର । ପାଦ ଦୁଇଟିକୁ ବିସ୍ତାର ନକରି ପାଖେ ପାଖେ ରଖ ଏବଂ ଛୋଟ ପାହୁଣ୍ଡ ପକାଇ ଚାଲ । କାରଣ ଏହା ନାରୀ ସମ୍ମତ ଆଚରଣ ।"

ବି.ଦ୍ର. ବିଜ୍ଞାନ ଅତୀତକୁ ଅନୁସରଣ କରିଛି । ଅତୀତରେ ଅଭିଶାପ ବଳରେ ପୁରୁଷକୁ ସ୍ତ୍ରୀ କରାଯାଇ ପାରୁଥିଲା । ଏବେ ବିଜ୍ଞାନ ଶଲ୍ୟ ଚିକିତ୍ସା କରି ପୁରୁଷକୁ ନାରୀରେ ଓ ନାରୀକୁ ପୁରୁଷରେ ପରିଣତ କରି ପାରୁଛି । ଅଙ୍ଗ ପ୍ରତିରୋପଣ ପଦ୍ଧତି, ମନ୍ତ୍ର ଶକ୍ତିର ନବୀନ ଧାରା ।

# ଅଭିଶାପ

ଏ' ବିଶ୍ୱ ଅଟେ ବିସ୍ମୟ, ମାନବ ଜୀବନ-
ତା'ଠାରୁ ରହସ୍ୟମୟ ଅଟେ ନାରୀ ମନ,
ସୀମାହୀନ କାମନା ବଳୟ
ନ ଅଟେ ସହଜ କେବେ
କରିବାକୁ ନାରୀମନ ଜୟ ।

'ପ୍ରୟୋଗି' ନାମରେ ଥିଲେ ନୀତିନିଷ୍ଠ ସଜ୍ଜନ ଜଣେ
ମଣ୍ଡିତ ସେ ହୋଇଥିଲେ ବିବିଧ ସୁଗୁଣେ,
ତାଙ୍କୁ ଦିନେ ନାରୀ ଏକ କରିଲା ପ୍ରଲୁବ୍ଧ
ଆକର୍ଷିତ ହେଲେ ସିଏ -
କାମାକୁଳ ନାରୀ ରୂପ ମୁଗ୍ଧ ।

ଢ଼ାଳିଲେ କାମାନାହୁତି ଲାସ୍ୟମୟୀ ଯୌବନ ଯଜ୍ଞରେ
ଅନୈତିକ କର୍ମ ପାଇଁ ଦେବାଭିଶାପରେ -
ପୁରୁଷରୁ ପାଲଟିଲେ ନାରୀ,
ଘେନି ରୂପ ହୋଇଗଲେ, ରୂପମୟୀ, ଲାବଣ୍ୟ କିଶୋରୀ ।

ଚପଳ ଚାହାଣୀ ଭରା କୁରଙ୍ଗୀ ନୟନ
ଅଧରେ ଲୋଟଇ ଲାସ୍ୟ ଚିବୁକେ କମ୍ପନ
ତୁଙ୍ଗିମ ବକ୍ଷୋଜ ଭରା ବିପୁଳ ସମ୍ଭାର
କାମନାର ତୃଷିତ ସାଗର ।

ଇନ୍ଦ୍ରଦେବ ଦେଖି ତାଙ୍କ ନାରୀ ରୂପ ଶୋଭା
କହିଲେ, ପ୍ରାୟୋଗୀ ଆଗୋ, ତୁମେ ମନ ଲୋଭା
ନାରୀର ସ୍ୱଭାବେ ତୁମେ କର ଆଚରଣ
ପରିଧାନ କର ଆଗୋ । ନାରୀର ଭୂଷଣ,
ତୋଳ ଗୋ ଅବଗୁଣ୍ଠନ, ମୁଖ ତୁମ ଲଜ୍ଜା ପାଟଳିମା
ନାଭିକେନ୍ଦ୍ରେ ଉତ୍ତରୀୟ
ଗୋପ୍ୟ କର ବକ୍ଷୋଜ ଗରିମା ।
ପଦଯୁଗ ପାଖେ ପାଖେ ରଖି,
ଚୁପି ଚୁପି ଚାଲ ଆଗୋ ।
ଋମ୍ ଝୁମ୍ ଛନ୍ଦ ତୋଳି ସଖି ।
ଏହା ଅଟେ ନାରୀ ଆଚରଣ
କର ଗୋ ବରଣ ।

•

"ବୟଂ ତଦ୍ୱଃ ସମ୍ରାଜ ଆ ବୃଣୀମହେ ପୁତ୍ରୋ
ନ ବହୁପାଯ୍ୟମ
ଅଶ୍ୟାମ ତଦା ଦିତ୍ୟା ଜୁହ୍ୱତୋ ହବିର୍ଯେନ
ବସ୍ୟୋଽନଶାମହୈ ।"

ମନ୍ତ୍ର ୬୬୫୧

ହେ ସର୍ବଶକ୍ତିମାନ୍ ଦେବଗଣ । ଆମେ ଆପଣଙ୍କର ସନ୍ତାନତୁଲ୍ୟ । ପିତାଙ୍କୁ ଯେପରି ପୁତ୍ର ଶ୍ରଦ୍ଧାର ସହିତ ଯାଚନା କରିଥାଏ ଆମେ ସେପରି ଆପଣଙ୍କ ପାଖରେ ଭକ୍ତି ଏବଂ ଶ୍ରଦ୍ଧାର ସହିତ, ସୁଖ ସମୃଦ୍ଧି ଯାଚନା କରୁଛୁ । ଆପଣ ଆମକୁ ଏପରି ସମ୍ପଦ ଦାନ କରନ୍ତୁ, ଯାହା ଆମର ସ୍ୱାର୍ଥ-ସିଦ୍ଧିର ପାଥେୟ ନହୋଇ, ବହୁ ଅଭାବ ପୀଡ଼ିତର ଦୁଃଖ ଦୂର କରିବାରେ ସହାୟକ ହେଉ ।

- ତେ ନୋ ଗୋପା ଅପାଚ୍ୟାସ୍ତ ଉଦକ୍ତ ଇତ୍ଥାନ୍ୟକ
  ପୁରସ୍ତାତ୍ସର୍ବୟା ବିଶା ।

ଋ.ସ. ୩ । ସୂ ୨୮ । ମନ୍ତ୍ର ୬୬୫୪

ହେ ଦେବଗଣ । ଆପଣ ଆମକୁ ନିଜର ସୁହୃଦ୍ ମାନଙ୍କ ସହିତ ପୂର୍ବ, ପଶ୍ଚିମ, ଉତ୍ତର, ଦକ୍ଷିଣ, ଊର୍ଦ୍ଧ୍ୱ ଓ ଅଧଃ, ସବୁ ଦିଗରୁ ସୁରକ୍ଷା ପ୍ରଦାନ କରନ୍ତୁ । ହେ ଆଦିତ୍ୟଗଣ । ଯଜ୍ଞରେ ଆମେ ଆପଣମାନଙ୍କୁ ହବିଃ ପ୍ରଦାନ କରୁଛୁ । ଆପଣଙ୍କଠାରୁ ସୁରକ୍ଷା ଓ ସମ୍ପତ୍ତି ଲାଭ କରି, ଆମେ ନିଜକୁ ଅତିବ ଭାଗ୍ୟବାନ ମନେକରୁ ।

# ଦେବ ବନ୍ଦନା

ଜଗତେ ସବୁଜୀବ ଅପତ୍ୟ ସ୍ନେହ
ଲଭିବା ପାଇଁ ଥାଏ ଅତୃପ୍ତ ମୋହ,
ସନ୍ତାନ ସୁଖଲାଭ କରିବା ପାଇଁ
ମାନବ ବ୍ୟାକୁଳିତ, ହେ ପ୍ରାଣ ସାଇଁ ।

ତା'କୋଳେ କଳି ଯେବେ ହୁଏ ପୁଷ୍ପିତ
ଆନନ୍ଦେ ତା'ହୃଦୟ ହୁଏ ମୋହିତ,
ସେ ମୋହ ମମତାରେ ଭୁଲଇ ସବୁ
ସନ୍ତାନ ସ୍ନେହ ବଶ ପରାଣ, ପ୍ରଭୁ ।

ପୁତ୍ର କନ୍ୟା ସକଳ ତା' ପ୍ରାଣଧନ
ନିଜର ସ୍ୱାର୍ଥ କରେ ସେ ବିସର୍ଜନ,
ପୂରଣ କରିଥାଏ ଯାଚନା ନିତି
ଲଭଇ ପରିତୋଷ ଆତ୍ମତୃପତି ।

ପରମ ପିତା ଆହେ ପରମେଶ୍ୱର
ତୁମ ସନ୍ତାନ ଆମେ ଏ ଚରାଚର,
ସନ୍ତାନ ବତ୍ସଳ ହେ କରୁ ଯାଚନା
ଧନ, ମାନ, ଆଶ୍ରୟ ଆମ ପ୍ରାର୍ଥନା ।
ଧନ ସହିତ ଦିଅ ଉଦାର ମନ
କରିବୁ ଅକାତରେ ଅପରେ ଦାନ,
ଆପଣା ସ୍ୱାର୍ଥସିଦ୍ଧି କରିବା ପାଇଁ
ମାଗୁନୁ ଧନ ଆମେ ପରମ ସାଇଁ ।

ଚଉଦିଗରୁ ଅଧଃ ଊର୍ଦ୍ଧ୍ୱରୁ ପ୍ରଭୁ
ସୁରକ୍ଷା ମିଳୁ ସର୍ବେ, ଅଭୟ ଲଭୁ,
ନିଜକୁ ଭାଗ୍ୟବାନ ମଣିବୁ ଆମେ
ଦେବ ଆଶିଷ ଲଭି ମର୍ତ୍ତ୍ୟ ଜୀବନେ
କରିବୁ ନିତି ନିତି ହବିଃ ଅର୍ପଣ
ହୁଅ ହେ ପରିତୁଷ୍ଟ ଆଦିତ୍ୟଗଣ ।

•

- ତ୍ୱଷ୍ଟୁର୍ଜାମାତରଂ ବୟମୀଶାନଂ ରାୟ ଈମହେ
  ସୁତାବନ୍ତୋ ବାୟୁଂ ଦ୍ୟୁମ୍ନା ଜନାସଃ ।

ମନ୍ତ୍ର ୬୬୨୬

ହେ ବାୟୁ ଦେବ ! ଆପଣ ତ୍ୱଷ୍ଟାଦେବଙ୍କ ଜାମାତା ଅଟନ୍ତି । ଯାହାଙ୍କୁ ଆଦିଦେବ ବୋଲି କୁହାଯାଏ । ସେ ମଧ୍ୟ ଦେବଶିଳ୍ପୀ । ଆପଣଙ୍କର ଶ୍ରେଷ୍ଠ ଧନଲାଭ କରିବା ପାଇଁ ଆମେ ପ୍ରାର୍ଥନା କରୁଛୁ । ଆପଣଙ୍କ କରୁଣାରୁ ଆମେ ଶ୍ରୀ ସମ୍ପତ୍ତିର ଅଧିକାରୀ ହେଉ ।

- ତ୍ୱାଂହି ସୁପ୍ସରସ୍ତମଂ ନୃଷଦନେଷୁ ହୂମହେ
  ଗ୍ରାବାଣଂ ନାଶ୍ୱପୃଷ୍ଠଂ ମଂହନା ।

ଋ.ସ. ୩ । ମ ୮ । ସୂ ୨୬ ।୬୬୨୮

ଶକ୍ତି ସମୃଦ୍ଧ ହେ ବାୟୁଦେବ । ଆପଣ ମହାନ୍ । ନିଜର ମହନୀୟତା ବଳରେ ଆପଣ ସର୍ବ ସ୍ଥଳରେ ବିଦ୍ୟମାନ ଅଟନ୍ତି । ସର୍ବମଙ୍ଗଳ କାମନା କରି ଆମେ ଆପଣଙ୍କୁ ଯଜ୍ଞସ୍ଥଳକୁ ଆବାହନ କରୁଛୁ ।

# ବାୟୁଦେବ (୧)

ତ୍ୱଷ୍ଟାଦେବ, ଆଦିଦେବ;
ଦେବତାଙ୍କ ଶିଳ୍ପୀରୂପେ ଗଣା,
କଳାମୟ ଅନନ୍ୟ ସର୍ଜନା ।
ସିଦ୍ଧହସ୍ତ ଅଟନ୍ତି ସେ...
ଦେବଗଣ ଦିବ୍ୟାସ୍ତ୍ର ନିର୍ମାଣେ,
ସୁବିଦିତ ସେ 'ସୁପାଣୀ' ନାମେ ।

ଜାମାତା ଅଟ ତାଙ୍କର
ବିଶ୍ୱପୂଜ୍ୟ ପ୍ରଭୁ ବାୟୁଦେବ,
ତୁମ ବିନା ସୃଷ୍ଟି ଅସମ୍ଭବ ।
ବିଶ୍ୱର ପାଳକ ତୁମେ -
ଅଟ ଏହି ବିଶ୍ୱରଜୀବନ,
ଏ'ସୃଷ୍ଟିର ଅପୂର୍ବ ବିଧାନ ।
ତୁମ ବିନା ସବୁ ଛାରଖାର,
ଉଜୁଡ଼ି ପଡ଼ିବ ଏଇ
ଶୋଭାମୟ ସର୍ଜନା ସମ୍ଭାର ।

ହେ ବାୟୁ ଦେବତା !
ଅଗ୍ନି ଉଦ୍ଦୀପକ ତୁମେ -
ଜ୍ୟୋତିର୍ମୟ କର ଦୀପ୍ତ ଶିଖା,
କର ତାକୁ ଉର୍ଦ୍ଧ୍ୱମୁଖୀ ଲେଲିହାନ
ଶିଖା ତାର ଟେକି,
ଅବାଧ ତାହାର ଗତି, ଉର୍ଦ୍ଧ୍ୱମୁଖେ
ଉଠେ ସେ ଉଚ୍ଛଳି ।
ହେ ବାୟୁ ଦେବତା !
ତୁମଠାରେ ପ୍ରଖରିତ ଶୋଷଣ ପିପାସା
ଏ ବିଶ୍ୱକୁ ଦିଅ ପୁଣି ଶାନ୍ତି ଶୀତଳତା
ଅଟ ଅଗ୍ରଗାମୀ ।
ମହନୀୟ ବନ୍ଦନୀୟ ହେ ଜୀବନ ସ୍ୱାମୀ ।

•

# ଅଦିତୀ ଦେବୀ

- ଅନର୍ବାଣୋ ହ୍ୟେଷାଂ ପନ୍ଥା ଆଦିତ୍ୟାନାମ୍
  ଅଦ୍‌ବଧାଃ ସନ୍ତି ପାୟବଃ ସୁଗେବୃଧଃ ।
- ଶମଗ୍ନିରଗ୍ନିଭିଃ କରଚ୍ଛଂ ନସ୍ତପତୁ ସୂର୍ଯ୍ୟଃ
  ଶଂ ବାତୋ ବାତ୍ୱରପା ଅପ ସ୍ରିଧଃ ।

ଋ.ସ. ୩ । ମ ୮ । ସୂ ୧୮ । ମନ୍ତ୍ର ୬୪୦୧, ୬୪୦୮

ହେ ଅଦିତୀ ଦେବୀ, ଆପଣଙ୍କ ପୁତ୍ର ଆଦିତ୍ୟଗଣ ମନୁଷ୍ୟ ମାନଙ୍କର ପାଳନ ପୋଷଣ କରନ୍ତି । ସେମାନଙ୍କର ଆଶ୍ରିତ ଦେବମାର୍ଗ, ହିଂସା ଓ ଛଳକପଟ ରହିତ ଏକ ପବିତ୍ର ପଥ । ଦେବତାମାନେ, ସମଗ୍ର ପ୍ରାଣୀ ଜଗତକୁ ରକ୍ଷା କରନ୍ତି । ଅଗ୍ନି, ସୂର୍ଯ୍ୟ, ଇନ୍ଦ୍ର ଓ ବାୟୁ ପ୍ରଭୃତି ଦେବଗଣ ଆମକୁ ସୁରକ୍ଷା ପ୍ରଦାନ କରନ୍ତି ଏବଂ ସୁଖମୟ ଜୀବନ ଦାନ କରିଥାନ୍ତି ।

ହେ ଅଦିତୀ ଦେବି ! ଆମେ କରୁଛୁ ପ୍ରାର୍ଥନା
ଆଦିତ୍ୟ ଗଣଙ୍କୁ ଆମେ କରୁ ଉପାସନା,
ତାଙ୍କ ପଥ, ହିଂସା, ଛଳ, କପଟ ରହିତ
ସଦ୍ ଗୁଣରେ ସିଏ ସର୍ବେ କରନ୍ତି ମଣ୍ଡିତ ।
ଆଦିତ୍ୟଙ୍କ ଆଶୀର୍ବାଦ ଲାଭ କରି ଆମେ
ପରମ ସନ୍ତୋଷ ଲଭୁ ମଙ୍ଗଳ କରମେ ।
ସେମାନେ ଅଟନ୍ତି ଭର୍ତ୍ତା, ଆନନ୍ଦ ଦାୟକ
ଦେଇଥାନ୍ତି ସୁଖଶାନ୍ତି, ସନ୍ତୋଷ ଅମାପ ।
ଆପଣଙ୍କ ସନ୍ତାନ ସେ, ମାତୃଗୁଣେ ଭରା
ହୃଦୟ ଅଟଇ ତାଙ୍କ, ଅମୃତ ପସରା ।
ଅଗ୍ନି, ସୂର୍ଯ୍ୟ, ବାୟୁ, ଇନ୍ଦ୍ର ଦେବଗଣ ଆଦି
ପ୍ରାଣ କର୍ତ୍ତା, ତ୍ରାଣକର୍ତ୍ତା, ସେ ଆଦି ଅନାଦି ।
ଶୁଭବୁଦ୍ଧି, ଶୁଭଚିନ୍ତା, ଶୁଭ ମନ ଧ୍ୟାନ,
ମାନବ ଜାତିକୁ ମିଳୁ ହେ ଆଦିତ୍ୟ ଗଣ ।
ମଙ୍ଗଳ ବିଧାନେ ସେତ ହେବେ ସଦା ବ୍ରତୀ
ପରମ ଶାନ୍ତି ସନ୍ତୋଷେ ଏ ମାନବ ଜାତି -
    ସେ ତୁମ ଆଶ୍ରିତ
ନକର ହେ କରୁଣା ବଞ୍ଚିତ ।

•

# ଏକ

ଏକ ଏବାଗ୍ନିର୍ବହୁଧା ସମିଦ୍ଧ
ଏକଃ ସୂର୍ୟ୍ୟୋ ବିଶ୍ୱମନୁ ପ୍ରଭୂତଃ ।
ଏକୈବୋଷାଃ ସର୍ବମିଦଂ ବି ଭାତ୍ୟେକଂ
ବା ଇଦଂ ବି ବଭୂବ ସର୍ବମ୍ ।

ଋ.ସଂ.୩ । ୮ ମନ୍ତ୍ର ୭୦୮୪

ଏକମାତ୍ର ଅଗ୍ନିଦେବ, ଏ ସଂସାରରେ ବହୁ ରୂପରେ ପ୍ରଜ୍ୱଳିତ ହୋଇଥାନ୍ତି । ସେହିପରି ଏକମାତ୍ର ସୂର୍ଯ୍ୟଦେବ ପୃଥିବୀକୁ ଆଲୋକିତ କରନ୍ତି । ପ୍ରଭାମୟୀ ଉଷା ଦେବୀ ଏକା ଏ' ସଂସାରକୁ ପ୍ରଭାମୟ କରନ୍ତି । ଏ ସବୁ ମଧ୍ୟ ମିଶି ଏକ ଅଟନ୍ତି ।

ଏକ ଏକ ଜଳବିନ୍ଦୁ ସୃଷ୍ଟିକରେ ଅସୀମ ସାଗର
ଏକ ଏକ ଧୂଳିକଣା ସୃଷ୍ଟିକରେ ସେ ମରୁ ପ୍ରାନ୍ତର,
ଏକ ଏକ ଦଣ୍ଡ ମିଶି ସୃଷ୍ଟି ହୁଏ ଦିବସ ରଜନୀ
ଏକ ଏକ ଦିନ ମିଶି ସୃଷ୍ଟି ହୁଏ ମାସ ବର୍ଷ ପୁଣି ।

ଏକମାତ୍ର ଅଗ୍ନିଦେବ ପ୍ରକାଶିତ ବିଭିନ୍ନ ରୂପରେ
ପ୍ରକଟିତ ହୋଇଥାନ୍ତି ଅନନ୍ତ ଏ' ଦ୍ୟାବାପୃଥିବୀରେ,
ଏକମାତ୍ର ସୂର୍ଯ୍ୟଦେବ ତ୍ରିଭୁବନ ଆଲୋକିତ କରି
ପ୍ରକୃତିରେ ପ୍ରାଣସତ୍ତା ସଞ୍ଚାରନ୍ତି ଦିଗନ୍ତ ବିସ୍ତାରି ।

ଏକ ଉଷାଦେବୀ ଆସି ହରିଥାନ୍ତି ଘନ ଅନ୍ଧକାର
ପ୍ରଭାମୟୀ କରିଥାନ୍ତି, ସୂର୍ଯ୍ୟଦେବ ପଥ ପରିଷ୍କାର,
ପ୍ରାଣେ ପ୍ରାଣେ ଭରିଥାନ୍ତି ଜୀବନର ବାର୍ତ୍ତା ଶୁଭମୟ
ଖେଳିଯାଏ ବିଶ୍ୱ ବୁକେ ଚଞ୍ଚଳତା ଦୀପ୍ତ ପ୍ରାଣମୟ ।

ସୃଷ୍ଟିର ଏକ୍ରୁଡ଼ିଶାଳ ଏକମାତ୍ର ଆକାଶ ଅଗଣେ
ସର୍ଜନାର ମନ୍ତ୍ରପାଠ ହୋଇଥାଏ ସୃଷ୍ଟି ପ୍ରକରଣେ,
ସୂର୍ଯ୍ୟ ଚନ୍ଦ୍ର ତାରାଗଣ, ତା' ବୁକୁରେ କରନ୍ତି ବିହାର
ମରୁଦ୍‌ଗଣ ଆଶ୍ରିଥାନ୍ତି ଦିଗହଜା ତା'ର ଶୂନ୍ୟପୁର ।

ଏକରୁ ଅନେକ
ପୁଣି ଅନେକରୁ ଏକ ।

•

- ମାତା ରୁଦ୍ରାଣାଂ ଦୁହିତା ବସୂନାଂ
  ସ୍ୱସାଦିତ୍ୟାନାମମୃତସ୍ୟ ନାଭିଃ,
  ପ୍ର ନୁ ବୋଚଂ ଚିକିତୁଷେ ଜନାୟ
  ମା ଗାମନାଗାମଦିତିଂ ବଧିଷ୍ଟ

ମନ୍ତ୍ର ୭୬୫୩

ହେ ବିଜ୍ଞ ମନୁଷ୍ୟଗଣ । ଗାଈ ଆମର ମାତୃସ୍ୱରୂପା ବନ୍ଦନୀୟା । ସେ ହେଉଛନ୍ତି ରୁଦ୍ର ଦେବଙ୍କର ମାତା । ବସୁମାନଙ୍କର କନ୍ୟା ଏବଂ ଆଦିତ୍ୟ ମାନଙ୍କର ଭଉଣୀ । ସେ ଅମୃତର ମୂଳ ଉତ୍ସ । ଗାଈମାନଙ୍କୁ ବିନାଶ କର ନାହିଁ ।

('ଗାଈ' ଶବ୍ଦର ଅର୍ଥ ଗୋ ସମ୍ପଦ ବ୍ୟତୀତ, ସୂର୍ଯ୍ୟଙ୍କର କିରଣ ଏବଂ ଦିବ୍ୟ ବିଦ୍ୟା ଅର୍ଥରେ ପ୍ରୟୋଗ କରାଯାଏ । ଲୌକିକ ଅର୍ଥ ବ୍ୟତୀତ ଅନ୍ୟ ଦୁଇଟିଯାକ ଅର୍ଥରେ ମନ୍ତ୍ରଟିକୁ ଅର୍ଥାନ୍ତର କରାଯାଇ ପାରିବ ।)

- "ବଚୋବିଦଂ ବାଚମୁଦୀରୟନ୍ତୀଂ
  ବିଶ୍ୱାଭିର୍ଧୀଭିରୁପତିଷ୍ଠମାନାମ୍ ।
  ଦେବୀଂ ଦେବେଭ୍ୟଃ ପର୍ୟ୍ୟେୟୁଷୀଂ
  ଗାମା ମାବୃକ୍ତ ମର୍ତ୍ତ୍ୟୋ ଦଭ୍ରଚେତାଃ ।"

ଋ.ସ. ୩ । ମ ୮ । ସୂ ୧୦୨ । ମନ୍ତ୍ର ୭୬୫୪

ଦିବ୍ୟ ବିଦ୍ୟା (ଗାଈ) ସର୍ବଦା ମଣିଷର ବାଣୀକୁ ତେଜୋଦୀପ୍ତ କରିଥାଏ । ଏହା ଶୁଭକର୍ମ ସମ୍ପାଦନ ଦିଗରେ ପ୍ରେରଣାର ଉତ୍ସ । ମଣିଷ ଦିବ୍ୟ ବିଦ୍ୟା ବିଭୂତି ଲାଭ କଲେ ତା' ମଧ୍ୟରେ ଦେବଭାବ ସୃଷ୍ଟି ହୋଇଥାଏ । ଏହାର ବହୁ ବିଧ ବର୍ଣ୍ଣନା ମିଳେ । ଏହି ଜ୍ଞାନମୟ ବିଦ୍ୟାକୁ ଅବମାନନା କରିବା ଉଚିତ ନୁହେଁ । ପ୍ରତ୍ୟେକ ବ୍ୟକ୍ତି ଏହି ବାଙ୍ମୟ ବିଭୂତିର ଅଧିକାରୀ ହୋଇ ଜୀବନକୁ ସାର୍ଥକ କରିବା ଉଚିତ୍ ।

## ଗାଈ

ଗୋମାତା ଆମର 'ଗାଈ'
'ଦିବ୍ୟବିଦ୍ୟା' ଗାଈ ନାମେ ଖ୍ୟାତ,
ସୂର୍ଯ୍ୟଙ୍କ କିରଣ 'ଗାଈ' ଏହା ମଧ୍ୟ
ଶାସ୍ତ୍ରାର୍ଥ ସମ୍ମତ ।
ଏଥିରେ ନିହିତ ଅଛି ଦେବଭାବ
ଦିବ୍ୟ ଉଚ୍ଚାରଣ,
ଏହା ଅଟେ ପୂର୍ଣ୍ଣକୁମ୍ଭ, ମହାଭାବ ଅମୃତ ସମ ।
ଗୋ ମାତା ଅଟନ୍ତି ଆମ ମାତୃସମା ଅଗ୍ରପୂଜନୀୟା
ରୁଦ୍ରଗଣ ମାତା ସେତ ଦେବ ବନ୍ଦନୀୟା ।
ବସୁ ପୁତ୍ରୀ ଆଦିତ୍ୟ ଭଗିନୀ,
ଅମୃତର ଆଦି ଉତ୍ସ, ସୁଧା ସ୍ରୋତସ୍ୱିନୀ ।
ବିନାଶ ନକର ଗାଈ,
ସେ ତୁମର ଶିରୀ ଓ ସମୃଦ୍ଧି
ଅବଜ୍ଞା ନକର ବିଦ୍ୟା ସେ ଦିବ୍ୟ ବିଭୂତି ।

ବିଦ୍ୟାର ବିପୁଳ ଦାନେ
ତେଜୋମୟ ହୋଇଥାଏ ବାଣୀ,
ବାଣୀର ବିପୁଳାୟନେ
ହୁଏ ତାହା ତେଜୋମୟ ପୁଣି ।
ଆମେ ତାର ଅଟୁ ଅଧିକାରୀ,
ଆସଇ ଆମରି ପାଶେ
ଦିବ୍ୟତାର ସମ୍ଭାର ବିତରି ।

ଜଣାଅ ଜୀବନେ ତା'ରେ
ଭକ୍ତିଭରା ବିନମ୍ର ସ୍ୱାଗତ,
ତା' ଅଟେ ଅମୃତ ଧାରା
ଏଥୁ କେବେ ନହୁଅ ବଞ୍ଚିତ ।
ଦିବ୍ୟଶକ୍ତି ଗାଈ,
ସେ ମହିମମୟୀ ।

•

• ପ୍ର ହଂସାସସ୍ତୃପଲଂ ମନ୍ୟୁମଚ୍ଛାମାଦସ୍ତଂ ବୃଷଗଣା ଆୟାସୁଃ
ଅଙ୍ଗୂଷ୍ୟଂ୧ ପବମାନଂ ସଖାୟୋ ଦୁର୍ମର୍ଷଂ ସାକଂ ପ୍ର ବଦନ୍ତି ବାଣମ୍ ।

ମନ୍ତ୍ର ୮୫୬୫

ବିଚାରଶୀଳ ବ୍ୟକ୍ତିର ଆଚରଣ ହଂସ ତୁଲ୍ୟ । ସେ ଦୁଃଖାବେଗରେ ବ୍ୟଥିତ ହେଲେ, ଶାନ୍ତି ଓ ତୁଷ୍ଟି ପ୍ରଦାନ କରୁଥିବା 'ସୋମପ୍ରବାହ', ଯଜ୍ଞ ପୀଠରେ ପ୍ରବେଶ କରି, ତାଙ୍କର ଦୁଃଖ ମୋଚନ କରିଥାଏ । ସୋମ ପ୍ରବାହ, ଶୂନ୍ୟ ମଣ୍ଡଳରେ ପବନ ସହିତ ମିଶି ରହିଅଛି । ବାଦ୍ୟ ମାଦନ କରି ଏହି ଅମୃତ ପ୍ରବାହକୁ ଆହ୍ଲାଦିତ କରାଯାଏ । ମନ୍ତ୍ର ଧ୍ୱନି ଏବଂ ବାଦ୍ୟ ଧ୍ୱନି ମିଶି ଯେଉଁ ତରଙ୍ଗ ସୃଷ୍ଟି ହୁଏ, ତାହା ଆକାଶମାର୍ଗକୁ ପ୍ଲାବିତ କରେ ।

• ଏବା ପବସ୍ୱ ମଦିରୋ ମଦାୟୋ -
ଦଗ୍ରାଭସ୍ୟ ନମୟନ୍ବଧସ୍ନୈଃ,
ପରି ବର୍ଣ୍ଣଂ ଭରମାଣୋ ରୁଶନ୍ତଂ
ଗବ୍ୟୁର୍ନୋ ଅର୍ଷ ପରି ସୋମ ସିକ୍ତଃ ।

ଋ.ସ. ୪ । ମ ୯ । ସୂ ୯୭ । ମନ୍ତ୍ର ୮୫୭୨

ଆକାଶର ମେଘମାଳା ସୋମପ୍ରବାହ ଦ୍ୱାରା ଆଚ୍ଛାଦିତ । ହେ ସୋମଦେବ ! ଆପଣ ମେଘକୁ ବର୍ଷଣଶୀଳ କରନ୍ତୁ । ଶ୍ୱେତବର୍ଣ୍ଣ ଧାରଣ କରି, ଆପଣ ଜଳରାଶି ସହିତ ଗୋ ଦୁଗ୍ଧ ପରି ସ୍ରବିତ ହୁଅନ୍ତୁ ।

ଦିନରେ 'ସୋମସ୍ରୋତ' ହିରଣ୍ୟ ରୂପ ଧାରଣ କରିଥାଏ ।ଏବଂ ରାତ୍ରିରେ ଚନ୍ଦ୍ର କିରଣରେ ରଜତ ଆଭା ଧାରଣ କରେ । ବନସ୍ପତି ସଂଯୋଗରେ ଦିନର ହିରଣ୍ୟ ରୂପ ସବୁଜାଭ ହୁଏ ।

# ଧ୍ୱନି ଉପଚାର

ଦୀର୍ଘ ଅତୀତର ସେଇ
ବୈଦିକ ଯୁଗରେ
ଧ୍ୱନି ବିଜ୍ଞାନ ପ୍ରୟୋଗ
ଥିଲା ଏ ଭୂମିରେ ।
ବାଦ୍ୟ ଧ୍ୱନି ସାଥେ ହୁଏ ମନ୍ତ୍ର ଉଚ୍ଚାରଣ
ଧ୍ୱନି ଧାରା ସଙ୍ଗମରେ ବାୟୁ ବିଶୋଧନ
ହୁଏ ବାରବାର,
ସୋମରସ ଶୋଧନରେ ଧ୍ୱନି ଉପଚାର ।

ମୁନିକଣ୍ଠ ନିସୃତ ସେ ଧ୍ୱନି ଉଚ୍ଚାରଣ
ଅନ୍ତରିକ୍ଷୁ କରୁଥିଲା ସୋମ ଆକର୍ଷଣ,
ସୋମ ସ୍ରୋତ ଝରୁଥାଏ ବ୍ୟୋମେ
ଦିବାଲୋକେ ହିରଣ୍ୟ ବରଣେ ।
ବନସ୍ପତି ସ୍ପର୍ଶେ ସବୁଜାଭ,
ସଂଧ୍ୟାଗମେ ନେଇଥାଏ
ସେ ରଜତ ରୂପ ।

ବାଦ୍ୟ ଯନ୍ତ୍ର ମିଶ୍ରିତ ସେ
ମୃଦୁଳ ଝଙ୍କାର
ବିତାନ ବୁକୁରେ ଝରେ
ହୋଇ ଏକାକାର,
ସୋମ ସ୍ରୋତ ମିଶ୍ରିତ ସେ ବାଦଲ ବୁକୁରୁ
ଜଳଧାରା ବର୍ଷି ଥାଏ ବ୍ୟାପ୍ତ ଆକାଶରୁ
ଦୁଗ୍ଧ ଧାର ସମ,
ଆହ୍ଲାଦିତ, ଉନ୍ମାଦିତ ପ୍ରକୃତି ପରମ ।
ଧ୍ୱନିମୟ ଏ ବିଶ୍ୱ ବ୍ରହ୍ମାଣ୍ଡ
ଏହା ଅଟେ ସୃଜନର ଛନ୍ଦ,
ଭୂମା ଭୂମି ସର୍ବେ ଉଲ୍ଲସିତ ।

•

- ଇନ୍ଦୁ ପବିଷ୍ଟ ଚେତନଃ ପ୍ରିୟଃ କବୀନାଂ ମତୀ
ସୃଜଦଶ୍ୱଂ ରଥୀରିବ ।

ମନ୍ତ୍ର ୮୧୮୮

ରଥ ଆରୋହଣକାରୀ ଯେପରି ଅଶ୍ୱମାନଙ୍କୁ ଲକ୍ଷ୍ୟସ୍ଥଳକୁ ନେଇଯାନ୍ତି, ସେହିପରି ଏହି ଚେତନା ଶକ୍ତି ଯୁକ୍ତ ସୋମ ପ୍ରବାହ, ଜଗତର ସୂକ୍ଷ୍ମଦର୍ଶୀ ମୁନିଋଷିମାନଙ୍କ ଦ୍ୱାରା ସୁନିୟନ୍ତ୍ରିତ ହୋଇ, ପ୍ରକୃତି ବୁକୁରେ ତରଙ୍ଗିତ ହୋଇଥାଏ । ଅନ୍ତରିକ୍ଷର ସୋମପ୍ରବାହ ପ୍ରାକୃତିକ ସୋମରସର ଉତ୍ସ ।

- ରାୟଃ ସମୁଦ୍ରାଂଶ୍ଚତୁରୋଽସ୍ମଭ୍ୟଂ ସୋମ ବିଶ୍ୱତ
ଆ ପବସ୍ୱ ସହସ୍ରିଣଃ ।

ମନ୍ତ୍ର ୭୯୪୮

ହେ ସୋମଦେବ ! ଆପଣ ସହସ୍ର ଧାରାରେ ପ୍ରବାହିତ ହୋଇ ଆମ ମାନଙ୍କୁ ଐଶ୍ୱର୍ଯ୍ୟର ଚାରି ସମୁଦ୍ର, ଯଥା : ଧର୍ମ, ଅର୍ଥ, କାମ, ମୋକ୍ଷ ପ୍ରଦାନ କରନ୍ତୁ ।

- ପରି ଧାମାନି ଯାନି ତେ ତ୍ୱଂ ସୋମାସି ବିଶ୍ୱତଃ
ପବମାନ ଋତୁଭିଃକବେ ।

ମନ୍ତ୍ର ୮୨୪୧

- ଯ ଉଗ୍ରେଭ୍ୟଶ୍ଚିଦୋଜୀୟାଞ୍ଛୂରେଭ୍ୟଶ୍ଚିଚ୍ଛୂରତରଃ
ଭୂରିଦାଭ୍ୟଶ୍ଚିନ୍ମଂହୀୟାନ୍ ।

ଉ.ସଂ୪ । ମ୯ । ସୂ୬୭ ମନ୍ତ୍ର ୮୨୫୫

ହେ ମହାନ୍ ସୋମଦେବ ! ଏହି ବିଶ୍ୱରେ ଋତୁଚକ୍ର ଅନୁସାରେ ଆପଣଙ୍କ ସ୍ଥାନ ନିରୂପିତ ଅଟେ । ଋତୁ ଅନୁସାରେ ସୋମପ୍ରବାହ ଭିନ୍ନ ଅଟେ ।

ସୋମଦେବ ପରାକ୍ରମୀମାନଙ୍କ ମଧ୍ୟରେ ମହାପରାକ୍ରମୀ । ଶୂରବୀରମାନଙ୍କ ମଧ୍ୟରେ ନେତୃସ୍ଥାନୀୟ । ଦାନପଣରେ ମହାଦାନୀ ଅଟନ୍ତି । ଏପରି ସର୍ବଗୁଣସମ୍ପନ୍ନ, ସର୍ବଶକ୍ତିସମ୍ପନ୍ନ ହେ ସୋମଦେବ ! ଆମେ ଆପଣଙ୍କ ଶୁଭାଶିଷ କାମନାକରୁ ।

# ଅନ୍ତରିକ୍ଷୀୟ
# ସୋମପ୍ରବାହ

ଚେତନାସମ୍ପନ୍ନ ସୂକ୍ଷ୍ମ ସୋମର ପ୍ରବାହ
ସୂର୍ଯ୍ୟରଶ୍ମିସମ ତାହା ବ୍ୟାପ୍ତ ତ୍ରିଭୁବନେ,
ପରିଶୁଦ୍ଧ ହୋଇଥାଏ ମନ୍ତ୍ର ସ୍ତୁତି ପାଠେ
ଦିବ୍ୟ ଦ୍ରଷ୍ଟା ମୁନିଋଷି ମଧୁ ମନ୍ତ୍ର ଗାନେ ।

ବ୍ରହ୍ମ ଚେତନାର ଅଂଶ ସ୍ୱରୂପ ଅଟଇ
ବିଶ୍ୱମୁଖୀ ହୁଏ ସେହି ସୂକ୍ଷ୍ମ ସୋମଧାରା,
ପ୍ରକୃତି ଚକ୍ର ଶରୀର ମନରେ ପ୍ରବେଶି
ବିଶ୍ୱ ଜୀବନରେ ଢ଼ାଳେ ଅମୃତ ଅସରା ।

ତତ୍ତ୍ୱଦର୍ଶୀ କବି ମୁନି ଋଷି ଦାର୍ଶନିକ
ଭାବ ବାଣୀ ବିଚାରରେ କରି ତରଙ୍ଗିତ,
ଚେତନା ସ୍ୱରୂପ ସୋମ ସୁଧା ବିତରଣ
କରିଥାନ୍ତି ଏ ଜଗତବୁକେ ଅବିରତ ।

ଚାରି ଐଶ୍ୱର୍ଯ୍ୟସମୃଦ୍ଧ, ଚାରି ପୁରୁଷାର୍ଥ
ଧର୍ମ, ଅର୍ଥ, କାମ, ମୋକ୍ଷ ପଥ ଦିଅ ଖୋଲି,
ପାଳନ କରିବା ପାଇଁ ମାନବର ଧର୍ମ
ଜୀବନେ ସମୃଦ୍ଧିପଥ ଦିଅ ତୁମେ ଖୋଲି ।

ସୋମଶକ୍ତି ପ୍ରଭାବରେ ଭିନ୍ନ ରୂପ ନେଇ
ପ୍ରକୃତିର ଋତୁଚକ୍ର ହୁଏ ପ୍ରଭାବିତ,
ପର୍ଯ୍ୟାବରଣରେ ଘଟେ ନବ ସଂଘଟନ
ତା' ମଧ୍ୟରେ ଋତୁମୟୀ ବାହେ ଦିବ୍ୟ ସ୍ରୋତ ।

ହେ ମହାନ୍ ସୋମଦେବ ! କରୁଛୁ ପ୍ରାର୍ଥନା
ଶୂର, ବୀର, ମହାଦାନୀ, ମହା ପରାକ୍ରମୀ,
କର ଶତ୍ରୁନାଶ, ଦିଅ ବଳପରାକ୍ରମ
ପୁତ୍ର, ପୌତ୍ର, ମିତ୍ରେ ଅନ୍ନଦାନ କର ପୁଣି ।
ଶାନ୍ତହେଉ ଏ ବିଶ୍ୱଜୀବନ,
ଶୁଭାଶିଷ ଦିଅ ଦେବସୋମ ।

•

- "ତମୀଂ ହିନ୍ୱନ୍ତ୍ୟଗ୍ରୁବୋ ଧମନ୍ତି ବାକୁରଂ ଦୃତିମ୍
ତ୍ରିଧାତୁ ବାରଣ ମଧୁ ।"

ମନ୍ତ୍ର ୭୬୯୮

- "ଯଃ ସୋମଃ କଲଶେଷ୍ୱାଂ ଅନ୍ତଃ ପବିତ୍ର ଆହିତଃ
ତମିନ୍ଦୁଃ ପରି ଷସ୍ୱଜେ ।"

ଋ.ସଂ ୪ ।ମନ୍ତ୍ର ୭୮୦୦

ଅଙ୍ଗୁଳିର ଚାପ ପ୍ରୟୋଗ ଦ୍ୱାରା, ଏହି ଶକ୍ତିଶାଳୀ ସୋମରସକୁ ଛେଚା ହୋଇଥିବା ସୋମଲତା ପତ୍ରରୁ ସଂଗ୍ରହ କରାଯାଏ । ଏହା ଅତ୍ୟନ୍ତ ପୋଷଣ ଶକ୍ତି ସମ୍ପନ୍ନ ରସ । ଏହା ମନରେ ଶାନ୍ତି ପ୍ରଦାନ କରିବା ସହିତ, ମନ, ଶରୀର ଓ ବୁଦ୍ଧିକୁ ସମୃଦ୍ଧ ତଥା ଶକ୍ତିଶାଳୀ କରିଥାଏ ।

କଳଶସ୍ଥିତ ପବିତ୍ର ସୋମରସରେ ଚନ୍ଦ୍ରଙ୍କର ସମଗ୍ରଗୁଣର ସଂଚାର ହୋଇଥାଏ ।

ବୃଷ୍ଟିଂ ଦିବଃ ପରିସ୍ରବ ଦ୍ୟୁମ୍ନଂ ପୃଥିବ୍ୟା ଅଧି
ସହୋ ନଃ ସୋମ ପୃତ୍ସୁ ଧାଃ ।

ଋ.ସଂ.୪ । ମ୯ । ସୂ୮ । ମନ୍ତ୍ର ୭୭୬୭

ହେ ସୋମଦେବ ! ଆପଣ ଆକାଶ ମଣ୍ଡଳରେ ପରିବ୍ୟାପ୍ତ । ସେହି ଅନ୍ତରିକ୍ଷରୁ ଆପଣ ପୃଥିବୀ ଉପରେ ଶୁଭଦୃଷ୍ଟି ପକାନ୍ତୁ । ପୃଥିବୀରେ ପୋଷକ ରସ ଉତ୍ପନ୍ନ ହେବାରେ ସହାୟକ ହୁଅନ୍ତୁ । ପ୍ରତିକୂଳ ପରିସ୍ଥିତି ସହିତ ସଂଘର୍ଷ କରିବାର ଶକ୍ତି ଆପଣ ଆମକୁ ପ୍ରଦାନ କରନ୍ତୁ ।

ଯଜୁର୍ବେଦ ସଂହିତାର ୧୯ ଅଧ୍ୟାୟ ଏବଂ ମନ୍ତ୍ର ୧୦୫୯ରେ ମଧ୍ୟ 'ସୋମଶକ୍ତି' ସୂଚନା ମିଳେ ।

"ଯସ୍ତେ ରସଃ ସମ୍ଭୃତଽଓଷଧୀଷ୍ୱୁ
ସୋମସ୍ୟ ଶୁଷ୍ମଃ ସୁରୟା ସୁତସ୍ୟ,
ତେନ ଜିନ୍ୱ ଯଜମାନଂ ମଦେନ
ସରସ୍ୱତୀମଶ୍ୱିନାବିନ୍ଦ୍ର ମଗ୍ନିମ୍ ।"

ହେ ସୋମରସ ! ତୁମେ ଔଷଧୀୟ ରସ ଭଣ୍ଡାର ଓ ତୀକ୍ଷ୍ଣ ଔଷଧରସ ଅଟ । ତୁମ ମଧ୍ୟରେ ପୋଷକ ଶକ୍ତି ଭରିରହିଛି । ତୁମର ଏହି ଆନନ୍ଦଦାୟକ ରସ ଦ୍ୱାରା ଦେବୀ ସରସ୍ୱତୀ, ଅଶ୍ୱିନୀକୁମାର ଦେବଦ୍ୱୟ ଓ ଅଗ୍ନିଦେବ ପ୍ରଭୃତି ସନ୍ତୁଷ୍ଟ ହୁଅନ୍ତି ।

# ପ୍ରାକୃତିକ ସୋମରସ

ସର୍ଜ୍ଜନାର ପ୍ରାଣ ପ୍ରକ୍ରିୟାକୁ
ସଂଚାଳିତ କରିଥାଏ, ଦିବ୍ୟସୋମ ଶକ୍ତିର ପ୍ରବାହ,
ଅନ୍ତରିକ୍ଷେ ପ୍ରବାହିତ ଏହା -
ସୂର୍ଯ୍ୟଙ୍କର ଊର୍ଜଃ ଚକ୍ର କରି ସଂଚାଳନ
ରବି ଶଶି କିରଣରେ ବିସ୍ତାରିତ ତାହା ।

ଅନ୍ତରିକ୍ଷରୁ ପ୍ରକୃତି ଜୀବ ଜଗତକୁ
ପୋଷଣ ପ୍ରବାହ ବାହି, ପୁଷ୍ଟ କରେ ତାକୁ,
ପ୍ରକୃତିଯଜ୍ଞର ଏହା ମୁଖ୍ୟ ଉପାଦାନ
ଦିବ୍ୟାକାଶୁ ସୋମ ସୁଧା ସିକ୍ତ ଏ ଭୁବନ ।

ତା'ପାଇଁ ସମ୍ଭବ ବିଶ୍ୱେ ଜୀବନ ସଂଚାର
ବିପୁଳ ଶ୍ୟାମ ସମ୍ପଦ ବ୍ୟାପ୍ତ ପ୍ରକୃତିର,
ଦିବ୍ୟ ସୋମ ଶକ୍ତିରସ ବିନା,
ଐଶ୍ୱର୍ଯ୍ୟ ବରଣା ବିଶ୍ୱ ରିକ୍ତ ଅଟେ ସିନା ।
ସୋମଲତା ମାତାସମ ଶାନ୍ତି ପ୍ରଦାୟିନୀ
ସେ ପରମ ଆନନ୍ଦ ଦାୟିନୀ ।

ମହାକାଶ ସୋମ ପ୍ରବାହରୁ
ବୀଜଶକ୍ତି ଆସି ହେଲା ସଂଚାରିତ
ପ୍ରକୃତି ଜଠରେ,
ସୋମଲତା ହେଲା ସୃଷ୍ଟି ବନ ପ୍ରକୃତିରେ ।
ଉତ୍ତୁଙ୍ଗ ପର୍ବତ ଶିଖେ ହେଲା ତା'ର ସୃଷ୍ଟି
ବିଶ୍ୱ ଜୀବନେ କରିତା' ମଧୁରସ ବୃଷ୍ଟି,
ଔଷଧୀୟ ଗୁଣେ ତାହା ଭରା
ପୋଷକ ଉପାଦାନରେ, ତା' ଶରୀର ଗଢ଼ା ।
ଅପୂର୍ବ ଆନନ୍ଦ ଦାନ କରିଥାଏ ଏହା
ସୋମଯଜ୍ଞାହୁତି ଦେବେ କରିଥାନ୍ତି ସ୍ୱାହା ।
ଉଦ୍ଦାମ ଶକ୍ତି ପ୍ରବାହ ରୋଗ ନିବାରକ
ଚିରଶାନ୍ତି ସୁଧା ପ୍ରଦାୟକ ।
ଅମୃତ ଭଣ୍ଡାର,
ପ୍ରକୃତିର ଅପୂର୍ବ ସମ୍ଭାର ।

•

- ଅକ୍ଷୈର୍ମା ଦୀବ୍ୟଃ କୃଷିମିତ୍କୃଷସ୍ୱ ବିତ୍ତେ ରମସ୍ୱ ବହୁ ମନ୍ୟମାନଃ
  ତତ୍ରଗାବଃ କିତବ ତତ୍ର ଜାୟା ତନ୍ମେ ବିଚଷ୍ଟେ ସବିତାୟମର୍ଯ୍ୟଃ

ଋ.ସଂ. ୪ । ସୂ ୩୪ । ମନ୍ତ୍ର ୯୧୪୯

ହେ ଅକ୍ଷକ୍ରୀଡ଼ା ପ୍ରେମି ! ଜୀବନରେ କେବେହେଲେ ଜୁଆ ଖେଳନାହିଁ । ଏହା ଅତ୍ୟନ୍ତ ହାନିକାରକ । କୃଷିକର୍ମ କରି ସେଥିରୁ ମିଳୁଥିବା ଧନରେ ନିଜକୁ ସନ୍ତୁଷ୍ଟ ରଖ । ଏହା ତୁମର ସୁଖ ସମୃଦ୍ଧିର କାରଣ ହେବ । ସ୍ତ୍ରୀ ଓ ଗୋ ସମ୍ପଦ ଲାଭ କରି ଆନନ୍ଦରେ ରହିବ । ପ୍ରଭୁ ସବିତା ଦେବ, ଏହି ସତ୍‌ପରାମର୍ଶ ଆମ୍ଭମାନଙ୍କୁ ଦେଇଛନ୍ତି ।

- ନ ମା ମିମେଥ ନଜିହୀଳ ଏଷା ଶିବା ସଖିଭ୍ୟ ଉତ ମହ୍ୟମାସୀତ
  ଅକ୍ଷ୍ୟସ୍ୟାହମେକପରସ୍ୟ ହେତୋରନୁବ୍ରତାମପ ଜାୟାମରୋଧମ୍ ।

ଋ.ସଂ. ୪ । ଅକ୍ଷକିତବସୂକ୍ତ-୩୪ । ମନ୍ତ୍ର ୯୧୩୮

ହେ ଜୁଆପ୍ରେମି ! ମୋର ସ୍ତ୍ରୀ ଅତ୍ୟନ୍ତ ଅନୁଗତ ଓ ସେବାଶୀଳା । ସେ ମଧ୍ୟ ସୌନ୍ଦର୍ଯ୍ୟମୟୀ । ସେ ମୋତେ କେବେହେଁ ଅସନ୍ତୁଷ୍ଟ କରି ନଥାଏ । ସେ ସର୍ବଦା ଆତ୍ମୀୟ ସ୍ୱଜନ ଓ ବନ୍ଧୁ ପରିଜନଙ୍କ ସେବାରେ ତତ୍ପରଥାଏ । ଅତି ପରିତାପର କଥା, ଆଜି ମୋ ପ୍ରିୟ ପତ୍ନୀକୁ ଅକ୍ଷକ୍ରୀଡ଼ା ମୋଠାରୁ ଛଡ଼ାଇ ନେଇଛି ।

- ଜାୟା ତପ୍ୟତେ କିତବସ୍ୟହୀନା, ମାତା ପୁତ୍ରସ୍ୟ ଚରତଃ କ୍ୱ ସିତ୍
  ଋଣାବା ବିଭ୍ୟଦ୍ଧନମିଚ୍ଛମାନୋଽନ୍ୟେଷାମସ୍ତମୁପ ନକ୍ତମେତି ।
- ସ୍ତ୍ରୀୟଂ ଦୃଷ୍ଟାୟ କିତବଂ ତତାପାନ୍ୟେଷାଂ ଜାୟାଂ ସୁକୃତଂ ଚ ଯୋନିମ୍
  ପୂର୍ବାହ୍ନେ ଅଶ୍ୱାନ୍ୟୁୟଜେ ହି ବଭ୍ରୂନ୍ତସୋ ଅଗ୍ନେରନ୍ତେ ବୃଷଳଃ ପପାଦ ।

ମନ୍ତ୍ର ୯୧୪୬, ୯୧୪୭

ଜୁଆଡ଼ୀର ପରିତ୍ୟକ୍ତା ସ୍ତ୍ରୀ ଦୁଃଖରେ କାଳ ଯାପନ କରେ । ସେ ପୁତ୍ର ସନ୍ତାନ ବିଚ୍ଛେଦରେ ବିଷାଦଗ୍ରସ୍ତ ରହେ । ଋଣଗ୍ରସ୍ତ ଜୁଆଡ଼ୀ ଭୟରେ ଆତ୍ମଗୋପନ କରିବାକୁ ରାତ୍ରିରେ ପର ପିଣ୍ଡାରେ ଆଶ୍ରୟ ନିଏ । ଅନ୍ୟର ସୁଖ ସୌଭାଗ୍ୟ ଓ ସ୍ତ୍ରୀମାନଙ୍କୁ ଦେଖି, ନିଜ ଦୁଃଖିନୀ ପତ୍ନୀ ପାଇଁ ବ୍ୟଥିତ ହୁଏ । ଅଥଚ ସକାଳ ହେଲାକ୍ଷଣି, ସବୁକଥା ଭୁଲିଯାଇ ପୁଣି ପଶାଖେଳରେ ବସିଯାଏ । ଖେଳ ଶେଷରେ ନିଜର ପିନ୍ଧାବସ୍ତ୍ର ହରାଇ ଦାଣ୍ଡରେ ଚାଲିପାରେ ନାହିଁ । ଶୀତବେଳେ ସଙ୍କୋଚରେ ନିଆଁ ପାଖରେ ବସି ଶୀତ କଟାଏ ।
ବି.ଦ୍ର. ମହାଭାରତ ଯୁଗରେ ଅକ୍ଷକ୍ରୀଡ଼ା ଅବାଧ ଥିଲା ।

# ଦ୍ୟୂତକ୍ରୀଡ଼ା

ଏ ଭାରତେ ଥିଲା ଦିନେ ରାଜ ପରମ୍ପରା
ସମାଜରେ ଖୋଲିଥିଲା ଭୋଗର ପସରା,
ରଣ ପରିବେଶ,
ଘୋଟି ରହିଥିଲା ସଦା ଦ୍ୱନ୍ଦ୍ୱ ଓ ସଂଘର୍ଷ ।

ଦ୍ୟୂତକ୍ରୀଡ଼ା ଥିଲା ରାଜା ସମ୍ଭ୍ରାନ୍ତ ଶ୍ରେଣୀରେ
ପ୍ରଭାବିତ କରୁଥିଲା ଇତର ଜନରେ,
ଖେଳେ ରହୁଥିଲା ବାଜି
ଧନ, ରତ୍ନ, ରାଜ୍ୟ, ପ୍ରିୟପତ୍ନୀ ସୈନ୍ୟରାଜି ।

କ୍ରୀଡ଼ାଜୟୀ ହୋଇଥାଏ ରାଜ ରାଜେଶ୍ୱର
ପରାଜିତ ବୁଲେ ଦାଣ୍ଡେ ଧରି ଭିକ୍ଷାଥାଳ,
ହରାଇ ସର୍ବସ୍ୱ,
ହୋଇଥାଏ ଋଣଗ୍ରସ୍ତ ଜୁଆଁଖେଳେ ନିସ୍ୱ ।

ଗୃହ ତ୍ୟାଗ କରିଥାଏ ବୁଲେ ଲୁଚି ଲୁଚି
ସନ୍ତାନ ସନ୍ତତି ପ୍ରିୟ ପତ୍ନୀକୁ ମୁରୁଛି,
ଦୁଖରେ ସେମାନେ
କାଟୁଥାନ୍ତି କାଳ ଗୃହେ ଅତି ହିନିମାନେ ।

ଅନ୍ୟ ଗୃହ, ନାରୀ, ସୁଖ ସଉଭାଗ୍ୟ ଦେଖି
ହୃଦୟ ବିଦୀର୍ଣ୍ଣ ହୁଏ ନିଜ ପତ୍ନୀଲାଗି,
ସକାଳ ହୋଇଲେ,
ବସିଯାଏ ପୁଣି ସିଏ ଯାଇ ପଶାଖେଳେ ।

ଆତ୍ମୀୟ ସ୍ୱଜନ ଜ୍ଞାତି ପରିଜନ ସବୁ
ଘୃଣାରେ ଚାହାନ୍ତି ନାହିଁ ଭୃତ୍ୟ ହୁଏ ପ୍ରଭୁ;
ଚାହେଁ ସେ ଆତୁରେ
ସେବାଶୀଳା ପ୍ରିୟମ୍ବଦା ପତ୍ନୀ ରହେ ଦୂରେ ।

ବିଟପୀ ନାରୀ ସମାନ ଟାଣେ ମନ ପଶା
ହରାଏ ମାନସମ୍ମାନ କରେ ଲୋକହସା
ସର୍ବଗ୍ରାସ କରି,
ଛାଡ଼ିଦିଏ କରିତାକୁ ଦାଣ୍ଡର ଭିକାରି ।

ଘାରିଲେ ମନକୁ ଥରେ ପଶା ନିଶା ଭାଇ
ଛାଡ଼େନି ସାରା ଜୀବନ ସଦା ଭିଡ଼ିଥାଇ
ମୁକ୍ତି ମିଳେନି ମନକୁ,
ପଶା ଖେଳନାହିଁ ଏଡ଼ି ମାନ ସମ୍ମାନକୁ ।

ନିଜ କର୍ମେ ରହ ଖୁସି ନିଜ ଧର୍ମେ ସନ୍ତୋଷଭରି
ପାଇବନି ସୁଖ ଶାନ୍ତି ଅନ୍ୟାୟରେ ଧନ ବୃଦ୍ଧିକରି
କର୍ମ ସଂସ୍କୃତିରେ
ହଜାଇ ଦିଅ ଜୀବନ ପରମ ତୃପ୍ତିରେ ।

•

ବି.ଦ୍ର. 'ଅକ୍ଷ' ଶବ୍ଦର ଅର୍ଥ ପୁରୁଷାର୍ଥ । ଯୁଦ୍ଧ ଓ ଅକ୍ଷକ୍ରୀଡ଼ା ମଧ୍ୟରେ କିଛି ପ୍ରଭେଦ ନାହିଁ ।

# ଅଗ୍ନି ଉଦ୍ଦୀପନା

**ମାଂ ଦେବା ଦଧିରେ ହବ୍ୟବାହଂ-**
**ପମ୍ଲୁକ୍ତଂ ବହୁ କୃଚ୍ଛା ଚରନ୍ତମ୍ ।**
**ଅଗ୍ନିର୍ବିଦ୍ୱାନ୍ୟଜ୍ଞଂ ନଃ କଳ୍ପୟାତି**
**ପଞ୍ଚୟାମଂ ତ୍ରିବୃତଂ ସପ୍ତତନ୍ତୁମ୍ ।**

ଋ.ସ. ୪ । ମ୧୦ । ସୂ ୫୩ । ମନ୍ତ୍ର ୯୩୩୧

ଅଗ୍ନି ଏ ସଂସାରରୁ ସମ୍ପୂର୍ଣ୍ଣ ଲୁପ୍ତ ହୋଇଯାଇଥିଲେ । ଦେବତାମାନେ ଅଗ୍ନିଙ୍କୁ ଉଦ୍ଦୀପିତ କରିବାପାଇଁ କଠୋର ବ୍ରତାଚରଣ କଲେ । ଅଗ୍ନିଦେବଙ୍କୁ, ପବିତ୍ର କର୍ତ୍ତବ୍ୟ ସମ୍ପାଦନପୂର୍ବକ, ଯଜ୍ଞକ୍ରୀଡ଼ା ମାଧ୍ୟମରେ ହବ୍ୟାହୁତି ବହନ କରିବା ପାଇଁ ଅନୁରୋଧ ଜଣାଇଲେ । ଅଗ୍ନିଦେବ ପ୍ରୀତହୋଇ, ଜାଗ୍ରତ ହେଲେ । ଏବଂ ଯଜ୍ଞ ପ୍ରକ୍ରିୟା ଆରମ୍ଭ କଲେ । ସେହିଦିନଠାରୁ ମାନବଗଣ ସାତଟି ଛନ୍ଦରେ, ପାଞ୍ଚ ପ୍ରକାର ଯଜ୍ଞ (ଆହୁତ, ପ୍ରହୁତ, ବ୍ରାହ୍ମହୁତ, ହୁତ ଏବଂ ପ୍ରାଣିତ) ଆରମ୍ଭ କଲେ ।

ଦୀର୍ଘ ଅତୀତରେ
ଥିଲେ ସୁପ୍ତ ଅଗ୍ନି ଶଯ୍ୟାକୋଳେ,
ପଡ଼ିଗଲା ସୃଷ୍ଟିରେ ଚହଳ
ଅଗ୍ନିବିନା ଯଜ୍ଞକ୍ରିୟା ହୋଇଲା ଅଚଳ ।
ଦେବଗଣ ମିଶି ସର୍ବେ ଆଚରିଲେ ବ୍ରତ
କଠିନୁ କଠିନତର ସାଧନା ନିରତ,
ପରିତୋଷ କରିବେ ଅଗ୍ନିରେ
ଆବାହନ କଲେ ତାଙ୍କୁ -
ଦିବ୍ୟ ହବ୍ୟ ବାହକ ରୂପରେ ।
ଦେବ ସମ୍ପାଦିତ ବ୍ରତ,
ସଫଳ ହୋଇଲା ସେହି କର୍ତ୍ତବ୍ୟ ପବିତ୍ର ।

ସନ୍ତୁଷ୍ଟ ହୋଇଲେ ଅଗ୍ନି
ଦେବଗଣ ସ୍ତୁତି ମନ୍ତ୍ର ଗାନେ,
ଆବିର୍ଭୂତ ହେଲେ ତହୁଁ
ପୁଣ୍ୟମୟ ଯଜ୍ଞ ସମ୍ପାଦନେ ।
ଯଜ୍ଞଧାରା ହେଲା ପ୍ରକଟିତ
ଦେବଗଣେ ଯଜ୍ଞାହୁତି
ହୋଇଲା ପ୍ରେରିତ ।

ଅଗ୍ନିଦେବ ହେଲେ 'ହବ୍ୟବାହ'
ସୁରକ୍ଷିତ ଆର୍ଯ୍ୟଧାରା
ଅବାରିତ ଯଜ୍ଞର ପ୍ରବାହ ।
ପଞ୍ଚମହା ଯଜ୍ଞ ହେଲା ସବିଧି ସମ୍ପନ୍ନ
ସପ୍ତଛନ୍ଦେ ଋଷିମନ୍ତ୍ର ହୋଇଲା ସ୍ତବନ ।

•

ବି.ଦ୍ର. ଅହୁତ-ଜପଯଜ୍ଞ, ହୁତ ...ଦେବଯଜ୍ଞ, ପ୍ରହୁତ...ଭୂତଯଜ୍ଞ, ବ୍ରହ୍ମହୁତ..ନୃଯଜ୍ଞ ପ୍ରାଣିତ...ତର୍ପଣ ଯଜ୍ଞ ।

- ଅରାୟି କାଣେ ବିକଟେ ଗିରିଂ ଗଚ୍ଛ ସଦାନ୍ୱେ ।
  ଶିରିମ୍ବିଠସ୍ୟ ସତ୍ୱଭିସ୍ତେଭିଷ୍ଟା ଚାତୟାମସି ।

ମନ୍ତ୍ର ୧୦୩୯୯

- ଅଦୋ ଯଦ୍ଦାରୁ ପ୍ଲବତେ ସିନ୍ଧୋଃ ପାରେ ଅପୂରୁଷମ
  ତଦା ରଭସ୍ୱ ଦୂର୍ହଣୋ ତେନ ଗଚ୍ଛ ପରସ୍ତରମ୍ ।

ଋ.ସ. ୪ । ଅଲକ୍ଷ୍ମୀସୂକ୍ତ ୧୫୫ । ମ ୧୦ । ମନ୍ତ୍ର ୧୦୪୦୧

ହେ ଅଲକ୍ଷ୍ମୀ ଦେବି । ତୁମେ କୁରୂପା , କୁତ୍ସିତା, ଦାନ ବିରୋଧୀ । ତୁମ ତୁଣ୍ଡରେ ସର୍ବଦା ବିରକ୍ତି କର ଅଶାଳୀନ ଭାଷା ଉଚ୍ଚାରିତ ହେଉଥାଏ । ତୁମେ ସର୍ବଦା ଈର୍ଷା, ରୋଷ ଜର୍ଜରିତା । ତୁମେ ନିର୍ଜନ ପ୍ରଦେଶରେ ରହିବାପାଇଁ ଯୋଗ୍ୟଅଟ । ସାମାଜିକ ଜୀବନ ଓ ଏହାର ସୁସ୍ଥ ପରମ୍ପରା ତୁମପାଇଁ ଅନୁକୂଳ ନୁହେଁ । ସମୁଦ୍ରରେ ଭାସମାନ ନିୟନ୍ତ୍ରଣହୀନ କାଠଖଣ୍ଡପରି ତୁମେ ଦୂରକୁ ଚାଲିଯାଅ ।

- ଚତ୍ତୋ ଇତଶ୍ଚତ୍ତାମୁତଃ ସର୍ବା ଭ୍ରୂଣାନ୍ୟାରୁଷୀ
  ଆରାଯ୍ୟଂ ବ୍ରହ୍ମଣସ୍ପତେ ତୀକ୍ଷ୍ଣଶୃଙ୍ଗୋଦୃଷନ୍ନିହି ।

ମନ୍ତ୍ର ୧୦୪୦୦

- ଯଦ୍ଧ ପ୍ରାଚୀରଜଗନ୍ତୋରୋ ମଣ୍ଡୂରଧାଣିକୀଃ
  ହତା ଇନ୍ଦ୍ରସ୍ୟ ଶତ୍ରବଃ ସର୍ବେ ବୁଦ୍‌ବୁଦାୟାଶବଃ ।

ଋ.ସ. ୪ । ସୂ ୧୫। ମନ୍ତ୍ର ୧୦୪୦୨

ହେ ଅଲକ୍ଷ୍ମୀ ଦେବି । ତୁମେ ବୃକ୍ଷଲତାର ନବୀନ ଅଙ୍କୁରକୁ ନଷ୍ଟକରି ଉଦ୍ଭିଦ ଜଗତର କ୍ଷତିକର । ଶସ୍ୟହାନୀ କରାଇ ଦୁର୍ଭିକ୍ଷ ସୃଷ୍ଟି କରିଥାଅ । ତୁମେ ଅମଙ୍ଗଳମୟୀ । ଇହଲୋକ ଏବଂ ପରଲୋକରେ ଆମେ ତୁମଠାରୁ ଦୂରେଇ ରହିବାକୁଚାହୁଁ । ହେ ଦେବଗୁରୁ ବୃହସ୍ପତି । ଆମେ ଆପଣଙ୍କୁ ପ୍ରାର୍ଥନା କରୁଛୁ, ଏହି ଦାନ ବିରୋଧିନୀ, ଅଶୁଭଦାୟିନୀ, ଅମଙ୍ଗଳୀ ଦେବୀଙ୍କୁ ଆପଣ ଆମଠାରୁ ଦୂରେଇ ରଖନ୍ତୁ ।

# ଅଲକ୍ଷ୍ମୀ ଦେବୀ

ସମୁଦ୍ର ମନ୍ଥନ ବେଳେ, ସୃଷ୍ଟି ହେଲା
ତୀବ୍ର ହଳାହଳ,
ଅଲକ୍ଷ୍ମୀ ହୋଇଲେ ଜାତ
ଏ ବିଶ୍ୱରେ ପଡ଼ିଲା ଚହଳ ।
ତା'ପରେ ଜନ୍ମିଲେ ଲକ୍ଷ୍ମୀ ଅମୃତ ତନୟା
ସତେ ଅବା, ଅମୃତର ମୂର୍ତ୍ତିଟିଏ,
ସୌନ୍ଦର୍ଯ୍ୟ ଭଣ୍ଡାର ସିଏ,
ବିପୁଳ ବିଭୂତି ନେଇ -
ରୂପ ଗୁଣେ ବିଶ୍ୱ ବନ୍ଦନୀୟା ।

ଅଲକ୍ଷ୍ମୀ ସେ ବିଷକନ୍ୟା, ଅମଙ୍ଗଳୀ ଅଶୁଭଦାୟିନୀ
ନୀତିହୀନା, ପାପୀୟସୀ, ସେ ଦୁରାଚାରିଣୀ
କୁଳଧର୍ମ ଆଚାର ବେଭାର
ନାହିଁ ଶ୍ରଦ୍ଧା ନାହିଁ ଶିଷ୍ଟାଚାର,
ନାହିଁ ରୂପ ନାହିଁ ଗୁଣ ନାହିଁ ବା ସମ୍ମାନ
ମୁଖରିତ ମୁଖ ସଦା, ଅଶାଳୀନ ଶବ୍ଦ ଉଚ୍ଚାରଣ ।
ଅଟନ୍ତି ସେ ଦାନ ବିରୋଧିନୀ
ଧନ ନାଶ କରିବାରେ ସିଦ୍ଧହସ୍ତା ପୁଣି,
ହିଂସାରେ ଜର୍ଜର ଅଟେ ମନଟି ସର୍ବଦା
ପାପକର୍ମେ ସଦା ଉତ୍‌ଫୁଲ୍ଲିତା ।

ପରିତ୍ୟକ୍ତ ଅନାଦୃତ ଜୀବନକୁ ନେଇ
ଦିନେ କାନ୍ଦୁଥିଲେ ବନେ ସେ ବିକଳହୋଇ,
ଲକ୍ଷ୍ମୀ ଆସି ହେଲେ ଉଭା, ଜ୍ୟେଷ୍ଠା ଭଗିନୀରେ-
ଆଶ୍ୱସି କହିଲେ,
"ତୁମ ପାଇଁ ସ୍ଥାନ, ବିଷ୍ଣୁ କରିଛନ୍ତି ଠାବ
ଯେଉଁଠାରେ ଧର୍ମ, ନୀତି, ପୁଣ୍ୟ କର୍ମ ରହିଛି ଅଭାବ,
ଅନ୍ୟାୟ ଅନୀତି, ଯହିଁ କ୍ରୋଧ ଅହଂକାର
ସେ ସ୍ଥାନଟି ବାସଯୋଗ୍ୟ ଅଟଇ ତୁମର ।
ଯାଅ ତହିଁ କର ଆଗୋ ବାସ,
ହେ ଅଲକ୍ଷ୍ମୀ ଏ ସଂସାରେ ଲଭ ପରିତୋଷ ।"

•

ସୁମଙ୍ଗଳୀରିୟଂ ବଧୂରିମା ସମେତ ପଶ୍ୟତ
ସୌଭାଗ୍ୟମସ୍ୟୈ ଦତ୍ତ୍ୱାୟାଥାସ୍ତଂ ବି ପରେତନ ।

ଋ.ସ.୪ । ମ ୧୦ । ସୂ । ମନ୍ତ୍ର ୯୬୯୯

ହେ ଯଜ୍ଞାର୍ଥୀ ଦେବଗଣ। ଏହି ନବବଧୂ ମଙ୍ଗଳ ଚିହ୍ନରେ ସୁସଜ୍ଜିତହୋଇ ବିବାହ ବେଦିରେ ଶୋଭାପାଉଛି । ଆପଣମାନେ ସ୍ୱର୍ଗ ପଥରୁଆସି, ବିବାହ ମଣ୍ଡପରେ ବରବଧୂଙ୍କୁ ଶୁଭାଶିଷ ପ୍ରଦାନ କରନ୍ତୁ। ନବବଧୂ ତା' ଦାମ୍ପତ୍ୟ ଜୀବନରେ ସୁଖ ଓ ସୌଭାଗ୍ୟମୟୀ ହେଉ । ବିପୁଳ ଯଶକୀର୍ତ୍ତିର ଅଧିକାରିଣୀ ହୋଇ ଆନନ୍ଦରେ ଜୀବନ ଅତିବାହିତ କରୁ। ସଦ୍‌ବୁଦ୍ଧି ସମ୍ପନ୍ନାହୋଇ, ସଦ୍ ମାର୍ଗରେ ଗତିକରି ଗୃହଧର୍ମ ପାଳନ କରୁ।

# ବଧୂ ଆଶୀର୍ବାଦ

ଏହି ଯଜ୍ଞପୀଠେ ବେଦିକା ସମୀପେ
ଆବାହନ କରୁ ଆମେ
ଆହେ ଦେବଗଣ ହେ ବରିଷ୍ଠ ଜନ
ଆସନ୍ତୁ ଏ ପୁଣ୍ୟଭୂମେ,
ବିରାଜିତ ଏଥି ହୋଇଛନ୍ତି ବରବଧୂ
ମଙ୍ଗଳ ବେଶରେ ସୁସଜ୍ଜିତ ହୋଇ ଚାହିଁଅଛି ନବବଧୂ ।

ଆସନ୍ତୁ ସମସ୍ତେ ବଧୂ ଦରଶନ
କରନ୍ତୁ ଆନନ୍ଦ ଭରେ
ଶୁଭ ଆଶୀର୍ବାଦ ପ୍ରଦାନ କରନ୍ତୁ
ମନଭରି ସନ୍ତୋଷରେ ।
ନବ ବିବାହିତା ଏହି ନବନୀତା
ହେଉ ସୁମଙ୍ଗଳୀ ବୋହୂ
ସୌଭାଗ୍ୟ ଶାଳିନୀ ପୁଣ୍ୟ ପ୍ରଦାୟିନୀ
ଯଶୋମୟୀ ଯଶ ରହୁ ।

ସର୍ବ ଆଶୀର୍ବାଦ ଲଭି ବର ବଧୂ
ଆଚରନ୍ତୁ ଗୃହ ଧର୍ମ,
ଜୀବନ ତାଙ୍କର ହେଉ ଶୁଭଙ୍କର
କରି ଶୁଭମୟ କର୍ମ ।
ସତ୍‌ପଥେ ସେମାନେ ଅଗ୍ରଣୀ ହୁଅନ୍ତୁ
ସଦ୍‌ବୁଦ୍ଧି ବତାଉ ବାଟ
ଧର୍ମ ଅନୁସରି କର୍ମ ଯଜ୍ଞ କରି
ପିନ୍ଧନ୍ତୁ କୀର୍ତ୍ତି କିରୀଟ ।
ହେଉ ବଧୂ ଲକ୍ଷ୍ମୀଶୀଳା,
ସଭିଙ୍କ ହୃଦୟ ମାଳା,
ରହୁସେ ସଂସାର ଲୀଳା ।

•

• ବ୍ରହ୍ମଣସ୍ପତିରେତା ସଂ କର୍ମାର ଇବାଧମତ୍
ଦେବାନାଂ ପୂର୍ବ୍ୟେ ଯୁଗେଽସତଃ ସଦ୍‌ଜାୟତ

ମନ୍ତ୍ର ୯୫୬୭

• ଦେବାନାଂ ଯୁଗେ ପ୍ରଥମେଽସତଃ ସଦ୍‌ଜାୟତ
ତଦାଶା ଅନ୍ୱଜାୟତ ତଦୁତ୍ତାନପଦସ୍ପରି ।

ମନ୍ତ୍ର ୯୫୬୮

• ଭୂର୍ଜଜ୍ଞ ଉତ୍ତାନପଦୋ ଭୁବ ଆଶା ଅଜାୟନ୍ତ
ଅଦିତେର୍ଦକ୍ଷୋ ଅଜାୟତ ଦକ୍ଷାଦ୍ୱଦିତିଃପରି ।

ଋ.ସ. ୪ । ମ୧୦ । ସୂ୭୨ । ମନ୍ତ୍ର ୯୫୬୯

ଦେବତା ମାନଙ୍କର ଆବିର୍ଭାବର ପୂର୍ବବର୍ତ୍ତୀ ସମୟରେ ପରଂବ୍ରହ୍ମ ବା ଆଦିସତ୍ତା ଅଦିତି, ଏହି ସୃଷ୍ଟିକୁ ସୃଜନକ୍ଷମ କରି ରୂପଦାନ କଲେ । ଅବ୍ୟକ୍ତ 'ବ୍ରହ୍ମ'ରୁ ନାମରୂପାତ୍ମକ ଦେବଶକ୍ତି ଗୁଡ଼ିକର ଉତ୍ପତ୍ତି ହେଲା । ଅଥବା ସେହି ଆଦି ପ୍ରକ୍ରିୟାରୁ ସୃଜନାତ୍ମକ ଚେତନ ଧାରା ମଧ୍ୟରୁ ଦେବ ଶକ୍ତି ପ୍ରକଟିତ ହେଲା । ସେଥିରୁ ସଂକଳ୍ପଶୀଳ ଚେତନା ବା ଆଶା ସୃଷ୍ଟି ହେଲା । ସେହି ସମୟରେ ଉର୍ଦ୍ଧ୍ୱକୁ ଗତି କରୁଥିବା ଉର୍ଜଃକଣର ଉତ୍ପତ୍ତି ହେଲା । ଏପରିଭାବରେ 'ଅବ୍ୟକ୍ତ'ରୁ 'ବ୍ୟକ୍ତ'ର ଉତ୍ପତ୍ତି । ଉର୍ଦ୍ଧ୍ୱକୁ ଗତି କରୁଥିବା ପ୍ରବାହକୁ 'ଉତ୍ତାନପାଦ' କୁହାଯାଏ ।

ସୃଷ୍ଟିରେ ଆଦି ପ୍ରବାହକୁ 'ଭୂଃ' କୁହାଯାଏ । ଏହାଦ୍ୱାରା ସୂକ୍ଷ୍ମକଣ ସଂରଚିତ ହୋଇ, ଉର୍ଦ୍ଧ୍ୱ ପ୍ରବାହରେ ଉର୍ଦ୍ଧ୍ୱଗତି ଲାଭ କରେ । ଅଦିତି ବା ଅଖଣ୍ଡ ଆଦି ସତ୍ତାରୁ 'ଦକ୍ଷ' ଅର୍ଥାତ ସୃଜନ ପ୍ରବାହର ଉତ୍ପତ୍ତି ହେଲା । ଏହି 'ଦକ୍ଷ' ବା ସୃଜନ ପ୍ରବାହରୁ ଅନନ୍ତ ପ୍ରକୃତି ଜନ୍ମଲାଭ କଲା । ମୋଟ ଉପରେ ପୃଥିବୀର ଉତ୍ପତ୍ତି ଓ ବିକାଶଶୀଳ ପ୍ରକ୍ରିୟା 'ଉତ୍ତାନପାଦ' ନାମରେ ପରିଚିତ ।

## ସୃଷ୍ଟି ରହସ୍ୟ

ରହସ୍ୟମୟ ସୃଷ୍ଟି ସର୍ଜନା ତତ୍ତ୍ୱ
କିଏ ପାରିବ କଳି ତା' ଆଦି ଅନ୍ତ,
ମହାଶୂନ୍ୟର ମହା ବ୍ୟାପ୍ତି ବଳୟେ
ଆଦି ପ୍ରବାହ 'ଭୂ' ଊର୍ଦ୍ଧ୍ୱ ନିଳୟେ
କରଇ ଗତି,
ସୂକ୍ଷ୍ମକଣ ସଂଚାର କରେ ସମାଦି ।

'ଅସତ୍'ରୁ 'ସତ୍' ହୋଇଲା ଜାତ
ଅଥବା ଅବ୍ୟକ୍ତରୁ ବ୍ୟକ୍ତ ସମ୍ଭୂତ,
ପ୍ରକଟିତ ହୋଇଲା 'ଅସ୍ତିତ୍ୱ' ତେଣୁ
ଭରି ଅନନ୍ତ ବୁକୁ ସେ ସୂକ୍ଷ୍ମରେଣୁ ।
ଅଖଣ୍ଡ ସଂଯୋଗରେ ନୀଳନିଳୟେ
ହେଲା ଭରଣା
ବହିଲା ଅନ୍ତରିକ୍ଷେ 'ଅଣୁଝରଣା' ।
ଊର୍ଜକଣ ସେଥିରୁ ହୋଇଲା ଜାତ
ଊର୍ଦ୍ଧ୍ୱକୁ ଗତିକଲା ସେ ଊର୍ଦ୍ଧ୍ୱାୟିତ,
ଅନନ୍ତ ଅନ୍ତରିକ୍ଷ ବ୍ୟାପ୍ତ ବଳୟେ
ଅଖଣ୍ଡ ସଂଯୋଗରେ ନୀଳ ନିଳୟେ
କଲା ଉତ୍ପତ୍ତି-
'ସୂର୍ଯ୍ୟଦେବ', ସେ ତିନି ଭୁବନପତି ।

ହୋଇଲା ବିକଶିତ ସୃଷ୍ଟି ସଂକଳ୍ପ
ନବୀନ 'ଦେବଶକ୍ତି' ନେଲା ସେ ରୂପ,
ସୃଜନାତ୍ମକ ନବ ଚିନ୍ତନ ଧାରା
ସୃଷ୍ଟିରେ ଭରି ହେଲା ରୂପ ପସରା,
ବଢ଼ିଲା ଆଶା
ନବ ସର୍ଜନା ନେବ ନବୀନ ଭୂଷା ।

ଅଟନ୍ତି ପରଂବ୍ରହ୍ମ ନିଖିଳପତି
ଅଖଣ୍ଡ ଆଦିସତ୍ତା ନାମେ 'ଅଦିତି',
'ଦକ୍ଷ ପରଜାପତି' ସେ ଗର୍ଭୁ ଜାତ ।
ସୃଜନଧାରା ତହୁଁ ହେଲା ସମ୍ଭୂତ ।
ମିଳିଲା ଜଳ,
ବହିଲା ବାୟୁ ହୋଇ ଚଳଚଞ୍ଚଳ ।

ବିଶ୍ୱ ପ୍ରକୃତି ଜାତ ହୋଇଲା ତେଣୁ
ଉଦ୍ଭୂତ ହେଲେ ତହୁ କେତେ ଉଦ୍ଭିଦ ଅଣୁ,
ଜୀବନ ସଂଚାରିତ ହୋଇଲା ତହିଁ
ପଶୁ, ପକ୍ଷୀ, ମନୁଷ୍ୟ ଗଢ଼ିଲେ ସାଇଁ -
ନୂତନ ନାମେ,
ବହିଃ ପ୍ରକୃତି ମଧ୍ୟେ ନବ ବିଧାନେ ।

ହୋଇଲା ଜାତ କ୍ରମେ କେତେ ପଦାର୍ଥ
ନାମ କରଣ ହେଲା ନବୀନ ଅର୍ଥ,
ଜ୍ଞାନ ଧାରାର ଏହା ଆଦ୍ୟ ଓଁକାର
ରହିଲା ସ୍ମୃତି କୋଷେ ଅନୁଭୂତିର -
ଅନ୍ତଃପ୍ରେରଣା ପାଇ,
ହୁଏ ତା' ଉସରିତ ତା' ରୂପନେଇ ।

ବିକାଶଶୀଳ ସୃଷ୍ଟି ପ୍ରବାହ ଧାରା
'ଉତ୍ତାନପାଦ' ନାମେ ବିଖ୍ୟାତ ପରା,
ସମ୍ଭବ ହେଲା ତହୁଁ ସୃଷ୍ଟି ପ୍ରକ୍ରିୟା
ବିସ୍ତାର କଲା ବିଶ୍ୱପ୍ରକୃତି କାୟା,
ଏତ, ସୃଷ୍ଟି ରହସ୍ୟ
ସୃଜନ ଧାରା ମଧ୍ୟେ ବିଦିତ ବିଶ୍ୱ ।

•

# ବିବସ୍ୱାନ୍

**ଯଦେଦେନମଦଧୁର୍ଯ୍ୟ ଜ୍ଞିୟାସୋ ଦିବି ଦେବାଃ ସୂର୍ଯ୍ୟମାଦିତେୟମ୍
ଯଦା ଚରିଷ୍ଣୁ ମିଥୁନାବଭୂତାମାଦିତ୍ ପ୍ରାପଶ୍ୟନ୍‌ଭୁବନାନି ବିଶ୍ୱା ।**

ଦେବଗଣ ଯଜ୍ଞୀୟ କ୍ରମରେ ଅଗ୍ନିଦେବଙ୍କୁ ସୂର୍ଯ୍ୟରୂପରେ ବା ଅଖଣ୍ଡ ମୂଳ ଊର୍ଜଃ ରୂପରେ ଆକାଶରେ ପ୍ରତିଷ୍ଠା କଲେ । ସେତେବେଳେ ବିଚରଣଶୀଳ ସୂକ୍ଷ୍ମକଣ ସବୁ ରଚିତ ହେଲା । ଏହି ସମୟରେ ସମଗ୍ର ଜଗତ ରଚିତ ହେଲା ।

ଜ୍ୟୋତିର୍ମୟ ବିବସ୍ୱାନ୍
ଚେତନାର ଚିନ୍ମୟ ପ୍ରକାଶ,
ସୃଷ୍ଟିଶୀଳ ପରିବ୍ୟାପ୍ତ ଅନନ୍ତ ଆକାଶ ।
ଦୁଇଟି ପ୍ରାଣ ପ୍ରବାହ 'ଜ୍ୟୋତିଅଣୁ'-
ସୃଷ୍ଟି ହେଲା ତହୁଁ ,
ସର୍ଜନାର ଗୁଣସୂତ୍ର ନେଇ,
ଏକ ସୂତ୍ର, ବପନର ଧାରା
ଉତ୍ପାଦନ କ୍ଷମତାରେ ସମୃଦ୍ଧ ଅନ୍ୟଟି
ତା' ଅଟଇ ଭୂମିପୀଠ ପରା ।

ବିବସ୍ୱାନ୍ ଯମଳ ସନ୍ତାନ ବେନି
ପୁତ୍ର ପୁତ୍ରୀ 'ଯମଯମୀ' ନାମ,
'ମହାନ୍‌ପ୍ରାଣ ପ୍ରବାହ' ଅଟନ୍ତି ଏ ଦୁଇ
କରନ୍ତି ପ୍ରାଣ ପ୍ରତିଷ୍ଠା ବିଶ୍ୱପିଣ୍ଡେ ଏହି ।
ସୃଷ୍ଟି ଯଜ୍ଞ ହୋଇଲା ଆରମ୍ଭ

ଦୁଇ ଏକ ହୋଇ ପୁଣି ଏକରୁ ଅନେକ
ଅନେକରୁ ଏକ ।
ଏ ଦୁଇ ପ୍ରବାହ ଯେବେ ହେବେ ଅନ୍ତଃର୍ଲୀନ
ମିଶି ଯିବେ ଆଦ୍ୟ ଉତ୍ସେ ହୋଇ ବିବସ୍ୱାନ୍ ।

ସର୍ଜନାର ବିସ୍ତାରଣ ପାଇଁ
ପରସ୍ପର ନ ମିଶିଲେ
ଯୁକ୍ତ ହେଲେ ବିପରୀତ ଊର୍ଜଃକଣ ନେଇ
ବିଚ୍ଛୁରିତ ବିସ୍ତାରିତ ଅନନ୍ତ ଆକାଶେ
'ଶକ୍ତିକଣ','ଶକ୍ତିକଣ' ସଂଯୋଗ ପ୍ରକାଶେ ।
'ପଦାର୍ଥ କଣ' ରଚିତ ହେଲା ଏ ବିଶ୍ୱରେ
'ଚେତନକଣ' ଓ ଶକ୍ତିକଣ' ସମାହାରେ
ପ୍ରାଣୀ ଜଗତର ସୃଷ୍ଟି ହୋଇଲା ସମ୍ଭବ
ରଚନାର ସୂତ୍ର ଅଭିନବ ।

•

- ବ୍ରାହ୍ମଣୋଽସ୍ୟ ମୁଖମାସୀଦ ବାହୂ ରାଜନ୍ୟଃ କୃତଃ
ଉରୂ ତଦସ୍ୟ ଯଦ୍ବୈଶ୍ୟଃ ପଦ୍ଭ୍ୟାଂ ଶୂଦ୍ରୋ ଅଜାୟତ ।
- ଚନ୍ଦ୍ରମା ମନସୋ ଜାତଶ୍ଚକ୍ଷୋଃ ସୂର୍ଯ୍ୟୋ ଅଜାୟତ
ମୁଖାଦିନ୍ଦ୍ରଶ୍ଚାଗ୍ନିଶ୍ଚ ପ୍ରାଣାଦ୍ୱାୟୁରଜାୟତ ।
- ନାଭ୍ୟା ଅସୀଦନ୍ତରିକ୍ଷଂ ଶୀର୍ଷ୍ଣୋ ଦ୍ୟୌଃ ସମବର୍ତତ
ପଦ୍ଭ୍ୟାଂ ଭୂମିର୍ଦିଶଃ ଶ୍ରୋତାତ୍ତଥା ଲୋକାଁ ଅକଳ୍ପୟନ୍ ।
- ସପ୍ତାସ୍ୟାସନ୍ ପରିଧୟସ୍ତ୍ରିଃ ସପ୍ତ ସମିଧଃ କୃତାଃ
ଦେବା ଯଦ୍ୟଜ୍ଞଂ ତନ୍ୱାନା ଅବଧ୍ନନ୍ପୁରୁଷଂ ପଶୁମ୍ ।

ଋ.ସଂ୪।ମ୧୦।ସୂ୯୦।ମନ୍ତ୍ର୯୮୧୦,୯୮୧୧,୯୮୧୨,୯୮୧୩

ଏହି ବିରାଟ ପୁରୁଷଙ୍କ ମୁଖରୁ ବ୍ରହ୍ମବିଦ୍ ବ୍ରାହ୍ମଣ ବାହୁରୁ କ୍ଷତ୍ରିୟ, ଉରୁ ପ୍ରଦେଶରୁ ବୈଶ୍ୟ ତଥା ପଦରୁ ଶୂଦ୍ର ବା ଶ୍ରମଜୀବୀ ଜନ୍ମଗ୍ରହଣ କଲେ ।

ପ୍ରଭୁ ବିରାଟ ପୁରୁଷଙ୍କର ମନରୁ ଚନ୍ଦ୍ରମା, ନେତ୍ରରୁ ସୂର୍ଯ୍ୟ, କର୍ଣ୍ଣରୁ ବାୟୁଦେବ ଏବଂ ପ୍ରାଣ ଏବଂ ମୁଖରୁ ଅଗ୍ନିଦେବଙ୍କର ଆବିର୍ଭାବ ହେଲା ।

ସେହି ମହାଶକ୍ତି ବିରାଟ ପୁରୁଷଙ୍କର ନାଭିରୁ ଅନ୍ତରିକ୍ଷ, ଶିରରୁ ଦ୍ୟୁଲୋକ, ପାଦରୁ ଭୂମି, କର୍ଣ୍ଣରୁ ଦିଗ ସକଳ, ପ୍ରକାଟିତ ହେଲେ । ଏପରି ଭାବରେ ସମଗ୍ର ଲୋକ, ପ୍ରକଟିତ ହେଲା ।

ଦେବଗଣ ସୃଷ୍ଟିଯଜ୍ଞର ସଂରଚନା ଯୋଜନା ପ୍ରସ୍ତୁତ କରିବା ସମୟରେ ଏହାର ସପ୍ତ ପରିଧି ପ୍ରସ୍ତୁତ କରିଥିଲେ । ଏହି ଯଜ୍ଞର ସମିଧ ସଂଖ୍ୟା ୨୧ । ଏହାର ଅର୍ଥ,ଅନ୍ତରିକ୍ଷ, ଆକାଶ ଓ ପୃଥିବୀ ଲୋକରେ ପ୍ରତିଟିରେ ୭ଟି ଲେଖାଏଁ ପ୍ରସ୍ତ ବା ପରିଧି ଅଛି । ଏହି ତ୍ରିସପ୍ତ (୭ ଗୁଣନ ୩ = ୨୧) ସୃଷ୍ଟି ଯଜ୍ଞକୁ ସଂଚାଳନ କରିବାପାଇଁ ଊର୍ଜଃ (ପୋଷକ ଶକ୍ତି) ରୂପେ ଇନ୍ଧନ ଯୋଗାଇଥାଏ । ଏ ପରମ ଚେତନା ପିଣ୍ଡରୂପେ ଆବଦ୍ଧ ହୋଇ ରହିଛି ।

# ବିରାଟ ପୁରୁଷ

ପରମ ପୁରୁଷ ସଂକଳ୍ପ ଚିନ୍ମୟ
'ବିରାଟ ପୁରୁଷ' ହେଲେ ପ୍ରକଟ
ସେ ଯଜ୍ଞ ପୁରୁଷ ସୃଷ୍ଟିଯଜ୍ଞଧାରା-
ସର୍ଜନା ସଙ୍ଗୀତେ, ରହିଲେ ଲିପ୍ତ ।
ବପିତ ହୋଇଲା ସୃଷ୍ଟି ସଂରଚନା-
ବୀଜତତ୍ତ୍ୱ, ତାଙ୍କ ଚେତନଭୂମେ
ଭୂମାଧୀଶ ପ୍ରଭୁ ତ୍ରିଭୁବନ ସ୍ୱାମୀ,
ଭୂମାନନ୍ଦେ ତାଙ୍କ ହୃଦୟ ରମେ ।

ବିଶ୍ୱ ବ୍ରହ୍ମାଣ୍ଡକୁ ସର୍ଜନା କରିଲେ
ଅନ୍ତରିକ୍ଷ ହେଲା ନାଭିରୁ ସୃଷ୍ଟି
ଶିରରୁ ଦ୍ୟୁଲୋକ, ପଦରୁ ଭୂଲୋକ
ଦେବଲୋକେ ଦେବଗଣ ଉତ୍ପତ୍ତି ।
ନୟନରୁ ସୂର୍ଯ୍ୟ ମନରୁ ଚନ୍ଦ୍ରମା
ପ୍ରାଣବାୟୁ ଶ୍ରବଣରୁ ସମ୍ଭୂତ
ସୃଷ୍ଟି ପୁରୁଷଙ୍କ ମୁଖ-ମୟୂଖରୁ
ଦୀପ୍ତ ଅଗ୍ନିଦେବ ହୋଇଲେ ଜାତ ।

ସର୍ଜନା ଯଜ୍ଞର ଆହୁତିରୁ ଜାତ
ଉର୍ଜଃ ରୂପୀ ଶକ୍ତିଧାରା ଭୁବନେ
ସଂଚାରିତ ହେଲା ପିଣ୍ଡେ ପ୍ରାଣସମ
ଊର୍ଜସ୍ୱଳ ହେଲେ ନବ ଜୀବନେ ।

ଦ୍ୟୁଲୋକ, ଭୂଲୋକ ଅନ୍ତରିକ୍ଷ ତିନି
ସପ୍ତ ସପ୍ତ ସ୍ତରେ କଲେ ମଣ୍ଡିତ
ସୃଷ୍ଟିକଲେ ତହିଁ ଶକ୍ତି କେନ୍ଦ୍ର କେତେ
ଉତ୍ସରିତ ହେଲା ଶକ୍ତିର ସ୍ରୋତ ।

ବ୍ରହ୍ମପୁରୁଷଙ୍କ ପବିତ୍ର ମୁଖରୁ
ବ୍ରହ୍ମବିଦ୍ ନର ହେଲେ ଉତ୍ପତ୍ତି
ଶୌର୍ଯ୍ୟର ପ୍ରତୀକ ବାହୁ ଯୁଗଳରୁ
'କ୍ଷତ୍ର' ଶକ୍ତିଧାରା ନେଲା ତା'ଗତି ।
ଉରୁ ପ୍ରଦେଶରୁ ବୈଶ୍ୟଗଣ ଜାତ
କୃଷି ବାଣିଜ୍ୟରେ ହେଲେ ପ୍ରବୃତ୍ତ
ଶ୍ରମଶୀଳ ପଦଯୁଗଳରୁ ଜାତ
ଶ୍ରମଜୀବୀ ଶୂଦ୍ରଗଣ ବିବୃତ
ସଂଗଠିତ ହେଲା ସମାଜ ଧାରା,
ଶୃଙ୍ଖଳିତ ହେଲା ମାନବ ସମାଜ
ବିଧାତାଙ୍କ ବିଶ୍ୱବିଧାନ ପରା ।

•

## ଆଶୀର୍ବାଦ ମନ୍ତ୍ର

ଶତଂ ଜୀବ ଶରଦୋ ବର୍ଧମାନଃ
ଶତଂ ହେମନ୍ତାଞ୍ଛତମୁ ବସନ୍ତାନ୍,
ଶତମିନ୍ଦ୍ରାଗ୍ନୀ ସବିତା ବୃହସ୍ପତିଃ
ଶତାୟୁଷା ହବିଷେମଂ ପୁନର୍ଦୁଃ ।

ଋ.ସଂ୪।ମ୧୦।ସୂ୧୬୧।ମନ୍ତ୍ର୧୦୪୩୩

ଶତାୟୁ ହଅନ୍ତୁ ସର୍ବେ
ଏ ବିଶ୍ୱବାସୀ
ଶତ ଶରତ ଭୋଗ
କରନ୍ତୁ ହସି ।
ଶତ ହେମନ୍ତ ସୁଖେ
ବିତୁ ଜୀବନ
ଶତ ବସନ୍ତ ଲଭୁ
ହୃଦୟ ମନ ।
ରହନ୍ତୁ ସର୍ବେ ସୁଖେ
ଜୀବନ ନେଇ
ବିତୁ ଜୀବନ ବିଶ୍ୱ-
କଲ୍ୟାଣ ପାଇଁ ।

ଯଜ୍ଞ ହବିଷଅନ୍ନ ଲଭି ଆହୁତି
ଅଗ୍ନି, ସବିତା, ଇନ୍ଦ୍ର, ହେ ବୃହସ୍ପତି-
ଦେବତା ଗଣ ପରିତୃପ୍ତ ହୋଇଣ
ଦିଅନ୍ତୁ ସର୍ବେ ଶତବର୍ଷ ଜୀବନ ।
ପ୍ରାର୍ଥନା ଆମ,
ପୂର୍ଣ୍ଣ କରନ୍ତୁ ଆହେ ପ୍ରଭୁପରମ ।

•

- ବିଦ୍ୟୁନ୍ନ ଯା ପତନ୍ତୀ ଦବିଦ୍ୟୋଭରନ୍ତୀ ମେ ଅପ୍ୟା କାମ୍ୟାନି
ଜନିଷ୍ଟୋ ଅପୋ ନର୍ଯ୍ୟଃସୁଜାତଃ ପ୍ରୋର୍ବଶୀ ତିରତ ଦୀର୍ଘମାୟୁଃ ।

ମନ୍ତ୍ର ୯୮୮୩

ବିଦ୍ୟୁତ ଯେପରି ଅନ୍ତରିକ୍ଷରୁ ପ୍ରତିଭାତ ହୋଇ ପୃଥିବୀର ଅଭିଳାଷ ପୂରଣକରେ, ହେ ସ୍ୱର୍ଗବାସିନୀ ଉର୍ବଶୀ, ତୁମେ ସେପରି ଦିବ୍ୟଜ୍ୟୋତି ଧାରଣକରି, ପୃଥିବୀରେ ଆବିର୍ଭୂତ ହୋଇ, ମୋର ରାଣୀ ରୂପରେ ମନସ୍କାମନା ପୂର୍ଣ୍ଣକର । ପୁରୁରବାଙ୍କୁ ସନ୍ତାନଦାନ କରି ସମସ୍ତଙ୍କୁ ଦୀର୍ଘ ଆୟୁଷ ପ୍ରଦାନକଲେ ଆମେ କୃତଜ୍ଞହେବୁ ।

- ଯଜ୍ଜିଷ ଇତ୍‌ଥା ଗୋପୀଥ୍ୟାୟ ହି ଦଧାଥ ତତ୍‌ପୁରୁରବୋ ମ ଓଜଃ
ଅଶାସଂତ୍ୱା ବିଦୁଷୀ ସସ୍ମିନ୍ନହନ୍ନ ମ ଆଶୃଣୋଃ କିମଭୁଗ୍‌ଵଦାସି ।

ମନ୍ତ୍ର ୯୮୮୪

ଉର୍ବଶୀ କହିଲେ, 'ହେ ରାଜନ୍ । ମୁଁ ଆପଣଙ୍କର ସନ୍ତାନମାନଙ୍କର ଗର୍ଭଧାରିଣୀ ମା'ର କର୍ତ୍ତବ୍ୟ ପାଳନ କରି, ପୃଥିବୀ ସଂରକ୍ଷଣ ପ୍ରକ୍ରିୟାରେ ସହଯୋଗ କରିଛି । ପତି ପତ୍ନୀର ଶାଳୀନ ଶୃଙ୍ଗାରଧର୍ମ ପାଳନ ପାଇଁ ଆପଣ ମର୍ଯ୍ୟାଦାରକ୍ଷାର ଯେଉଁ ପ୍ରତିଶ୍ରୁତି ମୋତେ ଦେଇଥିଲେ, ତାହା ଏବେ ଭଙ୍ଗ କରିଛନ୍ତି । ଶପଥ ଭଙ୍ଗକରି ଆପଣ ପାରସ୍ପରିକ ସ୍ନେହ ବଂଧନ ତୁଟାଇଥିବାରୁ ମୁଁ ମୋ ସ୍ୱର୍ଗ ଭୂମିକୁ ଫେରି ଯାଉଛି । ଏଥିପାଇଁ ଶୋକାର୍ତ୍ତ ହେବାର କିଛି କାରଣ ନାହିଁ ।

- ସୁଦେବୋ ଅଦ୍ୟ ପ୍ରପତେଦନାବୃପୂରାବତଂ ପରମାଂ ଗନ୍ତବା ଉ
ଅଧା ଶୟୀତ ନିର୍ଋତେରୂପସ୍ଥେଽଧୈନଂ ବୃକା ରଭସାସୋ ଅଦ୍ୟୁଃ ।

ମନ୍ତ୍ର ୯୮୮୭

ପୁରୁରବା କହିଲେ, "ହେ ଉର୍ବଶି । ତୁମେ ମୋପରି ଏକ ସ୍ନେହଶୀଳ ପତିର ଜୀବନକୁ ବିପନ୍ନ କରି, ବିରହ ବିଚ୍ଛେଦ ମଧ୍ୟରେ ମୋତେ ଧରାଶାୟୀ କରନାହିଁ । ଦୟାକରି ମୋପାଖକୁ ଫେରିଆସ ।

- ପୁରୁରବୋ ମା ମୃଥା ମା ପ୍ର ପପ୍ତୋ ମା ତ୍ୱା ବୃକାସୋ ଅଶିବାସ ଉ କ୍ଷନ୍
ନବୈ ସ୍ତ୍ରୈଣାନି ସଖ୍ୟାନି ସନ୍ତି ସାଲାବୃକାଣାଂ ହୃଦୟାନ୍ୟେତା ।

ଉର୍ବଶୀ କହିଲେ, "ହେ ପୁରୁରବା । ମୁଁ ଆପଣଙ୍କର ଶୁଭ କାମନା କରୁଛି । ଆପଣ କୌଣସି ସାମ୍ଭାବ୍ୟ ଦୁର୍ଯ୍ୟୋଗର ସମ୍ମୁଖୀନ ହେବେ ନାହିଁ । ମନେରଖନ୍ତୁ, ମର୍ଯ୍ୟାଦାଭଙ୍ଗ ଏକ ଗର୍ହିତ ଅପରାଧ । ଏ ଦିଗରେ ନାରୀମାନଙ୍କର ହୃଦୟ ବଡ଼ କଠୋର, ମର୍ଯ୍ୟାଦାଭଙ୍ଗ ହେଲେ ସେମାନଙ୍କର ସ୍ନେହଦାନ ଓ ମିତ୍ରତା ଅତ୍ୟନ୍ତ କ୍ଷଣସ୍ଥାୟୀ ।

ଋସଂ୪। ମ୧୦। ସୂ୯୫। ମନ୍ତ୍ର ୯୮୮୮

# ଉର୍ବଶୀ ଓ ପୁରୁରବା

ଦିନେ ଦେବରାଜ ଦେବଗଣ ସାଥେ
ଦେବ ସଭା ମଧ୍ୟେ ବସି
ମହା ଆନନ୍ଦରେ ଉର୍ବଶୀଙ୍କର
ନୃତ୍ୟ ଦେଖୁଥିଲେ ହସି ।
କି ତାଳ ତରଙ୍ଗ ଲୀଳାୟିତ ଅଙ୍ଗ
ମାଦକ ମୋହିତ ଭରା
ନୃତ୍ୟ ଛଳ ଛଳ କାନ୍ତ କୋମଳ
ଚରଣ ଯୁଗଳ ଧାରା ।
ନୂପୁର ନିକ୍ୱଣ, ରୁମ୍‌ଝୁମ୍ ତାନ
ତାଳେ ତାଳେ ଅଙ୍ଗନ୍ୟାସ
ମନ ମୋହୁଥିଲା ଦେବେଶ ନରେଶ
ମୁଗ୍ଧ ଅଧର ଲାସ୍ୟ ।
ଚଳ ଚଞ୍ଚଳ ନୟନ ବିଳାସେ
କୋଟି କାମନାର ଖେଳ
ଶୃଙ୍ଗାର ସୁଧା ଝରୁଥିଲା ତହୁଁ
ହେଉଥିଲା ଢଳ ଢଳ ।

ନୟନ ଅତିଥି ପୁରୁରବାଙ୍କର -
କନ୍ଦର୍ପଜିଣା ରୂପ
ଉର୍ବଶୀ ହେଲେ ମୋହ ମୂର୍ଚ୍ଛିତା
ଲାଳସା ଲୋହିତ ଭୂପ ।
ଲାସ୍ୟମୟୀର ଲଳିତ ନୃତ୍ୟ
ହୋଇଲା ଛନ୍ଦହରା
ବନ୍ଦି ହୋଇଲେ ସୁର ସୁନ୍ଦରୀ
ନୃପତି ନୟନ କାରା ।
ବେନି ମନ ଗଲା ଢଳି
ମର୍ଯ୍ୟାଦା ଗଲେ ଭୁଲି ।

କ୍ରୋଧ କମ୍ପିତ ଦେବେନ୍ଦ୍ର ତାଙ୍କୁ
ଦେଲେ ଘୋର ଅଭିଶାପ
ମର୍ତ୍ତ୍ୟବାସିନୀ ପୁରୁରବା ରାଣୀ -
ହୋଇ, ଭୋଗ ପରାଭବ ।
ଆସକ୍ତି ନରେ ନ ଅଟଇ କ୍ଷମଣୀୟ,
'ମର୍ଯ୍ୟାଦା ଭଙ୍ଗ କରିଲେ ରାଜନ'
ଫେରିବ ସ୍ୱାର୍ଗାଳୟ ।

ବିଦ୍ୟୁତ୍ ସମ ଅନ୍ତରିକ୍ଷରୁ
ହେଲେ ସେ ମର୍ତ୍ତ୍ୟଗାମୀ
ପୁଣ୍ୟଶ୍ଳୋକ ପୁରୁରବାଙ୍କର
ହେଲେ ପ୍ରାଣାଧିକା ରାଣୀ ।
ଉପଭୋଗ କଲେ ଜୀବନକୁ ଦୁହେଁ
ଶୃଙ୍ଗାର ସୁଧା ପାନେ
ସତେ ଉଡୁଛନ୍ତି ପ୍ରଜାପତି ଦୁଇ
ପ୍ରୀତି ନନ୍ଦନ ବନେ ।

ମର୍ଯ୍ୟାଦା ରେଖା ଲଙ୍ଘିଲେ ଦିନେ
ମୋହାବସେ ନୃପବର
'ସ୍ୱର୍ଗବାସିନୀ ହେଲେ ଉର୍ବଶୀ'
ଅଭିଶାପ ହେଲା ଦୂର ।
ବ୍ୟଥା ଜର୍ଜ୍ଜର ବିରହ କାତର
ବିଳପିଲେ ପୁରୁରବା
ଆଗୋ ପ୍ରିୟତମା । ତୁମ ବିରହରେ
ଝୁରୁଛି ରାତ୍ର ଦିବା ।
ଫେରିଆସ ମୋର ପୁରେ,
ଏ ପ୍ରାଣ ହୋଇବ ଅବେଳେ ପ୍ରୟାଣ
ପ୍ରିୟାର ଶୂନ୍ୟତାରେ ।

ଉର୍ବଶୀ ତାଙ୍କୁ କହିଲେ ମଧୁରେ
କିବା କରିଥାନ୍ତି ମୁହିଁ ?
ନିଜ ଦୋଷେ ନିଜେ ବରଣ କରିଲେ
ବିରହ ବିଚ୍ଛେଦ, ସାଇଁ।
ତଥାପି ଦେଇଛି ସନ୍ତାନ କୋଳେ
ସନ୍ତାପ କର ଦୂର
ଯଶ କୀର୍ତ୍ତିରେ ହସିବ ଜୀବନ
ହେବେ ସିଏ ଶୂର ବୀର।

ମର୍ଯ୍ୟାଦା ତୁମେ ଲଙ୍ଘନ କଲ
ସେନେହ ଭଙ୍ଗ କରି
ଦେବାଧିଶାପରୁ ମୁକ୍ତ ହୋଇଛି
ଆଉ ନପାରିବି ଫେରି।
ତୁମ ପାଇଁ ମୁହିଁ ରଚି ଦେଇଅଛି
ନନ୍ଦନ ବନ ଟିଏ
ସେଇଠେ ଖୋଜିଲେ ପାଇବ ମୋ'ର
ମୁଗ୍ଧ ସ୍ମୃତିରୁ ଖିଏ।
ନାରୀର ହୃଦୟ ଯେତିକି କୋମଳ
ସେତିକି କଠୋରତର
ସେନେହ ଶରଧା ମିତ୍ରତା ତା'ର
ଅଟଇ ପାଣିର ଗାର -
ବିଶ୍ୱାସ ଆଉ ମର୍ଯ୍ୟାଦା ହେଲେ ଭଙ୍ଗ,
ଫିକା ପଡ଼ିଯାଏ ପ୍ରୀତି ପ୍ରତ୍ୟୟତା'
ଇନ୍ଦ୍ରଧନୁର ରଙ୍ଗ।
ଜୀବନ ନୁହଇ ମାୟା ବନ୍ଧନ
ବିଳାପ ନକର ଶୋକେ,
ଭେଟିବ ତୁମେ ହେ ନିତିନିତି ମୋତେ
ଘନ ବାଦଲର ବୁକେ।

•

ବି.ଦ୍ର. ଏହା ଏକ ପ୍ରତୀକାତ୍ମକ କବିତା। ଉର୍ବଶୀ ପ୍ରକୃତିର ପ୍ରତିରୂପ ଏବଂ ପୁରୁରବା ପୁରୁଷର ପ୍ରତିନିଧି। ମର୍ଯ୍ୟାଦା ଲଙ୍ଘନ କଲେ ପ୍ରକୃତି ମଧ୍ୟ ବିଦ୍ରୋହ କରେ।

- ଓଷଧୀରିତି ମାତରସ୍ତଦ୍ଵୋ ଦେବୀରୁପ ବ୍ରୁବେ
  ସନେୟମଶ୍ଵଂ ଗାଂ ବାସ ଆତ୍ମନଂ ତବ ପୂରୁଷ ।

ଋ.ସଂ.୪ । ମ୧୦ । ସୂ୯୭ । ମନ୍ତ୍ର ୯୯୦୮

ହେ ଔଷଧ ସମୂହ । ତୁମେମାନେ ଦିବ୍ୟଶକ୍ତି ସମ୍ପନ୍ନ । ଏବଂ ତୁମ ମଧ୍ୟରେ ମା'ପରି, ପାଳନ ଓ ପୋଷଣଶକ୍ତି ଅଛି । ମୋତେ ଓ ମୋର ପାଳିତ ପଶୁମାନଙ୍କୁ ନିରୋଗ ଏବଂ ସ୍ୱାସ୍ଥ୍ୟ ସମ୍ପନ୍ନ କରିବାପାଇଁ ମୁଁ ଚିକିତ୍ସକ ଯଜ୍ଞ ପୁରୁଷଙ୍କ ପାଖରେ ସ୍ତୁତିଗାନ କରି ନିଜକୁ ଅର୍ପଣ କରୁଛି ।

- ଅଶ୍ୱାବତୀ ସୋମାବତୀମୂର୍ଜୟନ୍ତୀମୁଦୋଜସମ
  ଆବିତ୍ସି ସର୍ବା ଓଷଧୀରସ୍ମା ଅରିଷ୍ଟତାତୟେ ।

ଋ.ସଂ. ୪ । ମ୧୦ । ସୂ ୯୭ । ମନ୍ତ୍ର ୯୯୧୧

ଏହି ଯଜ୍ଞକର୍ତ୍ତାମାନଙ୍କର ସମସ୍ତ ରୋଗନିବାରଣ ପାଇଁ ଆମେ, ସମସ୍ତ ଶକ୍ତି ପ୍ରଦାୟକ, ଶାନ୍ତିଦାୟକ, ଉର୍ଜ୍ଜଃବା ତେଜୋମୟ ଓଜଃ ବର୍ଦ୍ଧକ ଔଷଧର ଦିବ୍ୟ ଦ୍ରବ୍ୟଗୁଣ ସହିତ ପରିଚିତ ଅଛୁ ।

- ଅନ୍ୟା ବୋ ଅନ୍ୟାମବତ୍ୱନ୍ୟାନ୍ୟସା ଉପାବତ
  ତାଃ ସର୍ବାଃ ସଂବିଦାନା ଇଦଂ ମେ ପ୍ରାବତା ବଚଃ ।

ଋ.ସଂ. ୪ । ମ୧୦ । ସୂ ୯୭ । ମନ୍ତ୍ର ୯୯୧୮

ହେ ଔଷଧଗଣ । ପରସ୍ପରର ସାନିଧ୍ୟ ପ୍ରଭାବରେ ତୁମ ଭିତରେ ଔଷଧୀୟ ଗୁଣ ବୃଦ୍ଧିଲାଭ କରୁ । ଏକ ଅନ୍ୟର ବିକାଶରେ ସହାୟକ ହୁଅ । ଗୋଟିଏ ଔଷଧୀୟ ଲତା ଅନ୍ୟ ଏକ ଲତାପାଖକୁ ଆସି ତାର ସାନିଧ୍ୟ ଲାଭରେ ନିଜର ଔଷଧୀୟ ଗୁଣର ଦିବ୍ୟଶକ୍ତି ବିକଶିତ କରୁ । ଏହା ଆମର କାମନା ।

ବି.ଦ୍ର. 'ଔଷଧ' ର ଅର୍ଥ 'ଜ୍ୟୋତିର୍ଲତା', ଯାହା ମଧ୍ୟରୁ ଔଷଧୀୟ ଜ୍ୟୋତି ପ୍ରକଟିତ ହୁଏ । ଏସବୁ ଭେଷଜ ଗୁଣ ସମ୍ପନ୍ନ । ଲତା ସଂହତି, ସେମାନଙ୍କ ମଧ୍ୟରେ ଭେଷଜଗୁଣ ବଢ଼ାଇ ଥାଏ ।

# ଜ୍ୟୋତିର୍ଲତା

ଏ' ପ୍ରକୃତି, ବୃକ୍ଷଲତା ଉଦ୍ଭିଦ ମଣ୍ଡିତା
ଔଷଧୀୟ ଗୁଣେଭରା କେତେ ଜ୍ୟୋତିର୍ଲତା ।
ବସନ୍ତ, ବର୍ଷା, ଶରତେ -
ପଲ୍ଲବିତ ଉଲ୍ଲସିତ ଉଦ୍ଭିଦ ସମୂହ,
ସଂଚାରିତ ହୋଇଥାଏ ତା' ମଧ୍ୟରେ
ଔଷଧୀୟ ପୋଷଣ ପ୍ରବାହ ।

ବିଶ୍ୱର ଜନନୀ ସମ ଦେଇଥାନ୍ତି
ଅଭୟ ସେମାନେ,
ପ୍ରାଣଘାତୀ ବ୍ୟାଧିନାଶି
ନିରାମୟ କରନ୍ତି ଜୀବନେ ।
ବିକାର ବିନାଶି, ଦୂରାରୋଗ୍ୟ ଉପଶମ
କରିଥାନ୍ତି ପ୍ରାଣରସେ ଶକତି ସମ୍ପନ୍ନ ।

ଦିବ୍ୟଲୋକୁ ଧରାପୃଷ୍ଠେ ପ୍ରାଣରସ ରୂପେ
ପ୍ରବାହିତ ଔଷଧୀୟ ଶକ୍ତି ଏ ଜଗତେ,
ଉଦ୍ଭିଦ ମଣ୍ଡଳେ, ପତ୍ର, ପୁଷ୍ପ, ଫଳେ
ବିଶ୍ୱର ମଙ୍ଗଳେ ।

ଔଷଧୀୟ ଲତା, ଏକ ଅପରକୁ କରେ ପ୍ରଭାବିତ
ଲତାର ସଂହତି କରେ ଦ୍ରବ୍ୟଗୁଣ ତହିଁ ବିକଶିତ,
ଏକ ଅଟେ ଅନ୍ୟର ପୂରକ
ଶକ୍ତି ପ୍ରଦାୟକ ।
ସବୁ ଲତା ମଧ୍ୟେ ଅଛି ପ୍ରାଣରସ ଭରି
ଶାନ୍ତି ପ୍ରଦାୟକ ତାହା ଅତି ଶକ୍ତିଶାଳୀ,
ଓଜଃସ୍ୱୀତାର ପୋଷକ ଉର୍ଜଃ ପ୍ରଦାୟକ
ବାୟୁମଣ୍ଡଳେ ନିହିତ ଶକ୍ତିର ପୋଷକ ।
ମୁନିଗଣ ମନ୍ତ୍ରସିକ୍ତ ଯଜ୍ଞର ପ୍ରଭାବେ
ଦ୍ରବ୍ୟଗୁଣ ପ୍ରଖରିତ ଲତାଗୁଳ୍ମ ସର୍ବେ ।
ଲତା ଗୁଳ୍ମ ହେ ବଲ୍ଲୀ ବିତାନ ।
ସୁସ୍ଥ ରଖ ଶରୀର ଓ ମନ
ଏ' ବିଶ୍ୱଜୀବନ ।

•

**ଉଚ୍ଚାଦିବି ଦକ୍ଷିଣାବନ୍ତୋ ଅସ୍ଥୁର୍ଯେ୍ୟ ଅଶ୍ୱଦାଃ ସହ ତେ ସୂର୍ଯେ୍ୟଣ**
**ହିରଣ୍ୟଦା ଅମୃତତ୍ୱଂ ଭଜନ୍ତେ ବାସୋଦାଃ ସୋମ ପ୍ର ତିରନ୍ତ ଆୟୁଃ ।**

ମନ୍ତ୍ର ୧୦୦୩୫

ଦାନଶୀଳ ବ୍ୟକ୍ତି, ସ୍ୱର୍ଗର ଉଚ୍ଚପଦରେ ଅଧିଷ୍ଠିତ ହୋଇଥାନ୍ତି । ଯେଉଁମାନେ ଅନ୍ୟର ସୁରକ୍ଷା ପାଇଁ ଶୌର୍ଯ୍ୟ ଦାନ କରନ୍ତି, ସେମାନେ ସୂର୍ଯ୍ୟଙ୍କ ସମାନ ଉଚ୍ଚପଦ ଲାଭ କରନ୍ତି । ଯେ ସୁବର୍ଣ୍ଣାଦି ଦାନକରନ୍ତି, ସେ ଅମରପଦ ଲାଭ କରନ୍ତି । ହେ ସୋମଦେବ ! ଯେ ବସ୍ତ୍ରଦାନ କରନ୍ତି, ସେ ଆପଣଙ୍କର ଆଶୀର୍ବାଦ ଲାଭକରିବା ସହିତ, ଦୀର୍ଘାୟୁ ହୁଅନ୍ତି ।

**ତମେବ ଋଷିଂ ତମୁ ବ୍ରହ୍ମାଣମାହୁର୍ଯଜ୍ଞନ୍ୟଂ ସାମଗାମୁକ୍‌ଥଶାସମ୍**
**ସ ଶୁକ୍ରସ୍ୟ ତନ୍ୱୋ ବେଦ ତିସ୍ରୋ ଯଃ ପ୍ରଥମୋ ଦକ୍ଷିଣୟା ରରାଧ ।**

ମନ୍ତ୍ର ୧୦୦୩୯

ଯେ ଦାନୀ ଓ ଦକ୍ଷିଣା ଦାତା, ତାଙ୍କୁ ତତ୍ତ୍ୱଜ୍ଞାନୀ 'ବ୍ରହ୍ମା' ପଦ ଅର୍ପଣ କରାଯାଏ । ସେ'ବ୍ରହ୍ମଦାନୀ' ଅର୍ଥାତ୍ ସତ୍ ବିଚାର ଦାନ କରନ୍ତି । ଏହା ସର୍ବୋତ୍ତମ ଦାନ । ସେ ପ୍ରକାର ଦାନକର୍ତ୍ତା ଯଜ୍ଞର ଅଧ୍ୟକ୍ଷ, ସାମଗାନ କର୍ତ୍ତା, ତଥା ବେଦମନ୍ତ୍ରର ସ୍ତବନ କର୍ତ୍ତା । ସେ ଅନ୍ନାଦି ଦକ୍ଷିଣା ପ୍ରଦାନ କରି, ସମସ୍ତଙ୍କର ସନ୍ତୋଷ ବିଧାନ କରନ୍ତି । ସଦ୍‌ବିଚାର ସମ୍ପନ୍ନ ବ୍ୟକ୍ତିହିଁ ସର୍ବଶ୍ରେଷ୍ଠ ଦାନୀପୁରୁଷ ।

**ନଭୋଜା ମମ୍ରୁର୍ନ ନ୍ୟର୍ଥମୀୟୁର୍ନ ରିଷ୍ୟନ୍ତି ନ ବ୍ୟଥନ୍ତେ ହ ଭୋଜାଃ ।**
**ଈଦଂ ଯଦ୍ୱିଶ୍ୱଂ ଭୁବନଂ ସ୍ୱର୍ଶ୍ଚୈତସ୍ସର୍ବଂ ଦକ୍ଷିଣୈଭ୍ୟୋ ଦଦାତି ।**

ଋ.ସଂ. ୪ । ମ୧୦ । ସୂ୧୦୭ । ମନ୍ତ୍ର ୧୦୦୪୧

ଯେଉଁବ୍ୟକ୍ତି ଉଦାରତା ସହିତ ଧନଦାନ କରନ୍ତି ଏବଂ ପ୍ରାପ୍ତି ପାଇଁ ଲାଳସା ରଖନ୍ତି ନାହିଁ, ସେ ସ୍ୱାଭାବିକ ଭାବରେ, ସ୍ୱର୍ଗୀୟ ଆନନ୍ଦ ଲାଭକରନ୍ତି । ତାଙ୍କର ଯଶକୀର୍ତ୍ତି ଅମର ରହେ ।

# ଦାନ ଓ ଦକ୍ଷିଣା

ଯେତେ ପୁଣ୍ୟ, ଅଛି ଏ ଜଗତେ
ଦାନ ଧର୍ମ ସର୍ବୋତ୍ତମ ସଦା ପୁଣ୍ୟପଥେ ।
ସୃଷ୍ଟି ସଂରଚନା ବେଳେ ସୃଷ୍ଟ ଅଟେ ଦାନ ପରମ୍ପରା
ସୂର୍ଯ୍ୟ ଦେବ ଢ଼ାଳି ଦେଲେ ଜ୍ୟୋତିର୍ମୟ ଧାରା,
ଦୂର ହେଲା ଘନ ଅନ୍ଧକାର,
ଏ’ ବିଶ୍ୱଭୁବନେ ହେଲା ଜୀବନ ସଂଚାର ।

ବାୟୁ ଓ ବରୁଣ ଦେବ ନିଜ ଦାନ ଦେଇ
ସୃଜନ ଧାରାକୁ ସିଏ ରଖିଲେ ବଞ୍ଚାଇ,
ଦାନମୟ ଏ ବିଶ୍ୱଭୁବନ,
ଦାନଯଜ୍ଞ ଅନାହତ ସୃଜନ ପୋଷଣ ।
କାହାର ଦାନକୁ କେବେ କେ ପାରିବ ଭୁଲି ।
ଧନ, ମନ, ଜ୍ଞାନ ଦାନ, ସେବାଦାନୁ ବଳି
ମହତ୍ତର ଦାନ ପୁଣ୍ୟ ନାହିଁ ଏ ଜଗତେ
ସର୍ବେ ମଗ୍ନ ହୁଅ ଏହି ପୁଣ୍ୟଦାନ ବ୍ରତେ ।

ଜଗତ ମଙ୍ଗଳ ପାଇଁ ଯେ କରନ୍ତି ଦାନ
ଅନ୍ନ, ବସ୍ତ୍ର, ଶୌର୍ଯ୍ୟ, ଅର୍ଥ, ସମ୍ପଦ, ସୁବର୍ଣ୍ଣ,
ତାଙ୍କର ମହାନ୍ ସେଇ ଦିବ୍ୟଭାବ ପାଇଁ
ଲଭନ୍ତି ଅମର ପଦ ସୌଭାଗ୍ୟ ମିଳଇ ।

ଉଦାର ପବିତ୍ର ଭାବେ ଯେ କରନ୍ତି ଦାନ
ଲଭନ୍ତି ପରମଯଶ ବିପୁଳ ସମ୍ମାନ,
ସ୍ଥାନ ତାଙ୍କ ସର୍ବଦା ଉଚ୍ଚରେ,
ପୂଜିତ ହୁଅନ୍ତି ସିଏ, ଜନ ସମାଜରେ ।
ସବୁଦାନ ମଧ୍ୟେ ଶ୍ରେଷ୍ଠ ସଦ୍‌ବିଚାର ଦାନ
ଏହା ଅଟେ ସତ୍ କର୍ମର ପରମ ସୋପାନ,
‘ବ୍ରହ୍ମଦାନ’ ନାମେ ଏହା ଖ୍ୟାତ
ନାମ ହୁଏ ଭୁବନ ବିଖ୍ୟାତ ।
ଦାନ ଧର୍ମେ ବିତୁ ଏ ଜୀବନ
ବରିନେବା ସେ ଉଦାର ମନ ।

•

ପୃଣୀୟାଦିନ୍ନାଧମାନାୟ ତବ୍ୟାନ୍ଦ୍ରାଘୀୟାଂସମନୁ ପଶ୍ୟେତ ପନ୍ଥାମ୍
ଓ ହି ବର୍ତନ୍ତେ ରଥ୍ୟେବ ଚକ୍ରାନ୍ୟମନ୍ୟମୁପ ତିଷ୍ଠନ୍ତ ରାୟଃ ।

ପ୍ରତ୍ୟେକ ସମର୍ଥଶୀଳ ବ୍ୟକ୍ତି, ଯାଚନା ମନୋଭାବ ନେଇ ନିଜ ପାଖକୁ ଆସୁଥିବା ଲୋକକୁ, ନିଜର ସାମର୍ଥ୍ୟ ଅନୁସାରେ ସାହାଯ୍ୟ କରିବା ଉଚିତ୍ । ଧନ ସମ୍ପଦ ଚିରସ୍ଥାୟୀ ନୁହେଁ । ଲକ୍ଷ୍ମୀ ସର୍ବଦା ଚଞ୍ଚଳା । ରଥଚକ ତଳ ଉପର ହେବା ପରି, ବୈଭବ ମଧ୍ୟ ବିପରୀତଗାମୀ ହୋଇଥାଏ । ଯାଚକ ସନ୍ତୁଷ୍ଟ ହେଲେ ଦାନଶୀଳ ବ୍ୟକ୍ତି ଶ୍ରେୟପଥ ଲାଭ କରିଥାଏ ।

ମନ୍ତ୍ର ୧୦୧୩୬

ସମୌ ଚିଦ୍ଧସ୍ତୌ ନ ସମଂ ବିବିଷ୍ଟଃ
ସମ୍ମାତରା ଚିନ୍ନ ସମଂ ଦୁହାତେ,
ଯମୟୋଶ୍ଚିନ୍ନ ସମା ବୀର୍ଯ୍ୟାଣି
ଜ୍ଞାତୀ ଚିତ୍ସନ୍ତୌ ନ ସମଂ ପୃଣୀତଃ ।

ଆମମାନଙ୍କର ହାତଦୁଇଟି ସମାନ ହୋଇଥିଲେ ମଧ୍ୟ, ଉଭୟଙ୍କର ଧାରଣକ୍ଷମତା ସମାନ ନୁହେଁ । ଗୋଟିଏ ମା'ଠାରୁ, ଜନ୍ମଲାଭ କରିଥିବା ସବୁ ଗାଈଙ୍କର ଦୁଗ୍ଧଦାନ କ୍ଷମତା ମଧ୍ୟ ସମାନ ନୁହେଁ । ଦୁଇ ଯାଆଁଳା ସନ୍ତାନଙ୍କର ଶକ୍ତି ସାମର୍ଥ୍ୟ ମଧ୍ୟ ସମାନ ନୁହେଁ । ଗୋଟିଏ କୁଳରୁ ଜାତ ଦୁଇଭାଇଙ୍କର ଦାନ ଦେବାର ମନୋଭାବ ମଧ୍ୟ ଏକାପରି ନୁହେଁ । ଏସବୁ ସମ୍ପୂର୍ଣ୍ଣ ଭାବରେ ବ୍ୟକ୍ତିଗତ ।

ଋ.ସଂ.୪ । ମ ।୦ । ସୂ୧୭ । ମନ୍ତ୍ର ୧୦୧୪୦

# ମହାନୁଭବତା

ଅନ୍ୟର ଯାଚନା ସଦା କର ପରିପୂର୍ଣ୍ଣ
ଏହା ଅଟେ ଏ' ସୃଷ୍ଟିର ମଙ୍ଗଳ ବିଧାନ,
ଏ' ଋଷିବଚନ କେବେ ନକର ଅନ୍ୟଥା
ଧନ ଦାନ, ଅନ୍ନଦାନ କର ସମରଥା ।

ସନ୍ତୁଷ୍ଟ କରିବା ଯଦି ଯାଚକର ମନ
ନିଶ୍ଚିତ ଲଭିବ ତୁମେ ଦାନେ ମହାପୁଣ୍ୟ,
ଜୀବନ ନୁହଇ ଚିର, ଧନ ନୁହେଁ ଚିର
ତା'ଗତି ଚଞ୍ଚଳ ଅଟେ ସର୍ବଦା ଅସ୍ଥିର-
ରଥଚକ ସମ,
ଉପରୁ ତଳକୁ ଗତି, ନଭୁଲେ ସେ କ୍ରମ ।

ମନକୁ କରଇ ଧନ ଲାଳସା ମଥିତ
ସର୍ବଗ୍ରାସ ପଥେ ମନ ସର୍ବଦା ମୋହିତ,
ଯଶ ପଉରୁଷ ପଦ ମର୍ଯ୍ୟାଦା ସକଳ
ଜ୍ଞାନ ମାନ ବିଦ୍ୟା ବୁଦ୍ଧି ବିବେକର ବଳ
ହୁଏ ଶକ୍ତିହୀନ,
ପାଗଳ ହୁଅଇ ମନ ହୋଇ ଧନ ଧନ ।

ସଂକୀର୍ଣ୍ଣ ନକର ମନ ମହାନୁଭବତା
ଦୁସ୍ଥ, ଦୁର୍ଗତ ଦୁଃସ୍ଥିତି ଦୂରକର ସଦା,
ସମାନ ନ ହେଉ ପଛେ ସମସ୍ତଙ୍କ ମନ
ଦୁଇ ବାହୁ ଶକ୍ତି କେବେ ନୁହଇ ସମାନ ।
ଏକମାତା ଗର୍ଭୁ ଜାତ ଯେତେ ସବୁ ଗାଈ
ସମଗୁଣ ଦୁଗ୍ଧବତୀ ନଅଟନ୍ତି କେହି ।
ଯମଜ ସନ୍ତାନ
ଗୁଣ କର୍ମେ ସିଏ ଭିନ୍ନ ଭିନ୍ନ ।
ଧନ ମନ ଯା'ଅଛି ସମ୍ବଳ
ଉପଯୋଗ କରି ତାହା କର ସର୍ବେ
ବିଶ୍ୱର ମଙ୍ଗଳ ।

•

ଯେ ଯଜ୍ଞୋ ବିଶ୍ୱତସ୍ତନ୍ତୁଭିସ୍ତତ
ଏକଶତଂ ଦେବକର୍ମେଭି ରାୟତଃ
ଇମେ ବାୟନ୍ତି ପିତରୋ ଯ ଆୟୟୁଃ
ପ୍ର ବୟାପ ବୟେତ୍ୟାସତେ ତତେ ।

ମନ୍ତ୍ର ୧୦୨୪୭

ଏହି ଯଜ୍ଞମୟ ସୃଷ୍ଟି ଯଜ୍ଞରେ ପଞ୍ଚଭୂତ (କ୍ଷିତି, ଅପ୍, ତେଜଃ, ମରୁତ, ବ୍ୟୋମ)ର ସଂରଚନା କରାଯାଏ । ଦେବଗଣଙ୍କର ଦିବ୍ୟକର୍ମ ଫଳରେ ଏହି ସୃଷ୍ଟିର ସ୍ଥିରତା ଅତୁଟ ରହେ । ଏହି ସୃଷ୍ଟିଯଜ୍ଞରେ ପିତୃ ଦେବତାଗଣ, ସର୍ଜନାରେ ବିବିଧତା ପ୍ରକାଶ କରନ୍ତି । ଉତ୍କୃଷ୍ଟ ଓ ନିକୃଷ୍ଟ ସବୁ କିଛି ସେଇ ସୃଜନ ଧାରାର ଅଂଶ ବିଶେଷ ।

- ଅଗ୍ନେର୍ଗାୟତ୍ର୍ୟଭବତ୍ସୟୁଗ୍ୱୋଷ୍ଣିହୟା ସବିତା ସଂ ବଭୂବ
  ଅନୁଷ୍ଟୁଭା ସୋମ ଊକ୍‌ଥୈର୍ମହସ୍ୱାନ୍ ବୃହସ୍ପତେର୍ବୃହତୀ ବାଚମାବତ୍ ।
- ବିରାଣ୍ମିତ୍ରାବରୁଣୟୋରଭିଶ୍ରୀରିନ୍ଦ୍ରସ୍ୟ ତ୍ରିଷ୍ଟୁବିହ ଭାଗୋ ଅହ୍ନଃ
  ବିଶ୍ୱାନ୍ଦେବାଞ୍ଜଗତ୍ୟା ବିବେଶ ତେନ ଚାକ୍ଳୃପ୍ର ଋଷୟୋ ମନୁଷ୍ୟାଃ ।

ଋ.ସଂ.୪ । ମ୧୦ । ସୂ୧୩୦ । ମନ୍ତ୍ର ୧୦୨୫୦, ୧୦୨୫୧

ସୃଷ୍ଟି ସମୟରେ ସାତଟି ଛନ୍ଦର ଉତ୍ପତ୍ତି ହେଲା । ଏବଂ ଏହି ସାତଟି ଛନ୍ଦ ସାତଜଣ ଦେବତାଙ୍କୁ ଆଶ୍ରୟ କଲେ । ନିର୍ଦ୍ଦିଷ୍ଟ ଛନ୍ଦରେ ଆଶ୍ରୟ ଦାତା ଦେବତାମାନଙ୍କୁ ଆବାହନ କରାଯାଇ ଯଜ୍ଞଭାଗ ଅର୍ପଣ କରାଯାଏ ।

| | ଛନ୍ଦ | | ସହାୟକ ଦେବତା |
|---|---|---|---|
| ୧. | ଗାୟତ୍ରୀ ଛନ୍ଦ | ............ | ଅଗ୍ନିଦେବ |
| ୨. | ଉଷ୍ଣୀକ ଛନ୍ଦ | ............ | ସବିତା ଦେବ |
| ୩. | ଅନୁଷ୍ଟୁପ୍ ଛନ୍ଦ | ............ | ସୋମଦେବ |
| ୪. | ବୃହତି ଛନ୍ଦ | ............ | ବୃହସ୍ପତି ଦେବଙ୍କ ବାଣୀର ଆଶ୍ରୟ |
| ୫. | ବିରାଟ ଛନ୍ଦ | ............ | ମିତ୍ରାବରୁଣ |
| ୬. | ଜଗତୀ ଛନ୍ଦ | ............ | ଦେବଗଣ |
| ୭. | ତ୍ରିଷ୍ଟୁପ୍ ଛନ୍ଦ | ............ | ଇନ୍ଦ୍ରଦେବ । |

## ସୃଷ୍ଟି ଯଜ୍ଞର ଛନ୍ଦ

ଯଜ୍ଞମୟ ଅଟେ ସୃଷ୍ଟି, ଦିବ୍ୟ ତା'ର ତତ୍ତ୍ୱ
ସଂରଚନା କରେ ପଞ୍ଚଭୂତ,
ପ୍ରଜାପତି ଏ ଯଜ୍ଞର କର୍ତ୍ତା
ଦେବତାଙ୍କ ଦିବ୍ୟକର୍ମେ ଅଟେ ଚିର ଏ ସୃଷ୍ଟିବିଚିତ୍ରା ।
ସୃଷ୍ଟିଯଜ୍ଞେ ଶକ୍ତିତାଙ୍କ ଠୁଳ
ଦିବ୍ୟଶକ୍ତି ଉପାଦାନେ ଅଟେ ତା' ପୁଷ୍କଳ
ସାମ ସୁଖ କରିଥାଏ ଦାନ
ପ୍ରମୁଦିତ ଏ ବିଶ୍ୱଜୀବନ ।

ସର୍ଜନା ଏକୁତ୍ରିଶାଳେ ଶୁଣାଗଲା-
ନବଜାତ ଶିଶୁର କ୍ରନ୍ଦନ,
କୁଆଁ...କୁଆଁ..ତାନ
ଛନ୍ଦ ରାଗ ତାଳ ମାନ ଲୟେ
ସପ୍ତଶିଶୁ ସପ୍ତଛନ୍ଦେ, ସେ ଯଜ୍ଞ ଆଳୟେ ।

ଅଗ୍ନିଦେବତା ପାଳିଲେ 'ଗାୟତ୍ରୀ' ଛନ୍ଦକୁ
ସବିତା ଦେବ ସହାୟ ହେଲେ 'ଉଷ୍ଣୀକ୍'କୁ,
ସୋମ ଦେବ 'ଅନୁଷ୍ଟୁପ୍' ଛନ୍ଦ ନେଲେ ବରି
ସତେ ଅବା ଯଜ୍ଞ ପୀଠୁ ଦେବ ଶିଶୁ ପରି ।
ବୃହସ୍ପତିଙ୍କ ବାଣୀକୁ ଆଶ୍ରିଲା 'ବୃହତି'
ବିମୋହିତ ଦେବଗଣ ହେଲେ ଛନ୍ଦପତି ।
'ବିରାଟ' ଛନ୍ଦ ବରିଲା ମିତ୍ରାବରୁଣଙ୍କୁ
ଅନ୍ୟ ଦେବଗଣ ନେଲେ 'ଜଗତୀ' ଛନ୍ଦକୁ ।
ଯଜ୍ଞ ଭାଗ କରିଲେ ଗ୍ରହଣ,
ସେଇଛନ୍ଦେ ସେ ଦେବତା ହେଲେ ଆବାହନ ।

ଏ'ସଂସାରେ ଯଜ୍ଞଧାରା ହେଲା ଅନୁସୃତ
ଯଥା ବିଧି ହୋଇଛି ନିର୍ଣ୍ଣିତ,
ଯଜ୍ଞ ପରମ୍ପରା ରକ୍ଷା କଲେ ଋଷିଗଣ
ସେ ଦିନୁ ହୋଇଲା ବିଶ୍ୱେ ଯଜ୍ଞ ଅନୁଷ୍ଠାନ ।

•

- ଅରଣ୍ୟାନ୍ୟରଣ୍ୟାନ୍ୟସୌ ଯା ପ୍ରେବ ନଶ୍ୟସି
କଥାଗ୍ରାମଂ ନ ପୃଚ୍ଛସି ନ ତ୍ୱା ଭୀରିବ ବିନ୍ଦତୀଁ

- ବୃଷାରବାୟ ବଦତେ ଯଦୁପାବତି ଚିଚିକଃ
ଆଘାଟିଭିରିବ ଧାବୟନ୍ନରଣ୍ୟାନିର୍ମହୀୟତେ ।

ମନ୍ତ୍ର ୧୦୩୫୩, ୧୦୩୫୪

ହେ ବନଦେବି ! ତୁମେ ବନପୁରୀର ଏକ ଅଦୃଶ୍ୟ ସତ୍ତା, ପୁଣି ଘନ ନିର୍ଜନତା ମଧ୍ୟରେ ତୁମେ ରୂପ ପରିଗ୍ରହଣ କରିଥାଅ । ତୁମେ ଗ୍ରାମମୁଖୀ ହେବାପାଇଁ କାହିଁକି ଇଚ୍ଛା କରନାହିଁ । ନିର୍ଜନ ବନକୁ ତୁମେ କାହିଁକି ଏତେ ଭଲପାଅ । ତୁମକୁ କଣ ଭୟ ଲାଗେ ନାହିଁ । ସେଠାରେ ପ୍ରାଣୀମାନେ ବିଭିନ୍ନ ପ୍ରକାରର ଶବ୍ଦ କରିଥାନ୍ତି । ତାହା କଣ ପଶୁପକ୍ଷୀମାନଙ୍କ ମଧ୍ୟରେ ମଧୁର ବାର୍ତ୍ତାଳାପ । ସେସବୁ ଧ୍ୱନିପ୍ରବାହମିଶି ସତେ ଯେପରି ବନବୀଣାର ସ୍ୱର ସୃଷ୍ଟି କରୁଛି । ଏହା ତୁମ ପାଇଁ ଅଭିପ୍ରେତ ବନ୍ଦନା ଗୀତି ।

- "ନ ବା ଅରଣ୍ୟାନିର୍ହନ୍ତ୍ୟନ୍ୟଶ୍ଚେନ୍ନାଭିଗଚ୍ଛତି
ସ୍ୱାଦୋଃ ଫଳସ୍ୟ ଜଗ୍ଧ୍ୱାୟ ଯଥାକାମଂ ନି ପଦ୍ୟତେ ।"

ଋ.ସ. ୪ । ମ୧୦ । ସୂ ୧୪୭ । ମନ୍ତ୍ର ୧୦୩୫୭

ହେ ଅରଣ୍ୟ ଦେବି ! ତୁମେ କାହାକୁ ହିଂସା କରନାହିଁ । ହିଂସ୍ରଜନ୍ତୁମାନେ ମଧ୍ୟ ଆକ୍ରମଣ କରନ୍ତି ନାହିଁ । ସହାବସ୍ଥାନ ଭିତ୍ତିରେ ପଶୁ, ପକ୍ଷୀ ମଣିଷ ଉଦ୍ଭିଦଗଣ ଏକତ୍ର ବାସ କରନ୍ତି । ବନର ସ୍ୱାଦିଷ୍ଟ ଫୁଲ ଫଳ ପ୍ରଭୃତି ଆହାର ରୂପେ ଗ୍ରହଣ କରନ୍ତି । ସ୍ୱେଚ୍ଛାରେ ସମସ୍ତେ ଆନନ୍ଦରେ ବାସ କରନ୍ତି । ତୁମେ ସହାବସ୍ଥାନର ମିଳନ ମଣ୍ଡପ ।

# ବନ ପ୍ରକୃତି

ବନ ଦେବୀ ବନ ବନ୍ଦନୀୟା ଗୋ ।
ବନପୁରେ କର ବାସ
ବନେ ବନେ ତୁମେ ବିଚରଣ କର
ବନେ ଲଭି ପରିତୋଷ ।
ବନ ରାଜପୁରୀ ତୁମ,
ସଜ୍ଜିତ ସଦା କେତେ ତରୁଲତା
ସୁନ୍ଦର ଅନୁପମ ।

ଘଞ୍ଚ ବନାନୀ ବୁକେ ତୁମେ କ'ଣ
ବାଟ ପାଅନାହିଁ ଖୋଜି
ପଲ୍ଲୀ ପୁରକୁ ବିଜେ କର ନାହିଁ
ବନେ ଯାଅ ବୋଲି ହଜି ।
ନିର୍ଜନ ବନ ପୁରେ
ଏକାକୀ କାହିଁକି ରହିବାକୁ ଚାହଁ
ଆମଠାରୁ ରହି ଦୂରେ ।

ପକ୍ଷୀ କାକଳିକୁଞ୍ଜକାନନେ
ମହୁମାଛି ଗୁଣୁଗାନେ
ଗାଈଆଳପିଲା ବଂଶୀ ବଜାଏ
ହଜିଯାଏ ସେହିତାନେ ।
ବନରେ ଅଛନ୍ତି ଯେତେ ପଶୁପକ୍ଷୀ
ତୋଳନ୍ତି ଶବଦ ନଈ
ବହିଯାଏ ତାହା କାନରୁ କାନକୁ
କେତେ କଥା କହି କହି ।
କରି ତୁମ ଗୁଣ ଗାନ,
ସବୁ ସ୍ୱର ମିଶି ହୋଇଯାଏ ସତେ
ସେଇ ବଣ ବୀଣା ତାନ ।

ତୁମେ ତ କାହାକୁ ହିଂସା କରନି
ଆଗୋ ଅରଣ୍ୟ ଦେବି !
ଖାଦ୍ୟ, ଖାଦକ ରହନ୍ତି ଏଠାରେ,
ସହାବସ୍ଥାନ ବେଦି -
ଅଟଇ ତୁମର ପୁର,
ଦିଅଇ ସରବେ ମଧୁର ଖାଦ୍ୟ
ଗଛ ଲତା, ଫୁଲ ଫଳ ।

ପଶୁ ପକ୍ଷୀଙ୍କର ଜନନୀ ତୁମେ ଗୋ
ସ୍ନେହମୟୀ ବନଦେବି !
ତୁମ ସେ ପୁରକୁ ମହକିତ କରେ
ବନ ଫୁଲ ମୃଗନାଭି ।
ପାହାଡ଼ ଝରଣା ଗାନ
ଅନାଦି କାଳରୁ ଟାଣି ରଖିଅଛି
କେତେ ମୁନିଜନ ମନ ।
ପ୍ରଣମୁଛୁ ତୁମ ପଦେ
ଶାନ୍ତିମୟୀ ଗୋ ! ଶାନ୍ତି ପ୍ରଦାନ
କର ଏ' ନିଖିଳ ହୃଦେ ।

•

# କାୟାକଳ୍ପ

ଯୁବଂ ବିପ୍ରସ୍ୟ ଜରଣାମୁପେୟୁଷଃ ପୁନଃ କଲେରକୃଣୁତଂ ଯୁବଦ୍ୱୟଃ
ଯୁବଂ ବନ୍ଦନମୃଶ୍ୟଦାଦୁଦୂପଥୁର୍ଯ୍ୟୁବଂ ସଦ୍ୟୋ ବିଶ୍ପଲାମେତବେ କୃଥଃ ।

ଋ.ସଂ.୪ । ମ୧୦ । ସୂ ୩୯ । ମନ୍ତ୍ର ୯ ୨୦୩

ହେ ସ୍ୱର୍ଗ ବୈଦ୍ୟ ଅଶ୍ୱିନିକୁମାର ଦ୍ୱୟ ! ଜରାଗ୍ରସ୍ତ ଚ୍ୟବନଋଷି ଆପଣମାନଙ୍କ ଦ୍ୱାରା ନବ ଯୌବନ ଲାଭ କରିଥିଲେ । ପତ୍ନୀଶୋକ ଗ୍ରସ୍ତ ଚନ୍ଦନଋଷିଙ୍କୁ କୂପ ମଧ୍ୟରୁ ଆପଣ ରକ୍ଷା କରିଥିଲେ । ବିକଳାଙ୍ଗ ବିଶ୍ପଲାର ଗୋଡ଼ରେ ଲୌହଜଙ୍ଘିଂ ରୋପଣ କରି ତାଙ୍କୁ ଚଳଚଞ୍ଚଳ କରିଥିଲେ । ଏଥିରୁ ଜଣାଯାଏ, ବୈଦିକ ଯୁଗରେ 'କାୟାକଳ୍ପ' ବା ଅଙ୍ଗ ପ୍ରତିରୋପଣ ବ୍ୟବସ୍ଥା ଥିଲା ।

ଆଜିର ବିଜ୍ଞାନ ନୁହେଁ କାୟାକଳ୍ପ ବିଧି,
ଅତିକ୍ରମି ଅଛି ତାହା କାଳର ଅବଧି ।
ବୈଦିକ ଯୁଗରେ ଥିଲେ ଶଲ୍ୟ ବିଶାରଦ
ଅଶ୍ୱିନୀ କୁମାର ଦ୍ୱୟ ଥିଲେ ସ୍ୱର୍ଗ ବୈଦ୍ୟ,
ଜାଣିଥିଲେ ସେ ଶଲ୍ୟ ବିଧାନ
କରୁଥିଲେ ଅଙ୍ଗ ନେଇ ସେ ପ୍ରତିରୋପଣ ।
ଶାପଗ୍ରସ୍ତ ଜରାଜୀର୍ଣ୍ଣ ଚ୍ୟବନ ଋଷିଙ୍କୁ -
ବେନି ବୈଦ୍ୟ ଅଶ୍ୱିନୀ କୁମାର,
ପ୍ରଦାନ କରିଲେ ତୁଷ୍ଟେ ଯୌବନ ସମ୍ଭାର ।
କୂପରେ ପତିତ ହୋଇ ଚନ୍ଦନ ଋଷି
ହୋଇଥିଲେ ଅଙ୍ଗହରା ପୁଣି,
ଅଙ୍ଗ ପ୍ରତିରୋପଣରେ
ସୁସ୍ଥ ହେଲେ ମୁନି ।
ବିକଳାଙ୍ଗ ବିଶ୍ପଳା ହରାଇଲେ ଛନ୍ଦମୟ ଗତି
ସୌନ୍ଦର୍ଯ୍ୟ ସମ୍ପନ୍ନା ନାରୀ ବିଷାଦିତ ମତି
ପ୍ରତିରୋପିତ ହୋଇଲା ଲୌହଜଙ୍ଘି,
ଭଗ୍ନ ଗୋଡ଼େ ବଳ-
ଲାଭ କରି, କରିଥିଲେ ସେ ଚଳପ୍ରଚଳ,
ସେ ପାଇଲେ ନୂତନ ଜୀବନ
ଅଶ୍ୱିନୀ କୁମାରଙ୍କର ଅଟେ ମହାଦାନ ।

•

- ଶ୍ରଦ୍ଧୟାଗ୍ନିଃ ସମିଧ୍ୟତେ ଶ୍ରଦ୍ଧୟା ହୂୟତେ ହବିଃ
  ଶ୍ରଦ୍ଧାଂ ଭଗସ୍ୟ ମୂର୍ଧନି ବଚସା ବେଦୟାମସି ।

ମନ୍ତ୍ର ୧୦୩୭୯

- ପ୍ରିୟଂ ଶ୍ରଦ୍ଧେ ଦଦତଃ ପ୍ରିୟଂ ଶ୍ରଦ୍ଧେ ଦିଦାସତଃ
  ପ୍ରିୟଂ ଭୋଜେଷୁ ଯଜ୍ୱସ୍ୱିଦଂ ମ ଉଦିତଂ କୃଧି ।

ମନ୍ତ୍ର ୧୦୩୮୦

- ଶ୍ରଦ୍ଧାଂ ପ୍ରାତର୍ହବାମହେ ଶ୍ରଦ୍ଧାଂ ମଧ୍ୟଂଦିନ ପରି
  ଶ୍ରଦ୍ଧାଂ ସୂର୍ଯ୍ୟସ୍ୟ ନିମ୍ରୁଚି ଶ୍ରଦ୍ଧେ ଶ୍ରଦ୍ଧାପୟେହ ନଃ ।

ମନ୍ତ୍ର ୧୦୩୮୨

- ଶ୍ରଦ୍ଧାଂ ଦେବା ଯଜମାନା ବାୟୁଗୋପା ଉପାସତେ
  ଶ୍ରଦ୍ଧାଂ ହୃଦୟ୍ୟ ଯାକୂତ୍ୟା ଶ୍ରଦ୍ଧୟା ବିନ୍ଦତେ ବସୁ ।

ଋ.ସଂ.୪ । ମ୧୦ । ସୂ ୧୫୧ । ମନ୍ତ୍ର ୧୦୩୮୨, ୧୦୩୮୩

ଜୀବନ ଏକ ଯଜ୍ଞ । ଶ୍ରଦ୍ଧା ଦ୍ୱାରା ଯଜ୍ଞାଗ୍ନିକୁ ପ୍ରଜ୍ୱଳିତ କରାଯାଇ ପାରେ । ସମସ୍ତ ଐଶ୍ୱର୍ଯ୍ୟ ଓ ବିଭୂତିର ମୂଳାଧାର ହେଉଛି ଶ୍ରଦ୍ଧା । ଏକଥା ସବୁବେଳେ ସମସ୍ତେ କହି ଆସିଛନ୍ତି ।

ହେ ଶ୍ରଦ୍ଧା ଦେବତା ! ଶ୍ରଦ୍ଧାଦାନ କରୁଥିବା ବ୍ୟକ୍ତିକୁ ତୁମେ ଅଭିଷ୍ଟ ଫଳ ପ୍ରଦାନକର । ଶ୍ରଦ୍ଧାର ସହିତ ଦାନଦେବାର ମନୋଭାବ ଯେଉଁମାନଙ୍କର ଅଛି ସେମାନଙ୍କର ମନୋବାଞ୍ଛା ମଧ୍ୟ ପୂରଣ କର । ଯାଜକମାନେ ନିଜର ବାଞ୍ଛିତ ଫଳ ଲାଭ କରନ୍ତୁ ।

ପ୍ରାତଃ କାଳରେ ଶ୍ରଦ୍ଧାଦେବୀଙ୍କୁ ଆବାହନ କରାଯାଏ । ମଧ୍ୟାହ୍ନ ସମୟରେ ମଧ୍ୟ ଆମେ ତାଙ୍କୁ ଆବାହନକରୁ । ସୂର୍ଯ୍ୟାସ୍ତ ସମୟରେ ଶ୍ରଦ୍ଧାଦେବଙ୍କୁ ଉପାସନା କରାଯାଏ । ହେ ଶ୍ରଦ୍ଧାଦେବ ! ଆମର ହୃଦୟକୁ ଶ୍ରଦ୍ଧାମୟ କର ।

ବାୟୁ ଦେବଙ୍କ ସଂରକ୍ଷଣ ନିମିତ୍ତ ଦେବ ଓ ମନୁଷ୍ୟଗଣ, ଶ୍ରଦ୍ଧାଦେବଙ୍କର ଉପାସନା କରିଥାନ୍ତି । ମନମଧ୍ୟରେ କୌଣସି ସଂକଳ୍ପ ଉଦିତହେଲେ, ତାହା ଶ୍ରଦ୍ଧାର ବିନା ସହଯୋଗରେ କାର୍ଯ୍ୟରେ ପରିଣତ ହୋଇପାରେ ନାହିଁ । ଶ୍ରଦ୍ଧା ବଳରେ ମଣିଷ ବିଭବଶାଳୀ ହୋଇପାରେ ।

# ଶ୍ରଦ୍ଧା

ଜୀବନ ଯଜ୍ଞେ ଢାଳ ଶ୍ରଦ୍ଧା ଆହୁତି
ହୋଇବେ ପ୍ରଜ୍ଜ୍ୱଳିତ ଅଗ୍ନି ଭୂପତି,
ଜୀବନେ ଲଭେ ଯେତେ ବିଭୂତି ନର
ଶ୍ରଦ୍ଧା ବିଭୂତି ସର୍ବଶ୍ରେଷ୍ଠ ସୁନ୍ଦର ।
ଏକଥା କହିଛନ୍ତି ସରବେ ସଦା
ଶାସ୍ତ୍ର ବଚନ ଏ'ତ ନୁହେଁ ଅନ୍ୟଥା ।

ଶ୍ରଦ୍ଧା ଦାତାର ହେଉ ବାଞ୍ଛା ପୂରଣ
ଯେ କରିଥାନ୍ତି ଦାନ ଭାବ ପୋଷଣ,
ଯାଜ୍ଞିକ ଜନେ ମିଳୁ ଅଭିଷ୍ଟ ଫଳ
ହେ ଦେବ ! କର ନାହିଁ କା'ରେ ନିଷ୍ଫଳ ।
ଶ୍ରଦ୍ଧାରେ ବଢ଼େ ସଦା ବିଶ୍ୱାସ ଭାବ
ଶ୍ରଦ୍ଧାଳୁ କର ସର୍ବେ, ହେ ଶ୍ରଦ୍ଧାଦେବ !

ଦେବ ମାନବ ସର୍ବେ ପୂଜନ୍ତି ଯାଇ
ବାୟୁଦେବଙ୍କୁ ତୁଷ୍ଟି ବିଧାନପାଇଁ,
ଶ୍ରଦ୍ଧା ଦେବଙ୍କୁ କରି ଅନୁସରଣ
ମନସ୍କାମନା କରିଥାନ୍ତି ପୂରଣ ।

ଜାଗ୍ରତ ହେଲେ ମନେ ସଂକଳ୍ପ ସୁଧା
ପୂରଣ କରିପାରେ ତାହାକୁ ଶ୍ରଦ୍ଧା,
ଶ୍ରଦ୍ଧାବଳେ ମିଳଇ ସର୍ବ ସମ୍ପଦ
ଐଶ୍ୱର୍ଯ୍ୟ ବଇଭବ ସେ ଉଚ୍ଚପଦ ।

ପ୍ରାତେ ମଧ୍ୟାହ୍ନେ ସୂର୍ଯ୍ୟ ଅସ୍ତକାଳରେ
ଶ୍ରଦ୍ଧାରେ ଉପାସନା କରନ୍ତି ନରେ,
ପୂଜିତ ହୋଇଥାନ୍ତି ଶ୍ରଦ୍ଧା ଦେବତା
ପ୍ରଚାରିଥାନ୍ତି ବିଶ୍ୱେ ଶ୍ରଦ୍ଧା ବାରତା
ନିଖିଳ ପ୍ରାଣ ହେଉ ଶ୍ରଦ୍ଧା ପୂରିତ
ଶ୍ରଦ୍ଧାରେ ସୂର୍ଯ୍ୟ ଚନ୍ଦ୍ର ନିତି ଉଦିତ ।

ଶ୍ରଦ୍ଧାରେ ବହେ ବାତ ଏ ବିଶ୍ୱ ବୁକେ
ଶ୍ରଦ୍ଧା ନିର୍ଝର ଝରେ ପ୍ରାଣେ ପୁଲକେ ।
ହେ ପ୍ରଭୁ ଶ୍ରଦ୍ଧା ଦେବ ! ଅନ୍ତର ଆମ
କରିଦିଅ ପବିତ୍ର ଶ୍ରଦ୍ଧାର ଧାମ,
ଶ୍ରଦ୍ଧାର ଜୟ,
ବିଶ୍ୱ ଜୀବନେ କେବେ ନହେଉ କ୍ଷୟ ।

•

ବାତସ୍ୟ ନୁ ମହିମାନଂ ରଥସ୍ୟ ରୁଜନ୍ନେତିସ୍ତନୟନ୍ନସ୍ୟ ଘୋଷଃ
ଦିବିସ୍ପୃଗ୍ୟାତ୍ୟରୁଣାନି କୃଣ୍ୱନ୍ନୁତୋ ଏତି ପୃଥିବ୍ୟା ରେଣୁମସ୍ୟନ୍ ।

ମନ୍ତ୍ର ୧୦୪୬୬

ବାୟୁ ଦେବଙ୍କର ଗତି ଅତ୍ୟନ୍ତ ତୀବ୍ର । ସେ ବିଭିନ୍ନ ପ୍ରକାର ଧ୍ୱନି ସୃଷ୍ଟି କରିବା ସହିତ, ବୃକ୍ଷମାନଙ୍କୁ ଆନ୍ଦୋଳିତ କରି, ବିଭିନ୍ନ ଦିଗକୁ ଗତି କରନ୍ତି । ସେ ଆକାଶ ସାରା ପରିବ୍ୟାପ୍ତ ହୋଇ ଧୂଳିକଣା ସବୁକୁ ଚତୁର୍ଦ୍ଦିଗରେ ବିଚ୍ଛୁରିତ କରିଥାନ୍ତି । ଆମେ ବାୟୁ ଦେବଙ୍କର ମହିମା କୀର୍ତ୍ତନ କରୁଛୁ ।

ଆତ୍ମା ଦେବାନାଂ ଭୁବନସ୍ୟ ଗର୍ଭୋ
ଯଥାବଶଂ ଚରତି ଦେବ ଏଷଃ,
ଘୋଷା ଇଦସ୍ୟ ଶୃଣ୍ୱିରେ ନ ରୂପଂ
ତସ୍ମୈ ବାତାୟ ହବିଷା ବିଧେମ ।

ଋ.ସଂ.୪ । ମ୧୦ । ସୂ ୧୬୮ । ମନ୍ତ୍ର ୧୦୪୬୯.

ବାୟୁଦେବ ସମସ୍ତ ଦେବତାଙ୍କର ଆତ୍ମା ସ୍ୱରୂପ ଏବଂ ଭୁବନସବୁର ଗର୍ଭ ରୂପେ ପରିଗଣିତ । ସେ ସ୍ୱାଧୀନ ଭାବରେ ବିଚରଣ କରନ୍ତି । ତାଙ୍କର ପ୍ରବହମାନ ଧାରା ବିଭିନ୍ନ ପ୍ରକାରର ଧ୍ୱନି ସୃଷ୍ଟିକରିଥାଏ । ବାୟୁ ଦେବଙ୍କର ପ୍ରତ୍ୟକ୍ଷ ସ୍ୱରୂପ, ଦୃଷ୍ଟିଗୋଚର ହୁଏନାହିଁ । ବାୟୁ ଦେବଙ୍କୁ ଆମେ ପ୍ରାର୍ଥନା କରିବା ସହିତ, ହବିଃ ଅର୍ପଣ କରୁଛୁ ।

# ବାୟୁ ଦେବ (୨)

ବାୟୁଦେବ ପ୍ରାଣର ଆଧାର
ତୀବ୍ର ତାଙ୍କ ଗତିଧାରା ଅତ୍ୟନ୍ତ ପ୍ରଖର ।
ସେ ଅଟନ୍ତି ଧ୍ୱନିର ଦେବତା,
ପ୍ରବାହିତ ହେଲାବେଳେ -
ସୃଷ୍ଟି ହୁଏ ଧ୍ୱନି ବିଭିନ୍ନତା ।
ପ୍ରବଳ ପ୍ରବାହେ ତାଙ୍କ, ଆନ୍ଦୋଳିତ ହୁଏ ବୃକ୍ଷବୀଥି
ଦିଗେ ଦିଗେ ସେ କରନ୍ତି ଗତି,
ଭରିଯାଏ ଧୂଳି ପଟଳରେ
ଅନ୍ତହୀନ ଆକାଶ ବୁକୁରେ ।

ବାୟୁର ତୀବ୍ର ଗତିରେ କମ୍ପମାନ ଅଟଇ ଭୂଧର
ଚଳମାନ ବାୟୁସଦା ଚଞ୍ଚଳ ଅସ୍ଥିର,
କିପରି ଉତ୍ପତ୍ତି ତାଙ୍କ, କେଉଁଠାରୁ -
ଆସନ୍ତି ସେ ଏ ମହି ମଣ୍ଡଳେ,
ଅଗୋଚର ନରେ ।

ବାୟୁଦେବ, ଦେବଗଣ ଆତ୍ମାର ସ୍ୱରୂପ
ସର୍ବ ଭୁବନର ସିଏ ନିତ୍ୟ ଗର୍ଭରୂପ,
ରୂପହୀନ, ସେ ଶବ୍ଦାୟମାନ,
ସ୍ପର୍ଶେ ଅନୁଭୂତ ସଦା, ପ୍ରତ୍ୟକ୍ଷରେ -
ନୁହନ୍ତି ସେ କେବେ ଦୃଶ୍ୟମାନ ।

ସତ୍ୟ ଧର୍ମ ଅଧିପତି ସିଏ,
ତାଙ୍କ ପାଇଁ ଜୀବ ସଦା ପ୍ରାଣରୂପ ନିଏ ।
ବାୟୁ ଦେବତାଙ୍କୁ ଯଜ୍ଞେ ହବ୍ୟାହୁତି ଦେଇ
ଉପାସନାକରୁ, ବିଶ୍ୱ ମଙ୍ଗଳଧ୍ୟାୟୀ ।
ବାୟୁଦେବ ଘେନ ହେ ପ୍ରଣାମ,
ତୁମେ ସର୍ବନାମ ।

•

- ସଙ୍ଗଚ୍ଛଧ୍ୱଂ ସଂ ବଦଧ୍ୱଂ ସଂ ବୋ ମନାଂସି ଜାନତାମ୍
  ଦେବା ଭାଗଂ ଯଥା ପୂର୍ବେ ସଞ୍ଜାନାନା ଉପାସତେ ।

ମନ୍ତ୍ର୧୦୫୫୦

- ସମାନୋ ମନ୍ତ୍ରଃ ସମିତିଃ ସମାନୀ
  ସମାନଂ ମନଃ ସହ ଚିତ୍ତମେଷାମ୍,
  ସମାନଂ ମନ୍ତ୍ରମଭି ମନ୍ତ୍ରୟେ ବଃ
  ସମାନେନ ବୋ ହବିଷା ଜୁହୋମି ।

ମନ୍ତ୍ର୧୦୫୫୧

- ସମାନୀ ବ ଆକୂତିଃ ସମାନା ହୃଦୟାନି ବଃ
  ସମାନମସ୍ତୁ ବୋ ମନୋ ଯଥା ବଃ ସୁସହାସତି ।

ଋ.ସଂ.୪ । ମ୧୦ ।ସୂ୧୯୧ । ମନ୍ତ୍ର ୧୦୫୫୨

ହେ ଶ୍ରୋତାଗଣ ! ଆପଣମାନେ ଏକତାବଦ୍ଧ ଜୀବନ ଯାପନ କରନ୍ତୁ । ପରସ୍ପର ମଧ୍ୟରେ ସୌହାର୍ଦ୍ଦ୍ୟ ରକ୍ଷା କରି, ସ୍ନେହ ଶ୍ରଦ୍ଧା ବାର୍ତ୍ତାଳାପ ମଧ୍ୟରେ ମିଳିମିଶି ଚଳନ୍ତୁ । ଆପଣମାନଙ୍କର ମନ ଓ ବିଚାରଧାରା ସମାନହେଉ । ଆମର ପୂର୍ବଜମାନେ ସଂହତି ରକ୍ଷାକରି ଦେବୋପାସନା ଏବଂ ଯଜ୍ଞ ପ୍ରଭୃତି ସମ୍ପାଦନ କରୁଥିଲେ । ସେହିପରି ଏକତା ରକ୍ଷାର ଆଦର୍ଶରେ ସମସ୍ତେ ଅନୁପ୍ରାଣିତ ହେବା ଉଚିତ ।

ହେ ଶ୍ରୋତାଗଣ ! ପରସ୍ପରର ମିଳନ ଭିତରେ ସମସ୍ତଙ୍କର ପ୍ରାର୍ଥନାର ଧାରା ସମାନହେଉ । ସମସ୍ତଙ୍କର ଆଚାର, ବିଚାର, ମନ ଓ ଚିତ୍ତବୃତ୍ତି ସମାନହେଉ । ମୁଁ ସମାନ ମନ୍ତ୍ରରେ ଆପଣମାନଙ୍କର ମନକୁ ଅଭିମନ୍ତ୍ରିତ କରୁଛି । ସମାନ ଆହୁତି ପ୍ରଦାନ କରି ଜୀବନକୁ ଯଜ୍ଞମୟ କରୁଛି ।

ହେ ମନୁଷ୍ୟଗଣ ! ଆପଣମାନଙ୍କର ମନ, ହୃଦୟ ଏକ ହେଉ । ବିଚାର ଧାରାରେ ସମତାରହୁ । କାର୍ଯ୍ୟଧାରା ସମଭାବାପନ୍ନ ହେଉ । ଆପଣମାନଙ୍କର ସଂଗଠନ ଶକ୍ତି ବୃଦ୍ଧିକରିବାରେ ଏହା ସହାୟକହେବ । ଏବଂ ସଂହତିରକ୍ଷାର ସୂତ୍ର ରୂପେ କାର୍ଯ୍ୟ କରିବ ।

# ଏକତା

ହେ ପ୍ରଭୁ ! ତୁମ ପଦେ କରୁ ଗୁହାରି
'ସମ ମନ'ର ହେଉ ହେ ଅଧିକାରୀ,
ସ୍ନେହପୂରିତ ହେଉ ବାର୍ତ୍ତାଆଳାପ
ଶ୍ରଦ୍ଧା ଅମୃତ ମିଳୁ ଜୀବନଯାକ ।

ସରବେ ରଖୁ 'ସମବିଚାର' ଧାରା
ବିରୋଧ ଭାବେ କ୍ଷୁଣ୍ଣ ନହେଉ ପରା,
ସଭିଙ୍କ ମତ ହେଉ ଗୋଟିଏ ମତ
ଭିନ୍ନ ଭାବେ ନ ହେଉ ତା' ପ୍ରତିହତ ।

ପୂର୍ବଜମାନେ ଆମ ଏକାଠି ବସି
ଯଜ୍ଞାଦି ଦେବ କର୍ମ କରନ୍ତି ମିଶି,
ସବୁ କଥାରେ ଥିଲେ ସେ ସହମତ
ଅନୁସରିବା ଆମେ ତାଙ୍କରି ପଥ ।

ପୂଜା ପ୍ରାର୍ଥନା ଆମ ହେଉ ସମାନ
ସମାଜ ହେଉ ଭେଦଭାବ ବିହୀନ,
ମିଳନ ସୂତ୍ରେ ସର୍ବେ ହୁଅନ୍ତୁ ବନ୍ଧା
ସମାନ ହେଉ ମନ ବିଚାର ସଦା ।

ସମାନ ମନ୍ତ୍ରେ ହେଉ ଅଭିମନ୍ତ୍ରିତ
ବିଶ୍ୱ ଜୀବନ ହେଉ ସୁ ସଂଗଠିତ,
ମନେ, ହୃଦୟେ ଅନ୍ତରରେ ସମାନ
ଲଭନ୍ତୁ ସର୍ବେ ସୁସଂହତ ଜୀବନ ।

ଏକତା ଆଦର୍ଶରେ ଅନୁପ୍ରାଣୀତ
'ଏକତାରକ୍ଷା' କର ଜୀବନ ବ୍ରତ,
ଏକତା ଭାବେ ସଦା ରଖହେ ମନ
କର ତାହାକୁ ତୁମ ଜୀବନ ଧନ ।

•

# ନୟନ

- ଚକ୍ଷୁର୍ନୋ ଦେବଃ ସବିତା ଚକ୍ଷୁର୍ନ ଉତ ପର୍ବତଃ
ଚକ୍ଷୁ ର୍ଧାତା ଦଧାତୁ ନଃ ।

ମନ୍ତ୍ର୧୦୪୧୬

- ଚକ୍ଷୁର୍ନୋ ଧେହି ଚକ୍ଷୁଷେ ବକ୍ଷୁର୍ବିଖ୍ୟୈ ତନୂଭ୍ୟଃ
ସଂ ଚେଦଂ ବିଚ ପଶ୍ୟେମ ।

ର.ସଂଭ୪।ମନ୍ତ୍ର୧୦୪୧୭

ହେ ଜ୍ୟୋତିର୍ମୟ ସବିତାଦେବ । ଆମକୁ ତୀକ୍ଷ୍ଣ ନେତ୍ର ଜ୍ୟୋତି ପ୍ରଦାନ କରନ୍ତୁ । ଯେଉଁ ପର୍ବତଗଣ ଦିଗଦ୍ରଷ୍ଟା ସେମାନେ ଆମକୁ ନିର୍ମଳ ନେତ୍ରଜ୍ୟୋତି ଦାନ କରନ୍ତୁ । ହେ ବିଧାତା । ଆପଣ ଆମକୁ ଶକ୍ତିଶାଳୀ ନେତ୍ର ଜ୍ୟୋତିର ଅଧିକାରୀ କରନ୍ତୁ, ଯାହା ଫଳରେ ଆମେ ଜୀବନର ଅନ୍ତିମ ମୁହୂର୍ତ୍ତ ପର୍ଯ୍ୟନ୍ତ ଦୃଷ୍ଟିଶକ୍ତିର ଅଧିକାରୀ ହୋଇ ରହିବୁ । ଜଗତକୁ ବିବିଧ ଦୃଷ୍ଟିରେ ଦେଖିବାପାଇଁ ଆପଣଙ୍କ ତେଜ ସହାୟକ ହେଉ ।

ହେ ଜ୍ୟୋତିର୍ମୟ ଦେବ, କରୁ ମିନତି
ନୟନେ ଆମ ଭରିଦିଅ ହେ ଜ୍ୟୋତିଃ,
ଜଗତ ତମୋ ହର ଅଟ ସବିତା
ଚକ୍ଷୁ ତେଜରେ ମିଳୁ ଶକ୍ତି ସ୍ୱଚ୍ଛତା ।

ଊର୍ଦ୍ଧ୍ୱେ ଉତ୍‌ଥିତ ଯେତେ ପର୍ବତଗଣ
ସତେବା ଲଭିଛନ୍ତି ବିଶ୍ୱ ନୟନ,
ଦେଖନ୍ତି ଊର୍ଦ୍ଧ୍ୱେ ଥାଇ ବିଶ୍ୱ ପ୍ରକୃତି
ମାଗୁଛୁ ତାଙ୍କୁ ଆମେ ନୟନ ଜ୍ୟୋତିଃ ।

ବିଶ୍ୱବିଧାତା ପଦେ କରୁ ପ୍ରଣାମ
କରନ୍ତୁ ନେତ୍ରପୁଟ ସେ ଜ୍ୟୋତିଷ୍ମାନ,
ମିଳୁ ନୟନେ ଆମ ଏପରି ଜ୍ୟୋତିଃ
ବିବିଧ ରୂପ ଦେଖି ପାରିବୁ ନିତି ।

ପ୍ରକୃତି ବହୁରୂପ କରି ଦର୍ଶନ
ଲଭୁ ଅମାପ ଶକ୍ତି ହୃଦୟମନ,
ହେ ସୂର୍ଯ୍ୟଦେବ । ବିଶ୍ୱ ଦର୍ଶନ ପାଇଁ
ଦିଅହେ ନେତ୍ରେ ଜ୍ୟୋତିଃ ଜଗତ ସାଇଁ ।

ଦର୍ଶନ ଜ୍ୟୋତିଧାରା ହେଉ ନିର୍ମଳ
ଶୁଦ୍ଧ ପବିତ୍ର ହେଉ ନେତ୍ର ଯୁଗଳ,
ସେ ନେତ୍ର କରୁ ସଦା ଶୁଭଦର୍ଶନ
ପବିତ୍ର ହେଉ ଆମ ହୃଦୟ ମନ ।

•

# ବନ୍ଧୁ

'ବନ୍ଧୁ' ଶବ୍ଦ ଅଟଇ କେଡ଼େ ମଧୁର
ଅଟନ୍ତି ମିତ୍ର ଅବା ସେ ସହୋଦର,
ଶ୍ରେଷ୍ଠ ବନ୍ଧୁ ସତତ 'ସୁବନ୍ଧୁ' ନାମେ
ବିଖ୍ୟାତ ଅଟନ୍ତି ସେ ବିଶ୍ୱ ଭୁବନେ ।
ତାଙ୍କର ସ୍ନେହ ଶ୍ରଦ୍ଧା ତ୍ୟାଗ ତିତିକ୍ଷା
ଦେଇଥାଏ ତା' ଜନେ ଜୀବନ ଦୀକ୍ଷା ।

'ଜ୍ଞାନବନ୍ତ', ବାନ୍ଧବ ଅଟନ୍ତି ଯେହୁ
'ଶ୍ରୁତବନ୍ଧୁ' ନାମରେ ବିଖ୍ୟାତ ସେହୁ,
ସେଇ ପ୍ରକାର ବନ୍ଧୁ ମିଳିଲେ ଜନେ
ଧନ୍ୟ ହୋଇଥାଆନ୍ତି ସେହୁ ଜୀବନେ ।
ତାଙ୍କର ଜ୍ଞାନାଲୋକେ ଆଲୋକ ପୁର
ଅଜ୍ଞାନ ଅନ୍ଧକାର ହୁଅଇ ଦୂର ।

ବ୍ରହ୍ମାନୁଭୂତି ଭରି ଥାଏ ଯା' ଘଟେ
ସେ ଆତ୍ମା-ପୁରୁଷର ବାନ୍ଧବ ଅଟେ,
'ବିପ୍ରବନ୍ଧୁ', ନାମରେ ସେ ମହନୀୟ
ବିଶ୍ୱଜନର ମନ କରେ ସେ ଜୟ ।
ସଂସାରୀ ଜନ ମନ ଅଟେ ସନ୍ତତ
ଯାତନା ଜଞ୍ଜାଳରେ ସେ ଜର୍ଜରିତ,
ମୁକତି ପଥ ସେହୁ ପାଏନି ଖୋଜି
ପାପପଙ୍କରେ ସଦା ଥାଏ ସେ ମଜ୍ଜି ।

କୁମାର୍ଗରୁ ମନକୁ କରେ ଯେ ମୁକ୍ତ
ସୁ ମାର୍ଗରେ ତାହାକୁ କରେ ସେ ଯୁକ୍ତ,
'ଋଷିବନ୍ଧୁ' ଅଟନ୍ତି ସିଏ ଏ ଭବେ
ଏପରି ବନ୍ଧୁ ଲାଭ ଦୁର୍ଲଭ ସର୍ବେ ।
ଏ ପରି ବନ୍ଧୁ,
ପାରକରାନ୍ତି ଜଳେ ଏ ଭବସିନ୍ଧୁ ।

•

ବି.ଦ୍ର: ଏ କବିତାଟି ବେଦବାଣୀ ଆଧାରରେ ରଚିତ ।

# ଯଜୁର୍ବେଦ

ଯାଃ ଫଳିନୀର୍ଯ୍ୟାଃଅଫଳାଃଅପୁଷ୍ପା ଯାଶ୍ଚ ପୁଷ୍ପିଣୀଃ
ବୃହସ୍ପତିପ୍ରସୂତାସ୍ତା ନୋ ମୁଞ୍ଚନ୍ତ୍ୱଂହସଃ ।

ମନ୍ତ୍ର ୬୦୩

ଏହି ବିପୁଳ ବନପ୍ରକୃତି, ବୃକ୍ଷଲତା ଓ ଗୁଳ୍ମରେ ପରିପୂର୍ଣ୍ଣ । ସେଥି ମଧ୍ୟରୁ କେତେକ ଫଳଯୁକ୍ତ, ଫଳହୀନ, ପୁଷ୍ପମଣ୍ଡିତ ଓ ପୁଷ୍ପହୀନ ଅଟନ୍ତି । ଏମାନେ ଔଷଧୀୟ ଦ୍ରବ୍ୟଗୁଣରେ ପରିପୂର୍ଣ୍ଣ । ବୈଦ୍ୟଗଣ ଏ ସବୁର ଚେର, ମୂଳ, ପତ୍ର ପୁଷ୍ପ ଓ ରସ ପ୍ରଭୃତି ସଂଗ୍ରହ କରି, ଔଷଧ ପ୍ରସ୍ତୁତ କରନ୍ତି । ଆମେ ମାନବଗଣ, ରୋଗରୁ ମୁକ୍ତିଲାଭ କରିବାପାଇଁ ଏହି ବନ ପ୍ରକୃତିକୁ ପ୍ରାର୍ଥନା କରୁଛୁ ।

# ବନୌଷଧି

ବୃକ୍ଷ, ଲତା, ଗୁଳ୍ମରେ ଭରା ପ୍ରକୃତି
ଔଷଧ ଦ୍ରବ୍ୟଗୁଣ ଭରିଛି ଏଥି,
କେ' ଅଟେ ଫଳଯୁକ୍ତ, ଫଳ ରହିତ
କେ 'ଅଟେ ପୁଷ୍ପହୀନ କେ' ପୁଷ୍ପ ଯୁକ୍ତ ।

ବୃକ୍ଷଲତାର ଏହି ଔଷଧ ଗୁଣ-
ବିପୁଳିତ କରଇ, ଯଜ୍ଞର ଧୂମ,
ବନ ପ୍ରକୃତି ଦାନେ ଜୀବ ଜଗତ
ହୋଇଥାନ୍ତି ସରବେ ରୋଗରୁ ମୁକ୍ତ ।

ଏକ ଔଷଧଗୁଣ, ବଢ଼ାଏ ଆନ
କରନ୍ତି ସର୍ବ ରୋଗ ସେ ନିବାରଣ,
ଦିଅନ୍ତି ଶାନ୍ତି ସୁଖ ଜନନୀ ପରି
ଅନ୍ନ ଯେପରି କ୍ଷୁଧା ପାରଇ ହରି ।

ଔଷଧ ସେବନରେ ରୋଗ ସକଳ
ତ୍ରସ୍ତାତୁରେ ହୁଅନ୍ତି ସେ ହୀନବଳ,
ନିଜକୁ ଭାବିଥାନ୍ତି ମୃତ ସେମାନେ
ଯେପରି ଭାବେ ପଶୁ, ତା' ବଧସ୍ଥାନେ ।

ଔଷଧ ଗୁଣେ ରୋଗ ସମୂଳ ନଷ୍ଟ-
ହୋଇଥାଏ, ଦୂରେଇ ରୋଗର କଷ୍ଟ,
କରୁ ପ୍ରାର୍ଥନା, ଆମେ ହେ ବନୌଷଧି
କର ହରଣ ତୁମେ ସରବବ୍ୟାଧି ।
ବନ ପ୍ରକୃତି !
ତୁମେ ଜୀବ ଜଗତ ଜୀବନ ପତି ।।

•

ଅଗ୍ନିର୍ଜ୍ୟୋତିର୍ଜ୍ୟୋତିରଗ୍ନିଃ ସ୍ୱାହା ସୂର୍ଯ୍ୟୋ
ଜ୍ୟୋତିର୍ଜ୍ୟୋତିଃ ସୂର୍ଯ୍ୟଃ ସ୍ୱାହା,
ଅଗ୍ନିର୍ବର୍ଚ୍ଚୋ ଜ୍ୟୋତିର୍ବର୍ଚ୍ଚଃ ସ୍ୱାହା ସୂର୍ଯ୍ୟୋ
ବର୍ଚ୍ଚୋ ଜ୍ୟୋତିର୍ବର୍ଚ୍ଚଃ ସ୍ୱାହା,
ଜ୍ୟୋତିଃ ସୂର୍ଯ୍ୟଃ ସୂର୍ଯ୍ୟୋ ଜ୍ୟୋତିଃ ସ୍ୱାହା ।

ଯଜୁର୍ବେଦ ୩ୟ ଅଧ୍ୟାୟ । ମନ୍ତ୍ର ୭୪

ଅଗ୍ନି ତେଜୋମୟ ଅଟେ ଏବଂ ତେଜ ହିଁ ଅଗ୍ନି ଅଟେ । ଆମେ ଜ୍ୟୋତିଃରୂପ ଅଗ୍ନିରେ ହବ୍ୟାହୁତି ଅର୍ପଣ କରୁଛୁ । ସୂର୍ଯ୍ୟଦେବ ଜ୍ୟୋତିଃ ସ୍ୱରୂପ ଏବଂ ଜ୍ୟୋତିଃ ହିଁ ସୂର୍ଯ୍ୟଦେବ । ଅଗ୍ନି, ବର୍ଚ୍ଚସ ବା ତେଜୋଦୀପ୍ତ ଅଟେ ଏବଂ ଜ୍ୟୋତିଃ ମଧ୍ୟ ବର୍ଚ୍ଚସ ଅଟେ । ଆମେ ସେହି ବର୍ଚ୍ଚସ ରୂପୀ ଅଗ୍ନିରେ ଯଜ୍ଞ କରୁ । ସୂର୍ଯ୍ୟଦେବ ବ୍ରହ୍ମତେଜର ସ୍ୱରୂପ ପ୍ରକାଶ । ଏବଂ ବ୍ରହ୍ମବର୍ଚ୍ଚସ, ସୂର୍ଯ୍ୟରୂପ ଅଟନ୍ତି । ଆମେ ତାଙ୍କ ଉଦ୍ଦେଶ୍ୟରେ ଯଜ୍ଞରେ ମନ୍ତ୍ରାହୁତି ପ୍ରଦାନ କରୁଛୁ ।

ବି.ଦ୍ର : ଋଗବେଦ ସଂହିତା ଭା୪।ମ୧୦।ସୂ୫୩। ମନ୍ତ୍ର ୯୩୩୧ରେ ଅଗ୍ନିଙ୍କ ବର୍ଣ୍ଣନା ପ୍ରସଙ୍ଗରେ ପଞ୍ଚମହାଯଜ୍ଞ ଯଥା - ପ୍ରହୁତ, ହୁତ, ଅହୁତ, ବ୍ରାହ୍ମହୁତ ଏବଂ ପ୍ରାଶିତ ଯଜ୍ଞ । ସପ୍ତଛନ୍ଦରେ ସ୍ତବନ କରିବାର ସୂଚନା ଅଛି ।

# ଯଜ୍ଞ

ପଞ୍ଚ ମହାଯଜ୍ଞ ବିଧି ବିଧାନ ସହିତେ
ପାଳନ୍ତି ଗୃହସ୍ଥ, ମୁନି, ଆର୍ଯ୍ୟଧାରା ମତେ,
ଜପଯଜ୍ଞ, ଦେବଯଜ୍ଞ, ଭୂତଯଜ୍ଞ ସହ
ନୃଯଜ୍ଞ, ପ୍ରାଶିତ ଯଜ୍ଞ ତର୍ପଣ ସମୂହ ।

ହେ ଅଗ୍ନିଦେବତା ! ତୁମେ ଅଟ ତେଜୋମୟ
ହେ ତେଜ ! ତୁମରିମଧ୍ୟୁ ଅଗ୍ନିଙ୍କ ଉଦୟ,
ତେଜୋରୂପୀ ଅଗ୍ନିମୁଖେ ହବିଦାନ କରି
ଯଜ୍ଞବିଧି ପାଳୁ ଆମେ ମନ୍ତ୍ର ଅନୁସରି ।

ହେ ସୂର୍ଯ୍ୟ ଦେବତା ! ତୁମେ ଅଟ ଜ୍ୟୋତିଃ ରୂପ
ହେ ଜ୍ୟୋତିଃ ପରମ ! ତୁମେ ସୂର୍ଯ୍ୟଙ୍କ ସ୍ୱରୂପ,
ଜ୍ୟୋତିଃରୂପ ଅଗ୍ନିମୁଖେ ଯଜ୍ଞାହୁତି ଦାନ
କରିଥାଉ ଯଜ୍ଞ ପୀଠେ ତୋଳି ମନ୍ତ୍ରଗାନ ।

ଅଗ୍ନିତଥା ଜ୍ୟୋତିଃ ଅଟେ ବର୍ଚ୍ଚସ ସ୍ୱରୂପ
ତେଜୋମୟ ଜ୍ୟୋତିର୍ମୟ ପବିତ୍ର ସେ ରୂପ,
ବର୍ଚ୍ଚସ ସ୍ୱରୂପ ଅଗ୍ନି ମୁଖେ ହବି ଦେଇ
ବ୍ରହ୍ମବର୍ଚ୍ଚସ୍ ସୂର୍ଯ୍ୟଙ୍କ ଜ୍ୟୋତି ପ୍ରକଟଇ ।

ଏହା ଅଟେ ଯଜ୍ଞଧାରା ଯାଜକ ଯାଜନ
ମନ୍ତ୍ରାୟିତ ଶବ୍ଦାୟିତ ହବ୍ୟାଶ ହବନ,
ପରମଶୁଦ୍ଧତା ଅଟେ ଶାନ୍ତି ବିଧାୟକ
ବିଶ୍ୱର ପୋଷକ ଊର୍ଜାଃ ଏ ବିଶ୍ୱ ଧାରକ ।
ଯଜ୍ଞମୟ ଏ ବିଶ୍ୱ ପ୍ରକୃତି,
ତ୍ରିପୁର ପୋଷକ ଅଟେ ଏ ବ୍ରହ୍ମ ବିଭୂତି ।

•

ହବ୍ୟାଶ...ଅଗ୍ନି, ହବନ...ଯଜ୍ଞ, ବର୍ଚ୍ଚସ୍...ତେଜୋମୟ ।

- ଗୃହା ମା ବିଭୀତ ମା ବେପଧ୍ୱମୂର୍ଜଂ ବିଭ୍ରତଽଏମସି
  ଊର୍ଜଂ ବିଭ୍ରଦ୍ୱଃ ସୁମନାଃ ସୁମେଧା ଗୃହାନୈମି
  ମନସା ମୋଦମାନଃ ।'

ମନ୍ତ୍ର ୧୦୬

- ଯେଷାମଧ୍ୟେତି ପ୍ରବସନ୍ୟେଷୁ ସୌମନସୋ ବହୁଃ
  ଗୃହାନୁପହ୍ୱୟାମହେ ତେ ନୋ ଜାନନ୍ତୁ ଜାନତଃ ।

ମନ୍ତ୍ର ୧୦୭

- ଉପହୂତାଽଇହ ଗାବଽଉପହୂତାଽଅଜାବୟଃ
  ଅଥୋ ଅନ୍ନସ୍ୟ କୀଲାଳଽଉପହୂତୋ ଗୃହେଷୁ ନଃ ।
  କ୍ଷେମାୟ ବଃ ଶାନ୍ତ୍ୟୈ ପ୍ରପଦ୍ୟେ ଶିବଂଃ ଶଗ୍ମଂଃ
  ଶଂୟୋଃ ଶଂୟୋଃ ।

ଯଜୁର୍ବେଦସଂହିତା ୩ଅଧ୍ୟାୟ। ମନ୍ତ୍ର ୧୦୮

ଗୃହ ପ୍ରବେଶ ସମୟରେ ଏହି ତିନିଟି ମନ୍ତ୍ର ଆବୃତ୍ତି କରାଯାଏ । "ହେ ଗୃହ ! ତୁମେ ଆସନ୍ନ ବିପଦର ଆଶଙ୍କାରୁ ମୁକ୍ତ ହୁଅ । ଆମେ ତୁମର ସୁରକ୍ଷା ଦାୟିତ୍ୱ ତୁଲାଇବାକୁ ସମର୍ଥ ଅଟୁ । ଆମେ ଶକ୍ତି ସମ୍ପନ୍ନ ହୋଇ ହର୍ଷ ଉଲ୍ଲାସ ମଧ୍ୟରେ ତୁମ ମଧ୍ୟକୁ ପ୍ରବେଶ କରୁଛୁ । ତୁମେ ଆମ ଉପରେ ସନ୍ତୁଷ୍ଟହୁଅ ।

ଆମେ ପ୍ରବାସରେ ଥିବାବେଳେ ଗୃହଲାଭ ପାଇଁ ସର୍ବଦା ବ୍ୟାକୁଳ ଥିଲୁ, ଆଜି ଗୃହପ୍ରବେଶ କରି ଗୃହକୁ ପ୍ରସନ୍ନ କରୁଛୁ ଏବଂ ନିଜେ ଅମାପ ଆନନ୍ଦ ଲାଭକରୁଛୁ । ଆମେ ଆମର ଗୃହ ଦେବତାଙ୍କୁ ପ୍ରାର୍ଥନା କରୁଛୁ, ସେ ଆମକୁ ଗ୍ରହଣ କରି ପ୍ରସନ୍ନ ହୁଅନ୍ତୁ ।

ହେ ଗୃହ ! ଆମ ସହିତ ଆମର ପାଳିତ ପ୍ରିୟ ପଶୁସମ୍ପଦ, ତୁମ ପାଖରେ ରହିବେ । ତୁମେ ଆମପରି ତାଙ୍କୁ ମଧ୍ୟ ଶ୍ରଦ୍ଧାରେ ଆଶ୍ରୟଦିଅ । ଏ ଗୃହ ଅନ୍ନରସରେ ପରିପୂର୍ଣ୍ଣହୋଇ ସମସ୍ତଙ୍କର ପ୍ରାଣପୋଷକ ହେଉ । ତୁମେ ସର୍ବ ବାଧାବିଘ୍ନ ଦୂରକରି ସମସ୍ତଙ୍କର କଲ୍ୟାଣଦାୟକ ହୁଅ । ଆମେ ତୁମ କୋଳରେ ଆଶ୍ରୟନେଇ ସର୍ବସୁଖର ଅଧିକାରୀ ହେଉ ।

ବି.ଦ୍ର. : ଅଥର୍ବ ବେଦର 'ରମ୍ୟଗୃହ' ସୂକ୍ତରେ ଏପ୍ରକାର ମନ୍ତ୍ର ମଧ୍ୟଅଛି ।

# ଗୃହପ୍ରବେଶ

ଗୃହ ଦେବତାଙ୍କୁ ଧ୍ୟାୟୀ
ଆନନ୍ଦେ ଏ ଗୃହେ ପ୍ରବେଶ କରୁନ୍ତୁ
ହେ ଗୃହ । ତୁମକୁ ପାଇ ।
ଶତ୍ରୁର କୋପ ଦୃଷ୍ଟି ତୁମକୁ ଛୁଇଁ ପାରିବନି ତିଳେ
ଆମେ ସମର୍ଥ ଏଡ଼ିବାକୁ ତାହା
ଆଶ୍ରିତ ତୁମ କୋଳେ ।
ଶୁଭ ମୁହୂର୍ତ୍ତେ ଆଜି
ଚର୍ଚ୍ଚିତ ଶୋଭା ରାଜି ।

ପ୍ରବାସରେ ଥାଇ ତୁମ କୋଳପାଇଁ
ବ୍ୟାକୁଳିତ ଥିଲା ମନ
ପୂଜ୍ୟା ଜନନୀ ଲଭିବାକୁ ତୁମ
ନିବିଡ଼ ସନ୍ନିଧାନ ।
ପ୍ରସନ୍ନ ମନ ହେଉ ଗୋ ତୁମର
ଆମକୁ କୋଳରେ ପାଇ
ଆଶ୍ରିତ ଆମ ପାଳିତ ପଶୁଙ୍କୁ
ରଖ ଗୋ ଆଶ୍ରୟ ଦେଇ ।
ସମର୍ପଣ ଭାବ ଆନନ୍ଦେ ଗ୍ରହଣ କର
ହେ ଗୃହ ଦେବତା । ତୁମ ପଦେ ନତ ଶିରଃ ।
ଏ ଗୃହ ଅଟଇ ପୁଣ୍ୟ ମନ୍ଦିର ଆମ
ଏହି ଦେବାଳୟେ ଚିରଦିନ ମିଳୁ ଥାନ ।

ପରାଣ ପୋଷକ ଅନ୍ନ ରସରେ
ଭଣ୍ଡାର ଆମ ଭରୁ
ଦୁଃଖ ବିପଦ ଟାଳି ଦେଇ ଆମେ
ଆନନ୍ଦେ ବାସ କରୁ ।
ଫିଟାଅ ଆମର ସର୍ବ ସୁଖର ବାଟ
ଆମ ଘର ହେଉ ଶୁଭ ଭାବନାର
ପବିତ୍ର ପୁଣ୍ୟପୀଠ ।

•

## ବର୍ଚ୍ଚସ୍

"ଆମ୍ଭନେ ମେ ବର୍ଚୋଦା ବର୍ଚସେ
ପବସ୍ୱୌଜସେ ମେ ବର୍ଚୋଦା ବର୍ଚସେ,
ପବସ୍ୱାୟୁଷେ ମେ ବର୍ଚୋଦା ବର୍ଚସେ
ପବସ୍ୱ ବିଶ୍ୱାଭ୍ୟୋ ମେ ପ୍ରଜାଭ୍ୟୋ
ବର୍ଚଦସୌ ବର୍ଚସେ ପବେଥାମ୍ ।"

ଯଜୁର୍ବେଦସଂ, ୭ ଅଧ୍ୟାୟ । ମନ୍ତ୍ର ୨୭ ୩

ହେ ତେଜସ୍ୱିତା ପ୍ରଦାନକାରୀ ସୋମଦେବ ! ଆମ ଆତ୍ମାରେ ବର୍ଚ୍ଚସ ବା ତେଜ ସଂଚାର କରନ୍ତୁ । ଆମ ଓଜଃରେ ବର୍ଚ୍ଚସ ପ୍ରକଟ କରନ୍ତୁ । ଆମ ଆୟୁଷରେ ବର୍ଚ୍ଚସ ଜାଗ୍ରତ କରନ୍ତୁ । ହେ ତେଜସ୍ୱୀ ସୋମଦେବ ! ଦୟାକରି ପୃଥିବୀର ସମସ୍ତପ୍ରାଣୀ ଓ ପ୍ରଜାଙ୍କୁ ତେଜୋଦୀପ୍ତ କରନ୍ତୁ ।

ସୋମଦେବ ! କରୁଛୁ ପ୍ରାର୍ଥନା,
ଦେବଗଣତୁଷ୍ଟିପାଇଁ, ଯଜ୍ଞ ପୀଠେ-
କରୁଛୁ ସ୍ଥାପନା ।
ବିଦ୍ୟମାନ ହୋଇ ପୁଣ୍ୟପୀଠେ
ବର୍ଚ୍ଚସ୍ ପ୍ରଦାନକର ଏ ବିଶ୍ୱ ଜଗତେ ।
ତେଜୋଦୀପ୍ତ କରସଦା ଆତ୍ମାକୁ ଆମର
ଓଜକୁ କର ହେ ଦେବ ! ସଦା ଓଜସ୍ୱଳ ।
ଆୟୁଷରେ ପ୍ରବାହିତ ହେଉ ତେଜୋଧାରା
ଦୀର୍ଘାୟୁ ହୁଅନ୍ତୁସର୍ବେ
ଲଭି ଦୀପ୍ତ ତେଜଃର ଅସରା ।
ଦୀପ୍ତିମୟ କାନ୍ତିମୟ ହୁଅନ୍ତୁ ସରବେ
ଏ ପୃଥିବୀ ପ୍ରାଣୀଗଣ, ପ୍ରଜାଗଣ-
ଜାଗ୍ରତ ହୁଅନ୍ତୁ ସର୍ବେ ଦୀପ୍ତ ତେଜୋରୂପେ ।
ସୋମଦେବ ! କର କୃପା ଏ ବିଶ୍ୱବାସୀଙ୍କୁ
ବର୍ଚ୍ଚସ ବନ୍ଦିତ ହୋଇ
ତେଜୋଦୀପ୍ତ କରନ୍ତୁ ମହିକୁ ।
ତେଜଃ ଧାରା କରି ପ୍ରବାହିତ
ହୁଅ ହେ ବନ୍ଦିତ ।।

ବର୍ଚ୍ଚସ୍ - ତେଜସ୍ୱିତା ।

•

# ତ୍ରିବିଧ ଆୟୁ

**ତ୍ର୍ୟାୟୁଷଂ ଜମଦଗ୍ନେ କଶ୍ୟପସ୍ୟ ତ୍ର୍ୟାୟୁଷଂ**
**ଯଦ୍ଦେବେଷୁ ତ୍ର୍ୟାୟୁଷଂ ତନ୍ନୋ ଅସ୍ତୁତ୍ର୍ୟାୟୁଷମ୍ ।।**

ଯ.ସଂ,୩ଅ । ମନ୍ତ୍ର : ୧୨୭

ପର୍ଶୁରାମଙ୍କ ପିତା ଜମଦଗ୍ନି, ତତ୍‌କାଳୀନ ସମାଜର ଜଣେ ବ୍ୟବସ୍ଥାପକ ଋଷି । ଆୟୁକ୍ରମରେ ସେ ମଣିଷର ଜୀବନ କାଳକୁ ତିନିଭାଗ କରିଥିଲେ । ବାଲ୍ୟ, ଯୌବନ, ବାର୍ଦ୍ଧକ୍ୟ । କଶ୍ୟପ ଋଷି ମଧ୍ୟ ଏହି ପ୍ରକାର ବ୍ୟବସ୍ଥା କରିଛନ୍ତି । ଏହା ମଧ୍ୟ ଦେବତାମାନଙ୍କର ତିନି ଅବସ୍ଥାଯୁକ୍ତ ଆୟୁକାଳ ଅଟେ । ହେ ପ୍ରଭୁ ! ଆମେ ମଧ୍ୟ ଏହି ତେଜଶୀଳ ଆୟୁ ଲାଭକରୁ ।

ଅଟନ୍ତି ପର୍ଶୁରାମ ମହାନ୍‌ବୀର
ମହର୍ଷି ଜମଦଗ୍ନି ପିତା ତାଙ୍କର,
ରଚି ଅଛନ୍ତି ମନ୍ତ୍ର ସେ ଚାରିବେଦେ
ଋଷିତ୍ୱ ଲଭିଛନ୍ତି ସେ ତପୀ ମଧ୍ୟେ ।
ହରିଶ୍ଚନ୍ଦ୍ରଙ୍କ ରାଜସୂୟ ଯଜ୍ଞରେ
ପୌରହିତ୍ୟ ସେ କରିଥିଲେ ବିଧିରେ,
ଅଟନ୍ତି ସମାଜର ସେ ନୀତିକାର
ତିନି ବିଭାଗ କଲେ ସେ ଆୟୁଷର ।
ବାଲ୍ୟ, ଯୌବନ, ବାର୍ଦ୍ଧକ୍ୟରେ ନାମିତ
ତ୍ରିବିଧ ଆୟୁରୂପେ ହେଲା ସୂଚିତ ।
ତିନିଅବସ୍ଥା ମଧ୍ୟେ ଜୀବର ଗତି
ନିର୍ଣ୍ଣୟ କରିଥିଲେ ସେ ମହାମତି
କଶ୍ୟପ ମହାଋଷି ସୃଷ୍ଟି ରଚନା
କଲେ ତିନିଅବସ୍ଥା ବିଧାନ ସିନା,
ଏ' ଜୀବ ଯିବ ଭୋଗି ତିନି ଅବସ୍ଥା
ଦୀର୍ଘ ଜୀବନ କାଳ ହେଲା ବ୍ୟବସ୍ଥା ।
ସେ ଦୀର୍ଘନିରାମୟ ଜୀବନ ପାଇଁ
ପ୍ରାର୍ଥନା କରୁ ପ୍ରଭୁ, ହେ ପ୍ରାଣ ସାଇଁ !
ମିଳୁ ସେ ତେଜୋଦୀପ୍ତ ତ୍ରିବିଧ ଆୟୁ
ତାପରେ ଗଲେଯାଉ, ଏ ପ୍ରାଣବାୟୁ ।

•

"ଆୟୁର୍ଯଜ୍ଞେନ କଳ୍ପତାଂ ପ୍ରାଣୋଯଜ୍ଞେନ କଳ୍ପତାଂ
ଚକ୍ଷୁର୍ଯଜ୍ଞେନ କଳ୍ପତାଠଃ ଶ୍ରୋତଂ ଯଜ୍ଞେନ କଳ୍ପତାଂ
ପୃଷ୍ଠଂ ଯଜ୍ଞେନ କଳ୍ପତାଂ ଯଜ୍ଞୋ ଯଜ୍ଞେନ କଳ୍ପତାମ୍
ପ୍ରଜାପତେଃ ପ୍ରଜାଽଅଭୂମ, ସ୍ୱର୍ଦେବାଽଅଗନ୍ମାମୃତାଽଅଭୂମ ।"

ଯଜୁସଂ ୯ ଅଧ୍ୟାୟ । ମନ୍ତ୍ର ୩୭୭

ହେ ଯଜ୍ଞଦେବ ! ଯଜ୍ଞଦ୍ୱାରା ଆମେ ଦୀର୍ଘାୟୁ ହେଉ । ଆମ ପ୍ରାଣଶକ୍ତି ସଂପ୍ରସାରିତ ହେଉ । ଆମ ନେତ୍ରଜ୍ୟୋତି ବର୍ଦ୍ଧିତ ହେଉ । ଶ୍ରବଣଶକ୍ତି ଅତୁଟ ରହୁ । ଆମ ପୃଷ୍ଠଭାଗର ଶକ୍ତି ବର୍ଦ୍ଧିତ ହେଉ । ଆମ ଯଜ୍ଞର ବିସ୍ତାର ହେଉ ।

ହେ ଦେବ ! ଆମେ ସମସ୍ତେ ଏକ ଈଶ୍ୱରଙ୍କର ସନ୍ତାନ ଭାବରେ ଏକତାବଦ୍ଧ ହୋଇ ରହୁ । ଆମେ ଦିବ୍ୟ ସୁଖର ଅଧିକାରୀ ହେଉ ଏବଂ ଆମକୁ ଅମୃତମୟ ଜୀବନର ଅଧିକାର ମିଳୁ ।

## ଦିବ୍ୟ ଜୀବନ କାମନା

ହେ ଯଜ୍ଞପୁରୁଷ ଅଗ୍ନି ! ଆହେ ହବ୍ୟପାୟି !
ଆହୁତି ଦେଉଛୁ ପ୍ରଭୁ ! ତୁମ ପଦ ଧ୍ୟାୟୀ
କାମନା କରୁଛୁ ଦୀର୍ଘ ଆୟୁଷ ଜୀବନେ
ପ୍ରାଣ ସୂର୍ଯ୍ୟ ପ୍ରଖରିତ କର ମର୍ତ୍ତ୍ୟଧାମେ ।

ହେଉ ନେତ୍ର ଜ୍ୟୋତିର୍ମୟ ବଢୁ ତାର ଜ୍ୟୋତି
ଅତୁଟ ରହୁ ଆମର ଶ୍ରବଣ ଶକତି,
ପୃଷ୍ଠଭାଗ ହେଉ ଆମ ସଦା ଶକ୍ତିଶାଳୀ
ଜୀବନ ହେଉ ହେ ଆମ ପୁଣ୍ୟ ଯଜ୍ଞସ୍ଥଳୀ ।

ପରମ ଈଶ୍ୱରଙ୍କର ସନ୍ତାନ ସରବେ
ଭ୍ରାତୃତ୍ୱ ବନ୍ଧନେ ବନ୍ଧା ରହିବା ଏ'ଭବେ,
ଏକତା ସୂତ୍ରରେ ସର୍ବେ ହୋଇବା ଆବଦ୍ଧ
ମନକୁ ନକରୁ ସ୍ପର୍ଶ ଭାବନା ବିଭେଦ ।

ଅମୃତ ଜୀବନ ହେଉ ସମସ୍ତଙ୍କ ସାଥୀ
ଅମାପ ସୁଖ ସନ୍ତୋଷେ ଦିନ ଯାଉ ବିତି,
ଏ ବିଶ୍ୱମଙ୍ଗଳମୟ ମଙ୍ଗଳ ଏ ଧାମ
ଅଟେ ବିଶ୍ୱବାସୀଙ୍କର ଏ ତୀର୍ଥ ପରମ ।

ଅମୃତମୟ ଏ ବିଶ୍ୱ ଅମୃତ ଜୀବନ
ବିଶ୍ୱ ଜୀବନକୁ ଏହା ଦିବ୍ୟ ଅବଦାନ,
ସେ ଦିବ୍ୟ ଜୀବନ ଲାଭ କରିବାକୁ ଆମେ
କରୁଛୁ ପ୍ରାର୍ଥନା ପ୍ରଭୁ ଏହି ଦିବ୍ୟ ଧାମେ ।

ଆହୁତି ଦେଉଛୁ ଯଜ୍ଞେ ତୁମ ପଦଧ୍ୟାୟୀ
ଏ ବିଶ୍ୱ ଭୁବନ ସର୍ବ ମଙ୍ଗଳ ପାଇଁ,
ଘେନ ଯଜ୍ଞଅନ୍ନ,
ଅଗ୍ନିଦେବ ପରମ ମହାନ ।

•

• ସୋମସ୍ୟ ତ୍ୱା ଦ୍ୟୁମ୍ନେନାଭିଷିଞ୍ଚାମ୍ୟଗ୍ନେର୍ଭ୍ରାଜସା ସୂର୍ଯ୍ୟସ୍ୟ
ବର୍ଚସେନ୍ଦ୍ରସ୍ୟେନ୍ଦ୍ରିୟେଣ ।
କ୍ଷତ୍ରାଣାଂ କ୍ଷତ୍ରପତିରେଧ୍ୟତି ଦିଦ୍ୟୁନ୍ ପାହି ।

ମନ୍ତ୍ର ୪୧୩

ହେ ରାଜନ୍ ! ତୁମକୁ ଚନ୍ଦ୍ରଙ୍କର କାନ୍ତି, ଅଗ୍ନିଙ୍କର ତେଜଃ ତଥା ଇନ୍ଦ୍ରଙ୍କର ଶକ୍ତି ଦ୍ୱାରା ଅଭିମନ୍ତ୍ରିତ କରି ଅଭିଷେକ କରୁଛୁ । ତୁମେ ମହାବୀର କ୍ଷତ୍ରିୟମାନଙ୍କର ଅଧିନାୟକ ହୁଅ । ଏବଂ ଅପଶକ୍ତିଠାରୁ ପ୍ରଜାମାନଙ୍କୁ ରକ୍ଷା କର ।

ଇମଂ ଦେବାଃଅସପତ୍ନଂଃ ସୁବଧ୍ୱଂ ମହତେ କ୍ଷତ୍ରାୟ
ମହତେ ଜ୍ୟୈଷ୍ଠ୍ୟାୟ ମହତେ ଜାନରାଜ୍ୟାୟେନ୍ଦ୍ରସ୍ୟେନ୍ଦ୍ରିୟାୟ ।
ଇମମମୁଷ୍ୟ ପୁତ୍ରମମୁଷ୍ୟୈ ପୁତ୍ରମସ୍ୟୈ ବିଶଃଏଷ ବୋମୀ
ରାଜା ସୋମୋସ୍ମାଙ୍କ ବ୍ରାହ୍ମଣାନାଂଃ ରାଜା ।

ଯଜୁ ସଂ.୧୦ଅଧ୍ୟାୟ । ମନ୍ତ୍ର ୪୧୪

ହେ ଦେବଗଣ । କ୍ଷାତ୍ର ଶକ୍ତିର ପ୍ରତିଷ୍ଠା କରି ଜଣେ ମହାନ୍ ରାଜାଙ୍କର କର୍ତ୍ତବ୍ୟ ସମ୍ପାଦନ କରିବା ନିମନ୍ତେ ଆମେ ଏହି ବରଣୀୟ ବୀରଙ୍କୁ ଯଜ୍ଞ ବେଦିରେ ଅଭିଷେକ କରୁଛୁ । ସେ ଜନରାଜ୍ୟର ଅଧିଷ୍ଠାତା ହୁଅନ୍ତୁ । ଇନ୍ଦ୍ରଙ୍କ ପରି ଅଜେୟ ଶକ୍ତିର ଅଧିକାରୀ ହୋଇ, ପ୍ରଜାଗଣଙ୍କର ସୁରକ୍ଷା ଓ ସମୃଦ୍ଧି ଦିଗରେ ଅଗ୍ରସର ହୁଅନ୍ତୁ ।

ହେ ପ୍ରଜାଗଣ ! ଏହି ରାଜା ତୁମକୁ ଶାନ୍ତି ଓ ସୁଖରେ ପାଳନ କରିବା ସହିତ ଆନନ୍ଦ ଦାନ କରିବାକୁ ଆମେ ଅଭିମନ୍ତ୍ରିତ କରୁଛୁ ।

# ରାଜାଭିଷେକ

ହେ ରାଜନ୍ ! ରାଜ ପଦେ କରୁଛୁ ବରଣ
ଅଭିଷେକ ମନ୍ତ୍ର ଉଚ୍ଚାରଣେ -
ଅର୍ପୁଅଛୁ ରାଜ ସିଂହାସନ ।
କରୁଅଛୁ ମୁକୁଟ ମଣ୍ଡିତ, ମଙ୍ଗଳ କାମନା କରି -
ସମର୍ପୁଛୁ ଶୁଭେ ରାଜପଦ ।

ପ୍ରଭୁ ଇନ୍ଦ୍ର ଦେବତାଙ୍କୁ କରି ଆବାହନ
ଅଜେୟ ଶକ୍ତି ଦେବାକୁ କରୁ ନିବେଦନ,
ଚନ୍ଦ୍ରମା ଦେବଙ୍କୁ ପୂଜୁ କାନ୍ତିଦାନ ପାଇଁ
ସେ କାନ୍ତି ଶାନ୍ତିର ସୁଧା ହୃଦୟେ ପ୍ରବାହି-
ରାଜ ମନ କରିବେ ମଧୁର,
ଦୂର ହେବ ରାଜ ଅହଂକାର ।

ଅଗ୍ନିଙ୍କ ତେଜରେ ମଧ୍ୟ ଅଭିଷେକ କରୁଛୁ ରାଜାଙ୍କୁ
ହୁଅନ୍ତୁ ସେ ତେଜୋଦୀପ୍ତ ଶାସିବାକୁ ବିଶାଳ ଧରାକୁ,
ପିନ୍ଧାଉଛୁ କ୍ଷାତ୍ରବଳ ଶିରରେ ମୁକୁଟ
ହେ ଦୁର୍ଜୟ ବୀର କର ଅରିକୁଳ ନଷ୍ଟ ।

ଅଭିଷେକ କରୁଅଛୁ ଜନରାଜ୍ୟ ପ୍ରତିଷ୍ଠା ନିମନ୍ତେ
ଶ୍ରେଷ୍ଠ ରାଜପଣ ଲଭି ପ୍ରଜାପ୍ରାଣ ହେବେ ହୃଦଗତେ,
କ୍ଷାତ୍ରବଳ ସମ୍ପାଦନେ ଏ ମେଦିନି -
ହେଉ ପ୍ରକମ୍ପିତ,
ସୁରକ୍ଷା ଓ ସୁଶାସନ, ସୁବିଚାର ହେଉ ରାଜ ବ୍ରତ ।
ଧର୍ମ ରକ୍ଷା ପାଇଁ
ରାଜ୍ୟକୁ କରିବେ ରାଜା ମର୍ତ୍ତ୍ୟେ ପୁଣ୍ୟଭୂଇଁ ।

ପ୍ରଜାର ସୁରକ୍ଷା ଶାନ୍ତି ସମୃଦ୍ଧି ଦିଗରେ
ନିଜକୁ ଉତ୍ସର୍ଗ କର ଆନନ୍ଦ ମନରେ,
ପ୍ରଜାଗଣେ, ରାଜା କରି ସୁଖରେ ଶାସନ
ଶାନ୍ତି ସୁଖ, ଆନନ୍ଦ ସେ କରନ୍ତୁ ପ୍ରଦାନ ।
ଅଭିଷେକ କରୁ ଅଛୁ ରାଜସିଂହାସନେ
ଲଭନ୍ତୁ ଅକ୍ଷୟ କୀର୍ତ୍ତି ରାଜ୍ୟ ସୁଶାସନେ ।

•

ମା ମା ହିଂଃ ସୀଜନିତା ଯଃ ପୃଥିବ୍ୟା ଯୋ ବା
ଦିବ ଂଃ ସତ୍ୟଧର୍ମା ବ୍ୟାନଟ୍ । ଯଶ୍ଚାପଶ୍ଚନ୍ଦ୍ରାଃ ପ୍ରଥମୋ
ଜଜାନ କସ୍ମୈ ଦେବାୟ ହବିଷା ବିଧେମ ।

ଯଜୁ.ସଂ. ୧୦ ଅଧ୍ୟାୟ । ମନ୍ତ୍ର ୬୧୫

ପରମ ପୁରୁଷ ପ୍ରଭୁ ପରମେଶ୍ୱର, ସେହି ଦିବ୍ୟ ଲୋକର ସ୍ରଷ୍ଟା । ସେ ମଧ୍ୟ ଏହି ପୃଥିବୀକୁ ରଚନା କରିଛନ୍ତି । ସେ ବିଶ୍ୱବ୍ରହ୍ମାଣ୍ଡ ସତ୍ୟ ଧର୍ମର ପାଳକ, ଏବଂ ଏହି ମହାନ୍ ସୃଷ୍ଟିର ଆନନ୍ଦସ୍ୱରୂପ । ଆମେ ତାଙ୍କର ଅନୁଶାସନ ମଧ୍ୟରେ ରହି, ସୁଖରେ ଜୀବନ ଅତିବାହିତ କରିବା ଉଚିତ୍ । ଆମେ ସେହି ଅନୁଶାସନର ଆଶୀର୍ବାଦ ଲାଭ କରିବା ପାଇଁ, ହେ ଜଗଦୀଶ୍ୱର ! ଆପଣଙ୍କୁ ଆହୁତି ପ୍ରଦାନ କରୁଛୁ ।

# ଦିବ୍ୟାନୁଶାସନ

ଦିବ୍ୟଲୋକ ରଚୟିତା ଜଗତଈଶ୍ୱର
ସେ ଅଟନ୍ତି ସ୍ରଷ୍ଟା, ଦ୍ରଷ୍ଟା, ଏହି ଭୂଲୋକର,
ଅଟନ୍ତି ଶାଶ୍ୱତ, ସତ୍ୟ, ଧର୍ମର ପାଳକ
ନିଖିଳ ବ୍ରହ୍ମାଣ୍ଡ ସର୍ବ ପ୍ରାଣ ପ୍ରହ୍ଲାଦକ ।
ସିଏ ସର୍ବେଶ୍ୱର,
ପରିବ୍ୟାପ୍ତ ଅନନ୍ତ ଭୂମାର ।

ସେ ଅନାଦି ମହାଶକ୍ତି ସେ ଆଦି ପୁରୁଷ
ସେ ଅନନ୍ତ ମହାଦ୍ୟୁତି ପ୍ରଭୁ ପରମେଶ,
ତାଙ୍କରି କରୁଣା ବାରି ବର୍ଷାରୂପ ଧରି
କରିଛି ଜୀବନ ଦାନ, ଆକାଶେ ସଂଚରି ।
ସୁଜିବାୟୁ ଧାରା,
ଉଚ୍ଚାରିଛନ୍ତି ସେ ସୃଷ୍ଟି ଆଦ୍ୟ ଶ୍ଳୋକ ପରା ।

ବିଶ୍ୱର ମଙ୍ଗଳ ପାଇଁ ରଚିଛନ୍ତି ମଙ୍ଗଳ ବିଧାନ
ଶୁଭଙ୍କର, ପୁଣ୍ୟମୟ, ନୀତିଭରା ସେ ଅନୁଶାସନ,
ସେଥିରେ ରହିଛି ଭରି ସର୍ବସୁଖ ଐଶ୍ୱର୍ଯ୍ୟ ବିଭୂତି
ବିଶ୍ୱ ଜୀବନର ତାହା ମଧୁମୟ ଦୁର୍ଲ୍ଲଭ ସମ୍ପତ୍ତି ।
ନକର ହେ ତା'ର ଉଲ୍ଲଙ୍ଘନ,
ଦୁଃଖଭରା ସଂସାରରେ ଏହା ଅଟେ ମହୌଷଧି ପୁଣ ।

ପରମ ମଙ୍ଗଳମୟ କରୁଅଛୁ ଅର୍ପଣ ଆହୁତି
ଦିବ୍ୟାନୁଶାସନ ପାଳି ଏ ଜୀବନ ସୁଖେ ଯାଉ ବିତି
ହୋଇ ମନ ଶାନ୍ତ ସୁସଂହତ,
ବରି ନେଉ ଦିବ୍ୟ ଅନୁଶାସନର ପଥ ।

•

• ମଧୁ ବାତା ଋତାୟତେ ମଧୁ କ୍ଷରନ୍ତିସିନ୍ଧବଃ
ମାଧ୍ୱୀର୍ନଃ ସନ୍ତ୍ୱୋଷଧୀଃ ।

ମନ୍ତ୍ର ୬୫୭

• ମଧୁ ନକ୍ତମୁତୋଷସୋ ମଧୁମତ୍ପାର୍ଥିବଓଁ ରଜଃ
ମଧୁ ଦୌ୍ୟରସ୍ତୁ ନଃ ପିତା ।

ମନ୍ତ୍ର ୬୫୮

• ମଧୁମାନ୍ନୋ ବନସ୍ପତିର୍ମଧୁମାଁ୨ ଅସ୍ତୁ ସୂର୍ଯ୍ୟଃ
ମାଧ୍ୱୀର୍ଗାବୋ ଭବନ୍ତୁ ନଃ ।

ଯଜୁ.ସଂ. । ୧୩ଅଧ୍ୟାୟ । ମନ୍ତ୍ର ୬୫୯

ଏହି ଯଜ୍ଞଶୀଳ ମାନବ ଜାତି ପାଇଁ ବାୟୁ ପ୍ରବାହ ପ୍ରଦୂଷଣମୁକ୍ତ ହେଉ । ନଦୀ, ଝରଣାଗୁଡ଼ିକ ସ୍ୱଚ୍ଛ ଜଳ ପ୍ରବାହରେ ପ୍ରବାହିତ ହୁଅନ୍ତୁ । ବାୟୁ ଏବଂ ଜଳ ବିଶୁଦ୍ଧହୋଇ ଅମୃତମୟ ପ୍ରବାହରେ ପରିଣତ ହୁଅନ୍ତୁ ।

ଦିବ୍ୟଲୋକ ଆମମାନଙ୍କର ପିତୃତୁଲ୍ୟ ପୋଷଣ କର୍ତ୍ତା ଭାବରେ, ମାଧୁର୍ଯ୍ୟପୂର୍ଣ୍ଣ ହେଉ । ଏହି ପୃଥିବୀ ଆମର ଜନନୀ ତୁଲ୍ୟ ଏବଂ ଏହାର ପୋଷଣ ରସ, ଆମର ଜୀବନ ରକ୍ଷକ ଓ ଆନନ୍ଦବର୍ଦ୍ଧକ ହେଉ ।

ପୃଥିବୀର ଔଷଧୀୟ ବନସ୍ପତି, ସେମାନଙ୍କ ମଧୁ ରସରେ ଆମ ପାଇଁ ଆରୋଗ୍ୟଦାୟକ ହୁଅନ୍ତୁ । ସୂର୍ଯ୍ୟଦେବ ତାଙ୍କର ମାଧୁର୍ଯ୍ୟ ଶକ୍ତି ଦ୍ୱାରା ଆମକୁ ପ୍ରାଣଦାନ ଓ ପରିପୁଷ୍ଟ କରନ୍ତୁ । ଆମର ଗୃହପାଳିତ ଗାଈମାନେ, ଅମୃତ ରସ ତୁଲ୍ୟ ସେମାନଙ୍କର ଦୁଗ୍ଧଦାନ କରନ୍ତୁ ।

ବି.ଦ୍ର. ମଧୁମାସ.....ଚୈତ୍ରମାସ, ମାଧବମାସ...ବୈଶାଖ ମାସ, ଏ ଉଭୟେ ବସନ୍ତ ଋତୁର ଅଂଶ ବିଶେଷ । ମଧୁବରଣା.. ବସନ୍ତ ବର୍ଣ୍ଣା ।

# ମଧୁ ମାଧବ

ମଧୁ ମାଧବ ଆଜି ପ୍ରକୃତି ପୁରେ
ଆସି ଅଛନ୍ତି ଗାଇ ସେ ମଧୁସ୍ୱରେ,
ବସନ୍ତ ମଧୁଗାନ, କଣ୍ଠେ ତାଙ୍କର
ସେ ତାନେ ପୁଲକିତ ପ୍ରକୃତି ପୁର ।

ମଧୁ ଭଣ୍ଡାର ହେଉ ବିଶ୍ୱ ପ୍ରକୃତି
ସଂଚାରକରୁ ମଧୁ, ବାୟୁର ଗତି,
ଭରୁ ମଧୁ ପ୍ରବାହେ ନଦୀ ଝରଣା
ପ୍ରକୃତି ରାଣୀ ହେଉ ମଧୁବରଣା ।

ବନର ବନସ୍ପତି ମଧୁ ରସରେ
ପରିପୂର୍ଣ୍ଣ ହୁଅନ୍ତୁ ରସାୟନରେ,
ରୋଗ ଯନ୍ତ୍ରଣା କରି ସେ ନିବାରଣ
କରନ୍ତୁ ମଧୁମୟ ବିଶ୍ୱ ଜୀବନ ।

ମଧୁର ଦୁଗ୍ଧରସ ଦିଅନ୍ତୁ ଗାଇ
ଅମୃତ ତୁଲ୍ୟ ତାହା ଜୀବନ ପାଇଁ,
ସୂର୍ଯ୍ୟ ଦେବ କରନ୍ତୁ ମାଧୁର୍ଯ୍ୟ ଦାନ
ସେ ଦାନେ ପୁଷ୍ଟହେଉ ବିଶ୍ୱ ଜୀବନ ।

ମାଧୁର୍ଯ୍ୟେ ପୂର୍ଣ୍ଣ ହେଉ ସେ ଦିବ୍ୟଲୋକ
ପୋଷଣ କର୍ତ୍ତାରୂପେ ବିଶ୍ୱ ଜନକ,
ପୃଥିବୀ ଜନ୍ମଦାତ୍ରୀ ଜନନୀ ପରି
ମାତୃତ୍ୱ ମାଧୁର୍ଯ୍ୟରେ ଜୀବନ ଭରି
କରନ୍ତୁ ରକ୍ଷା
ଅମୃତ ପଦେ ଆମ ଏତିକି ଭିକ୍ଷା ।

•

- ବ୍ରତେନ ଦୀକ୍ଷାମାପ୍ନୋତି ଦୀକ୍ଷୟାପ୍ନୋତି ଦକ୍ଷିଣାମ୍
  ଦକ୍ଷିଣା ଶ୍ରଦ୍ଧାମାପ୍ନୋତି ଶ୍ରଦ୍ଧୟା ସତ୍ୟମାପ୍ୟତେ ।

ଯଜୁ.ସଂ. ୧୯ଅଧ୍ୟାୟ । ମନ୍ତ୍ର ୧୦୫୬

ବ୍ରତନିଷ୍ଠ ହୋଇ ମଣିଷ ଯଜ୍ଞାନୁଷ୍ଠାନ କଲେ, ସେ ଦୀକ୍ଷା ଲାଭ କରିଥାଏ । ଦୀକ୍ଷା ମଣିଷ ମଧ୍ୟରେ ଦକ୍ଷତା ସୃଷ୍ଟି କରେ । ମଣିଷର ଦକ୍ଷତା ବଢ଼ିଲେ ସେ ସମାଜରେ ପ୍ରତିଷ୍ଠିତ ହୁଏ । ପ୍ରତିଷ୍ଠା ଜନମାନସର ଶ୍ରଦ୍ଧା ଆକର୍ଷଣ କରେ ଏବଂ ପ୍ରତିଷ୍ଠିତ ବ୍ୟକ୍ତି ମଧ୍ୟରେ ଶ୍ରଦ୍ଧାଭାବ ଉଦ୍ରେକ ହୁଏ । ଶ୍ରଦ୍ଧାରୁ ମଣିଷ ସତ୍ୟ ଲାଭ କରିଥାଏ । ସତ୍ୟ ହିଁ ପରମେଶ୍ୱର ପ୍ରାପ୍ତିର ମାର୍ଗ ଦର୍ଶକ ।

- ଜିହ୍ୱା ମେ ଭଦ୍ରଂ ବାଙ୍‌ମହୋ ମନୋ ମନ୍ୟୁଃ ସ୍ୱରାଡ୍ଭାମଃ
  ମୋଦାଃ ପ୍ରମୋଦାଃଅଙ୍ଗୁଳୀରଙ୍ଗାନି ମିତ୍ରଂ ମେ ସହଃ ।

ଯଜୁ.ସଂ. । ଅଧ୍ୟାୟ୨୦ ମନ୍ତ୍ର ୧୧୨୭

ଆମର ଜିହ୍ୱା ସର୍ବଦା ଭଦ୍ର ଓ ମଙ୍ଗଳ କଥା ଉଚ୍ଚାରଣ କରୁ । ଆମର ବାଣୀ ଶିଷ୍ଟ ଓ ମହନୀୟ ହେଉ । ଆମର ମନ, ଅନ୍ୟାୟର ପ୍ରତିରୋଧ କରିବା ସହିତ, ଅନାଚାରୀ ମାନଙ୍କର ବିରୋଧ କରୁ । ଆମର ଅଙ୍ଗୁଳିଗୁଡ଼ିକ ସଚଳ ରହିବା ସହିତ, ଅଙ୍ଗ ପ୍ରତ୍ୟଙ୍ଗ ଆମପାଇଁ ଶକ୍ତି ଓ ସାମର୍ଥ୍ୟଦାୟକ ହୁଅନ୍ତୁ ।

# ଯଜ୍ଞଫଳ

କରିଲେ ଯଜ୍ଞାନୁଷ୍ଠାନ ବ୍ରତନିଷ୍ଠ ହୋଇ
ସଂଯମ ଭାବ ମନରେ ଉଦିତ ହୁଅଇ,
ଚିନ୍ତନେ ବଚନେ କର୍ମେ ମିଳଇ ଶୃଙ୍ଖଳା
ଦକ୍ଷତାର ବୃଦ୍ଧି କରିଥାଏ ଦୀକ୍ଷାଧାରା ।

ଦକ୍ଷତା ବଢ଼ିଲେ ମିଳେ ପ୍ରତିଷ୍ଠା ସମାଜେ
ଜନପୂଜ୍ୟ ହୁଏ ବ୍ୟକ୍ତି ସର୍ବାଗ୍ରେ ବିରାଜେ,
ପ୍ରତିଷ୍ଠିତ ହୁଏ ଯେହୁ ହୁଏ ସେ ଅଗ୍ରଣୀ
ସ୍ନେହ ଶ୍ରଦ୍ଧା ଲଭନ୍ତି ସେ ସମାଜରେ ପୁଣି ।

ଶ୍ରଦ୍ଧାମୟ ବ୍ୟକ୍ତି ଶ୍ରଦ୍ଧା ଆଚରନ୍ତି ନିଜେ
ଶ୍ରଦ୍ଧାଦାନ କରିଥାନ୍ତି ସେ ବିଶ୍ୱ ସମାଜେ,
ଅମାପ ଶକ୍ତିର ଉତ୍ସ ଅଟଇ ଶରଧା
ବିତରିଥାଆନ୍ତି ସିଏ ସର୍ବେ ଶାନ୍ତିସୁଧା ।

ଶ୍ରଦ୍ଧାବଳେ ଅସମ୍ଭବ ହୁଅଇ ସମ୍ଭବ
ବାଣ୍ଟିଲେ ସରେନି କେବେ ଶ୍ରଦ୍ଧାର ବିଭବ,
ଶ୍ରଦ୍ଧାରୁ ମିଳଇ ପ୍ରାଣେ ପରମ ସନ୍ତୋଷ
ଶ୍ରଦ୍ଧାରେ ହୁଅନ୍ତି ପ୍ରାପ୍ତି ସତ୍ୟ ପରମେଶ ।

ହେଉ ରସନା ଆମର ବଚନ ବନ୍ଦିତ
ବାଣୀ ଆମ ହେଉ ସଦା ମହିମା ମଣ୍ଡିତ,
ପ୍ରତିହତ କରୁ ମନ, ଅନାଚାରୀ ଗଣେ
ଅନ୍ୟାୟର ପ୍ରତିରୋଧ କରୁ ଦୃଢ଼ ମନେ ।

ସୁଖ୍ୟ ପ୍ରଦ ହେଉ ଅଙ୍ଗ ପ୍ରତ୍ୟଙ୍ଗ ସକଳ
ଅଙ୍ଗୁଳି ଗୁଡ଼ିକ ହେଉ ସର୍ବଦା ସଚଳ,
ମିତ୍ରଗଣ ନହୁଅନ୍ତୁ ଅମିତ୍ର ଜୀବନେ
ସହାୟକ ହୁଅନ୍ତୁ ସେ ଶତ୍ରୁ ସମ୍ମୁଖୀନେ ।

•

"ଆ ବ୍ରହ୍ମନ୍ ବ୍ରହ୍ମଣୋ ବ୍ରହ୍ମବର୍ଚ୍ଚସୀ ଜାୟତାମା
ରାଷ୍ଟ୍ରେ ରାଜନ୍ୟଃ ଶୂରଽଇଷବ୍ୟୋତିବ୍ୟାଧୀ
ମହାରଥୋ ଜାୟତାଂ ଦୋଗ୍ଧ୍ରୀ ଧେନୁର୍ବୋଢ଼ାନଡ୍ବାନାଶୁଃ
ସପ୍ତିଃ ପୁରନ୍ଧିର୍ୟୋଷା ଜିଷ୍ଣୁ ରଥେଷ୍ଠାଃ ସଭେୟୋ
ଯୁବାସ୍ୟ ଯଜମାନସ୍ୟ ବୀରୋ ଜାୟତାଂ ନିକାମେ -
ନିକାମେ ନଃ ପର୍ଜନ୍ୟୋ ବର୍ଷତୁ ଫଳବତ୍ୟୋ
ନଽଓଷଧୟଃ ପ୍ରଚ୍ୟନ୍ତାଂ ଯୋଗକ୍ଷେମୋ ନଃ କଳ୍ପତାମ୍ ।"

ଯଜୁ.ସଂ. ୨୨ଅଧ୍ୟାୟ । ମନ୍ତ୍ର ୧୨୯୪

ହେ ବ୍ରହ୍ମନ୍ ! ଆମର ଏହି ଦେଶରେ ବ୍ରହ୍ମତେଜ ଯୁକ୍ତ ବ୍ରାହ୍ମଣ, ପରମ ପରାକ୍ରମୀ ଶତ୍ରୁଜୟୀ ମହାରଥୀ କ୍ଷତ୍ରିୟ ଜନ୍ମ ଲାଭ କରନ୍ତୁ । ଆମ ଦେଶ ପଶୁ ସମ୍ପଦରେ ସମୃଦ୍ଧ ହେଉ, ଏ ଦେଶର ନାଗରିକମାନେ, ଦ୍ରୁତଗାମୀ ଅଶ୍ୱ ଏବଂ ଭାରବାହୀ ପଶୁ ସହିତ ଦୁଗ୍ଧବତୀ ଗାଈ ଲାଭ କରନ୍ତୁ । ଏ ଦେଶର ନାରୀଗଣ କୁଳଶୀଳ ସମ୍ପନ୍ନା ତଥା ଗୁଣବତୀ ହୁଅନ୍ତୁ । ରଥୀ ସର୍ବଦା ବିଜୟ ଲାଭ କରନ୍ତୁ । ସାଧୁ ସ୍ୱଭାବଯୁକ୍ତ ବ୍ୟକ୍ତିଗଣ, ବକ୍ତାର ଆସନ ଗ୍ରହଣ କରନ୍ତୁ । କୃଷିର ଆବଶ୍ୟକତା ଅନୁସାରେ ବର୍ଷା ହେଉ । ଆମ ରାଷ୍ଟ୍ର, ଅନ୍ନ, ଜଳ, ଫଳ, ଔଷଧିରେ ସମୃଦ୍ଧ ହୋଇ ସୁରକ୍ଷିତ ରହୁ ।

# ଦେଶାତ୍ମବୋଧ

ହେ ବ୍ରହ୍ମନ୍ ! ରାଷ୍ଟ୍ରର ମଙ୍ଗଳଧ୍ୟାୟୀ
ହବ୍ୟାହୁତି କରୁଛୁ ଅର୍ପଣ,
ତେଜସ୍ୱୀ ବ୍ରାହ୍ମଣଗଣ ବ୍ରହ୍ମତେଜେ ହୁଅନ୍ତୁ ଜନମ ।
ମହାପରାକ୍ରମୀ ବୀର ମହାରଥୀ କ୍ଷତ୍ରିୟ ସକଳ
ସୁରକ୍ଷା ଦିଅନ୍ତୁ ସର୍ବେ, ସେ'ତ ରାଷ୍ଟ୍ରବଳ ।

କୁଶଳୀ କୃଷକଗଣ କୃଷିକର୍ମେ ହୁଅନ୍ତୁ ଉଦ୍ୟତ
ସମୃଦ୍ଧ ହୁଅନ୍ତୁ ସିଏ, ଗୃହେ ରଖି ଗୋ,ପଶୁ ସମ୍ପଦ,
ଦୁଗ୍ଧବତୀ ଗାଭୀ
ଅଟେ ଘୃତପଦୀ,
ଯଜ୍ଞଧାରା କରଇ ନିର୍ବାହ
ସୃଷ୍ଟିକରି ପ୍ରକୃତିର ପୋଷଣ ପ୍ରବାହ ।

ନାରୀଏ ହୁଅନ୍ତୁ ସର୍ବଗୁଣ ସମନ୍ୱିତା
ଶୀଳବତୀ ସେବାଶୀଳା ଭୁବନ ବନ୍ଦିତା,
କୁଳାଚାର କୁଳଧର୍ମ କର୍ତ୍ତବ୍ୟ ବିଧିରେ
ପାଳନ୍ତୁ ଗୃହସ୍ଥ ଧର୍ମ, ସେ ଗୃହ ମନ୍ଦିରେ ।
ସଭା ମଧ୍ୟେ ସାଧୁ ସୁପୁରୁଷ -
ଉଭା ହୋଇ ପ୍ରକାଶନ୍ତୁ ବାଣୀର ପୌରୁଷ ।
ବକ୍ତା ପଦେ ଜ୍ଞାନୀ ଗୁଣିଜନ,
ପରିତୋଷ କରନ୍ତୁ ସେ ଶ୍ରୋତାଙ୍କର ମନ ।

ମେଘାଗମେ ବୃଷ୍ଟିଶୀଳ ହେଉ ଏ ଆକାଶ
ଏ ପ୍ରକୃତି ତୃଣଭରା ଶ୍ୟାମଳ ପ୍ରକାଶ,
ସ୍ରୋତସ୍ୱିନୀ ହେଉ ନଦୀନାଳ
ଶସ୍ୟ କ୍ଷେତ୍ର ସବୁଜ ସୁନ୍ଦର ।
ଅନ୍ନ, ଜଳ, ଔଷଧୀୟ ଶକ୍ତି ଲାଭ କରି
ସର୍ବ ସୁଖେ କଟୁ ଆମ ଦିବସ ସର୍ବରୀ

•

ଈଶା ବାସ୍ୟମିଦ ୠଃ ସର୍ବଂ ଯକ୍ଚିଂ ଚ ଜଗତ୍ୟାଂ ଜଗତ୍
ତେନ ତ୍ୟକ୍ତେନ ଭୁଞ୍ଜୀଥା ମା ଗୃଧଃ କସ୍ୟ ସ୍ୱିଦ୍ଧନ୍ ।

ଯଜୁ.ସଂ. ୪୨ଅଧ୍ୟାୟ, ମନ୍ତ୍ର ୧୯୫୯

ଏ ସୃଷ୍ଟିର ସମସ୍ତ ଜଡ଼ ଓ ଚେତନ ଶକ୍ତି ସେଇ ପରମ ଶକ୍ତି ପରମେଶ୍ୱରଙ୍କ ଶକ୍ତି ଭଣ୍ଡାରର ଅଂଶ ବିଶେଷ । ଏହି ସୃଷ୍ଟି ସର୍ଜନା ପାଇଁ ଯାହା ସେ ତ୍ୟାଗ କରିଛନ୍ତି, ତାହା ତାଙ୍କର ଉଚ୍ଛିଷ୍ଟ ପରି । ଏହା ତାଙ୍କ ଗୁଣାତୀତ ଅବ୍ୟକ୍ତ ଶରୀରର ବ୍ୟକ୍ତରୂପ । ପ୍ରଭୁଙ୍କ ଦ୍ୱାରା ଅର୍ପିତ ହୋଇଥିବା ବସ୍ତୁକୁ ଉପଭୋଗ କର । ତାଙ୍କର ଉଚ୍ଛିଷ୍ଟ ବା ସମର୍ପିତ ସାମଗ୍ରୀରେ ସନ୍ତୁଷ୍ଟ ରୁହ ।

ବି.ଦ୍ର. ଅଥର୍ବ ବେଦ ସଂହିତା ଦ୍ୱିତୀୟ ଭାଗରେ, "ଉଚ୍ଛିଷ୍ଟ ବ୍ରହ୍ମ" ସୂକ୍ତରେ ତେନ ତ୍ୟକ୍ତେନ ଭୁଞ୍ଜୀଥାର ବିଶଦ ବିବରରଣୀ ଅଛି । ଏ ସମଗ୍ର ବିଶ୍ୱ, ଦେବଗଣ, ପିତୃପୁରୁଷ, ଗନ୍ଧର୍ବ ଓ ଅପ୍ସରାଗଣ ଉଚ୍ଛିଷ୍ଟ ବ୍ରହ୍ମରୁ ପ୍ରକାଶିତ ।

## ତେନତ୍ୟକ୍ତେନ ଭୁଞ୍ଜୀଥା

ସେ ଅଟନ୍ତି ପରମାତ୍ମା
ତାଙ୍କଠାରେ ସର୍ବଶକ୍ତି ଠୂଳ,
ସମଗ୍ର ସୃଷ୍ଟିର ସିଏ ମହାରୂପ
ବୀଜର ଭଣ୍ଡାର ।
ସେ ଭଣ୍ଡାରୁ, ଯାହା ସେ କରନ୍ତି ତ୍ୟାଗ,
ଅଟେ ତାଙ୍କ ମହାନ୍ ଉଚ୍ଛିଷ୍ଟ,
ସେ ସତ୍ତାରୁ ଜନ୍ମ ନିଏ ଏ ବିଶ୍ୱ ବ୍ରହ୍ମାଣ୍ଡ ।
ଆମ ପାଇଁ ଏ ଭୋଗ ଭୁବନ
ମହା ଉଚ୍ଛିଷ୍ଟର ଏହା ମହା ପ୍ରକାଶନ ।
ଦେବାର୍ପିତ ଏହା,
ସନ୍ତୋଷେ କରିବା ଭୋଗ
ମିଳିଅଛି ଯାହା ।

ଉଚ୍ଛିଷ୍ଟ ବ୍ରହ୍ମରୁ ଜାତ ଅଟେ ତ୍ରିଭୁବନ
ଦ୍ୟୁଲୋକ, ଭୂଲୋକ ତଥା ଅନ୍ତରିକ୍ଷ, ପୁଣ -
ଦେବଗଣ, ପିତୃଗଣ, ଗନ୍ଧର୍ବ ଅପ୍‌ସରା
ସଂଚାଳିତ ପ୍ରକୃତିର ପୁଣ୍ୟ ଯଜ୍ଞଧାରା ।
ଅଗ୍ନି, ଜଳ, ବାୟୁର ଉତ୍ପତ୍ତି,
ବ୍ୟକ୍ତରୂପ ଅଟେ ବ୍ରହ୍ମଜ୍ୟୋତିଃ ।

ପରିତ୍ୟକ୍ତ ପ୍ରବାହରୁ ଜାତହୁଏ ସୂକ୍ଷ୍ମ ଅନୁକଣ
ସେ ଅନୁକଣରୁ ଜାତ ପରମାଣୁ ପୁଣ ।
ସେ ଅଣୁ ଘଟକ,
ସଂଚାଳିତ କରେ, ଦିବ୍ୟ ସେ 'ଉଚ୍ଛିଷ୍ଟ ଚକ୍ର' ।
ହୁଏ ନାହିଁ ବ୍ୟତିକ୍ରମ କେବେ
ଚାଲିଛି ଅନନ୍ତ କାଳୁ
ଚାଲିବ ତା' ନିରବିବ ଯେବେ ।।

•

ପ୍ରଜାପତିଃ ସନ୍ତ୍ରିୟମାଣଃ ସମ୍ରାଟ୍ ସମ୍ଭୃତୋ ବୈଶ୍ୱଦେବଃ
ସଂ ଛଃ ସନ୍ନୋ ଘର୍ମଃ ପ୍ରବୃକ୍ତ ସ୍ତେଜଽଉଦ୍ୟତଽଆଶ୍ୱିନଃ
ପୟସ୍ୟାନୀୟମାନେ ପୌଷ୍ଣୋ ବିଷ୍ୟନ୍ଦମାନେ ମାରତଃ କ୍ଲଥନ୍
ମୈତ୍ରଃ ଶରସି ସନ୍ତାୟ୍ୟମାନେ ବାୟବ୍ୟୋ ହ୍ରିୟମାଣଽଆଗ୍ନେୟୋ
ହୂୟୋମାନୋ ବାଗ୍‌ହୁତଃ ।

ଯଜୁ. ସଂ. ଅଧ୍ୟାୟ ୪୯ । ମନ୍ତ୍ର ୧୯୫୦

ମୋର ଏହି ହବ୍ୟାହୂତି, ସୃଷ୍ଟିକର୍ତ୍ତା ପ୍ରଜାପତି, ପ୍ରଜାବତ୍ସଳ ସମ୍ରାଟ ବିଦ୍ୱାନ ପୂଜିତ ବୈଶ୍ୱଦେବ, ଶ୍ରେଷ୍ଠଯଜ୍ଞ, ଘର୍ମ, ଶୀର୍ଷାସୀନ ତେଜ, ଜଳଦ୍ୱାରା ଅଭିଷିକ୍ତ ଅଶ୍ୱିନୀକୁମାର ଦ୍ୱୟ, ପୃଥିବୀର ଶୁଭକାମୀ 'ପୂଷା' ଦେବ, ଶତ୍ରୁଜୟୀ ମରୁତ୍, କୃଷି ବିଧାୟକ ମିତ୍ରଦେବ, ଯୁଦ୍ଧ ଭୂମିରେ ସଂଚରଣଶୀଳ ବାୟୁଦେବ, ଯଜ୍ଞାହୁତି ଗ୍ରହଣ କରୁଥିବା ଅଗ୍ନିଦେବ ଏବଂ ବାକ୍ ଦେବତାଙ୍କ ପ୍ରୀତିବର୍ଦ୍ଧନ ପାଇଁ ସମର୍ପିତ ।

# ଆହୁତି

ପବିତ୍ର ଏ ଯଜ୍ଞାହୁତି କରୁଛି ପ୍ରଦାନ
ପ୍ରଜାପତି ବ୍ରହ୍ମାଙ୍କୁ ମୁଁ କରି ଆବାହନ ।
ତାଙ୍କ ପରିତୋଷ ପାଇଁ,
ସେ ବିଶ୍ୱର ସଙ୍ଗଠକ ଏ ସୃଷ୍ଟିର ସାଇଁ ।

ସର୍ବଜନ, ପୂଜନୀୟ ପ୍ରଭୁ ବୈଶ୍ୱଦେବ
ସେ ଅଟନ୍ତି ପ୍ରାଣସଖା ସୃଷ୍ଟି ଅଭିନବ ।
ମହା ଶକ୍ତି ଦିବ୍ୟ ତେଜୋମୟ
ଆହୁତି ପ୍ରଦାନ କରେ ଲଭିବାକୁ
ଶକ୍ତି ମହନୀୟ ।

'ପୂଷାଦେବ' ତ୍ରିପୁର ଈଶ୍ୱର
ପ୍ରାଣ ପ୍ରଦାୟକ ପ୍ରଭୁ ଦିବ୍ୟ ତେଜସ୍ୱର
ତାଙ୍କ ସନ୍ତୋଷ ବିଧାନେ
ଆହୁତି ପ୍ରଦାନ କରେ ମୁଁ ଆନନ୍ଦ ମନେ ।

ଦେବ ବୈଦ୍ୟ ଅଶ୍ୱିନୀ କୁମାର
ଜରାଗ୍ରସ୍ତେ କରନ୍ତି ଅଜର
ସର୍ବ ଦେବ ସମ୍ମାନିତ ଦେବ ବୈଦ୍ୟ ଦୁଇ
ଆହୁତି ପ୍ରଦାନ କରେ ତାଙ୍କ ତୃପ୍ତି ପାଇଁ ।
ଘୃତପାୟୀ ଯଜ୍ଞ ଅଗ୍ନିଦେବ !
ଯଜ୍ଞହବିଃ ଉର୍ଦ୍ଧ୍ୱାୟନେ ନେଇ -
ସମର୍ପିବେ ଦେବଗଣେ ତାଙ୍କ ତୃପ୍ତି ପାଇଁ
ଏ' ଆହୁତି କରୁଛି ପ୍ରଦାନ,
ବାୟୁ ଦେବ କରନ୍ତୁ ତା' ଉର୍ଦ୍ଧ୍ୱେ ସଂଚାରଣ ।

ଭାବମୟ ଭାଷାମୟ ବାଣୀ ଦେବତାଙ୍କୁ
ପ୍ରାର୍ଥନା କରୁଛି ଆସି ଏ ଯଜ୍ଞ ପୀଠକୁ
ହବ୍ୟାହୁତି କରନ୍ତୁ ଗ୍ରହଣ,
ବିଶ୍ୱର ମଙ୍ଗଳଧ୍ୟାୟୀ କରେ ସମର୍ପଣ ।

•

• ଯଜ୍ଜାଗ୍ରତେ ଦୂରମୁଦୈତି ଦୈବଂ
ତଦୁସୁପ୍ତସ୍ୟ ତଥୈବୈତି,
ଦୂରଙ୍ଗମଂ ଜ୍ୟୋତିଷାଂ ଜ୍ୟୋତିରେକଂ
ତନ୍ମେ ମନଃ ଶିବସଂକଳ୍ପମସ୍ତୁ ।

ଯଜୁ.ସଂ. ଅଧ୍ୟାୟ ୩୪ମନ୍ତ୍ର ୧୭୯୩

ମନର ଗତି ଚଞ୍ଚଳ । ଜାଗ୍ରତ ଅବସ୍ଥାରେ ଏହା ଯେପରି ଦୂର ଦୂରାନ୍ତକୁ ଗମନ କରିଥାଏ, ସୁପ୍ତାବସ୍ଥାରେ ମଧ୍ୟ ସେହିପରି ବହୁ ଦୂରକୁ ଯାଇଥାଏ ।

ଏହି ଶକ୍ତିଶାଳୀ ମନ, ଇନ୍ଦ୍ରିୟମାନଙ୍କର ଜ୍ୟୋତିରୂପ ପ୍ରକାଶ କରିଥାଏ । ମନ ଜୀବାତ୍ମାର ଏକମାତ୍ର ମାଧ୍ୟମ । ଏହିପରି ଜ୍ୟୋତିଯୁକ୍ତ ମନ ଆମର ଚିର କଲ୍ୟାଣ ପ୍ରଦାୟକ ହେଉ । ଏହା ସର୍ବଦା ଶୁଭ ସଂକଳ୍ପଯୁକ୍ତ ହେଉ ।

• ଯତ୍ ପ୍ରଜ୍ଞାନମୁତ ଚେତୋ ଧୃତିଶ୍ଚ
ଯଜ୍ୟୋତିରନ୍ତର ମୃତଂ ପ୍ରଜାସୁ ।
ଯସ୍ମାନ୍ନଋତେ କିଂ ଚନ କର୍ମ କ୍ରିୟତେ
ତନ୍ମେ ମନଃ ଶିବସଂକଳ୍ପମସ୍ତୁ ।

ଯଜୁ.ସଂ. ମନ୍ତ୍ର ୧୭୯୪

ପ୍ରଖର ଜ୍ଞାନଦୀପ୍ତ ମନ, ଚେତନଶୀଳ ଓ ଧୈର୍ଯ୍ୟବାନ୍ ହୋଇଥାଏ । ଏହି ମନ ପ୍ରାଣୀମାନଙ୍କର ଅନ୍ତଃକରଣରେ, ଅନିର୍ବାଣ ଜ୍ୟୋତିଶିଖାପରି ପ୍ରକାଶିତ ହୋଇଥାଏ । ଏହାବିନା କୌଣସି କର୍ମ ସମ୍ପାଦନ କରିବା ସମ୍ଭବନୁହେଁ । ଏଇପରି ଆମର ଏହି ତେଜୋଦୀପ୍ତ ମନ 'ଶିବସଂକଳ୍ପ' ଯୁକ୍ତ ହେଉ ।

# ଶିବସଂକଳ୍ପମସ୍ତୁ

## ୧

## ମନ

ଏ ମନ ଅସ୍ଥିର ସଦା
ବୁଲୁଥାଏ ଦୂର ଦୂରାନ୍ତରେ
ଜାଗ୍ରତ ଅବସ୍ଥା ଅବା
ଘନ ଘୋର ନିଦ୍ରିତ ପ୍ରହରେ ।
ଅବାଧ ତା' ଗତି,
ଲଗାମ ଧରିବା ପାଇଁ
କେହି କ'ଣ ନାହିଁ ଅଶ୍ୱପତି ।
ଶକ୍ତିଶାଳୀ ମନ ଅଟେ
ଜ୍ୟୋତିରୂପ ଇନ୍ଦ୍ରିୟଗଣର
ତା' ଦିବ୍ୟ ପ୍ରକାଶ ଅଟେ
ଶାଶ୍ୱତ ଏ ଜୀବ ଜୀବାତ୍ମାର
ଶୁଭ ସଂକଳ୍ପର
ଭଣ୍ଡାର, କର ହେ ପ୍ରଭୁ !
ଶୁଭମୟ ମନଟିକୁ ମୋର ।
କୁଶଳୀ ସାରଥି ଯଥା
ଚଳ ଅଶ୍ୱ ଲଗାମକୁ ଧରି
ନିୟନ୍ତ୍ରଣ କରିଥାଏ
ବେଗବାନ୍ ଅଶ୍ୱକୁ ପ୍ରହାରି
ଲକ୍ଷ୍ୟପଥେ ଚଳେ
ଶୃଙ୍ଖଳର ବଳେ ।
ସେହିପରି ଶୃଙ୍ଖଳିତ
ହେଉ ଆମ ମନ ଅଶ୍ୱ ସଦା
ଲକ୍ଷ୍ୟପଥେ ପହଞ୍ଚିବୁ
ଦୂର କରି ସବୁ ବିଘ୍ନ ବାଧା ।
ହେଉ ମନ କଲ୍ୟାଣଦାୟକ
ଶୁଭ ସଂକଳ୍ପ ସାଧନେ ମାର୍ଗ ପ୍ରଦର୍ଶକ ।

•

# ଶିବ ସଂକଳ୍ପମସ୍ତୁ

## ୨

## ମନ

ମନ ଅଟେ ସର୍ବ ଶକ୍ତିଶାଳୀ
ଜ୍ୟୋତିର ସ୍ୱରୂପ ଅଟେ,
ସେ ମାନସ ଭୂମି,
ଅନିର୍ବାଣ ଶିଖା ଉଠେ ଜଳି ।

ବିଶ୍ୱ ଚରାଚର ପ୍ରାଣୀ
ମନୋମୟ ମହିମା ମଣ୍ଡିତ,
ଅନ୍ତକରଣରେ ମନ ସଦା ପ୍ରଜ୍ୱଳିତ
ସେ ପ୍ରକାଶ ଅଟଇ ଅମର,
ଜ୍ୟୋତିର ସମ୍ଭାର ।

ପ୍ରଖର ଜ୍ଞାନ ମଣ୍ଡିତ ଅଟେ ଯେଉଁମନ
ବିକଶିତ ଚେତନାର ହୁଏ ଉତ୍ତରଣ,
ସୁସଂହତ, ସ୍ଥିତପ୍ରଜ୍ଞ, ଧୈର୍ଯ୍ୟଶୀଳ ସିଏ
ଶୁଭଙ୍କର ଶୁଭଦର୍ଶୀ ମୁଗ୍ଧ ମନଟିଏ ।
ହୁଏ ଯେବୁ ତା'ର ଅଧିକାରୀ
ବିଶ୍ୱର କଲ୍ୟାଣ ପାଇଁ -
ମନ ତା'ର ଉଠଇ ଉଛୁଳି ।

ମନ ବିନା ସମ୍ପାଦିତ ହୁଏ ନାହିଁ କୌଣସି କରମ
ଚେତନାର ଉର୍ଜାଃ ସେତ, କରିଥାଏ ସଦା ସୃଷ୍ଟିକ୍ଷମ
ଅମାପ ଶକ୍ତିର ଯାହା ଅଟଇ ଭଣ୍ଡାର
ସେ ମନକୁ କର ପ୍ରଭୁ ସଦା ଶୁଭଙ୍କର ।
ଶୁଭ ସଂକଳ୍ପରେ ସଦା ସେ ମନଟି ଭରୁ
ହୋଇଯାଉ ସେ ମନଟି କଲ୍ୟାଣ ତରୁ ।
ପ୍ରଭୁ ! ଏଇପରି ମନଟିଏ ମାଗେ
ରହିବାକୁ, ସେ ମନସରଗେ ।

•

# ସୁରା

ନା ନା ହି ବାଂ ଦେବହିତ ଠଃ ସଦସ୍କୃତଂ ମା ସଠଃ ସୃକ୍ଷାଥାଂ ପରମେ
ବ୍ୟୋମନ । ସୁରା ତ୍ୱମସି ଶୁଷ୍ମିଣୀ ସୋମଃଏଷ ମା ମା ହି ଠଃ
ସାଃ ସ୍ୱାଂ ଯୋନିମାବିଶନ୍ତୀ ।

ଯଜୁ.ସଂ. ଅଧ୍ୟାୟ ୧୯ । ମନ୍ତ୍ର ୧୦୩୩

ସୋମ ଓ ସୁରା ମଧ୍ୟରେ ପ୍ରଭେଦ ଅଛି । ସୋମ ଶକ୍ତିଶାଳୀ ପୋଷକ ରସ ଓ ସୁରା ଶକ୍ତିଶାଳୀ ଔଷଧ ରସ । ଔଷଧରସ, ପାଚନ ପ୍ରଣାଳୀରେ ପ୍ରସ୍ତୁତ ହୁଏ । ସୋମରସ ସୋମ ବଲ୍ଲୀରୁ ପ୍ରସ୍ତୁତ କରାଯାଏ । ଏ ଦୁଇ ରସ, ଯଜ୍ଞପୀଠ ଏବଂ ଆକାଶର ଭିନ୍ନ ଭିନ୍ନ ସ୍ଥାନରେ ରହନ୍ତି । କେହି କାହାରି ଗୁଣ ନଷ୍ଟ କରନ୍ତି ନାହିଁ । ('ସୁରା' ମଦ୍ୟର ପ୍ରତିଶବ୍ଦ ରୂପେ ଗ୍ରହଣୀୟ ନୁହେଁ । )

ଯାହା 'ସୋମ' ତାହା ନୁହେ 'ସୁରା'
ଯାହା ସୁରା ତାହା ମଧ୍ୟ ନୁହେଁ ମଦ୍ୟଧାରା ।
ଔଷଧୀୟ ରସ ରୂପେ ସୁରା ସୁବିଦିତ ।
ଔଷଧର ଆସବନେ ହୁଅଇ ଆଦୃତ,
ରୋଗ ନିବାରଣ ଅର୍ଥେ ତା' ହୁଏ ପ୍ରୟୋଗ
ଦୂର କରେ ତାହା, ଯାହା ଅଟେ ଦୁରାରୋଗ୍ୟ ।
ସୁରାଶ୍ରୟୀ ବିଭିନ୍ନ ଆସବ,
ଏହା ମଧ୍ୟ ପୁଷ୍ଟି ପ୍ରଦାୟକ ।
    ଲତା ଗୁଳ୍ମ ପତ୍ର ପୁଷ୍ପ ଫଳ
    ଚେର ଅବା ବୃକ୍ଷର ବଲ୍କଳ,
    ତା'ରସରୁ ମିଳିଥାଏ ଔଷଧୀୟ ରସ
    ସୁସୁପ୍ତି ଦିଅଇ ଏହା ରୋଗ କରି ନାଶ ।
ମଦ୍ୟ କରେ ନିଶାସକ୍ତ ନରେ,
ରୋଗବୃଦ୍ଧି କରାଏ ସେ, ଅକାଳ ବାର୍ଦ୍ଧକ୍ୟ ଆସେ,
ପୁଷ୍ଟିହୀନ, ରକ୍ତ ହୀନତାରେ ।
    ସୋମ ବଲ୍ଲୀରୁ ପ୍ରସ୍ତୁତ ସୋମରସ ଅତି ଶକ୍ତିଶାଳୀ
    ପୋଷକ ରସର ତାହା ଅମୃତଥାଳି,
    ତେଜୋଦୀପ୍ତ କରିଥାଏ ନରେ,
    ଅନ୍ତରିକ୍ଷ ସୋମ ସ୍ରୋତ, ସଂଚରଣଶୀଳ ଅଟେ ସମଗ୍ର ବିଶ୍ୱରେ ।

•

# ସାମବେଦ

ଯଶୋ ମା ଦ୍ୟାବାପୃଥିବୀ ଯଶୋ ମେନ୍ଦ୍ରବୃହସ୍ପତୀ ।
ଯଶୋ ଭଗସ୍ୟ ବିନ୍ଦତୁ ଯଶୋ ମା ପ୍ରତିମୁଚ୍ୟତାମ୍
ଯଶସ୍ୱ୍ୟାସ୍ୟାଃ ସଂସଦୋଽହଂ ପ୍ରବଦିତା ସ୍ୟାମ୍ ।

ସାମବେଦ ସଂହିତା -ଅଧ୍ୟାୟ୬ । ଖଣ୍ଡ ୩ ।ମନ୍ତ୍ର ୬୧୧

ହେ ସର୍ବଦେବ ! ଏ ବିଶ୍ୱର ମାନବ ସମାଜକୁ, ତ୍ରିଲୋକରୁ, ତଥା ଇନ୍ଦ୍ର ବୃହସ୍ପତି ଇତ୍ୟାଦି ଦେବତାମାନଙ୍କଠାରୁ ଯଶଃ ପ୍ରାପ୍ତି ହେଉ । ସେମାନେ ସେହି ଅମୃତ ସୁଯୋଗରୁ ବଞ୍ଚିତ ନହୁଅନ୍ତୁ । ସଂସଦୀୟ କର୍ତ୍ତବ୍ୟରେ, ବିହିତ ବିଚାର ପୂର୍ବକ ସେମାନେ ମତଦାନ କରନ୍ତୁ । ଏହା ସେମାନଙ୍କୁ ଯଥୋଚିତ ସମ୍ମାନ ଓ ଯଶର ଅଧିକାରୀ କରୁ ।

ବି.ଦ୍ର. ଏହି ମନ୍ତ୍ରରୁ ବୈଦିକ ଯୁଗରେ ସଂସଦୀୟ ବ୍ୟବସ୍ଥା ଥିବାର ସୂଚନା ମିଳେ ।

# ଯଶ

କରୁଛୁ ପ୍ରାର୍ଥନା ପ୍ରଭୁ !
ଆମେ ବିଶ୍ୱବାସୀ
ଏ ସଂସାରେ କର ପ୍ରଭୁ !
ଆମକୁ ଯଶସ୍ୱୀ,
ଆଶୀର୍ବାଦ କର ପ୍ରଭୁ ଦାନ
ତ୍ରିଲୋକରୁ ଉପରିତ ହେଉ ଯଶ ଆମ ।

ଇନ୍ଦ୍ର ଦେବ, ବୃହସ୍ପତି -
ଆଦି ଦେବଗଣେ
କରନ୍ତୁ ଅନୁଗୃହୀତ
ତାଙ୍କ ଯଶ ଦାନେ
ସେ ଯଶରେ ହେଉ ସୁରକ୍ଷିତ
ସେ ଦିବ୍ୟ ଯଶରୁ ଆମେ ନହେଉ ବଞ୍ଚିତ ।

ଜୀବନେ ଚାହାନ୍ତି ସର୍ବେ
ଯଶ ଓ ବିଭୂତି
ଯଶ ଅଟେ ଜୀବନର
ପରମ ସମ୍ପତ୍ତି,
ହେଉ ସର୍ବେ ସେ ଯଶେ ମଣ୍ଡିତ
ମଳିନ ନହେଉ ତାହା, ଅବା କଳଙ୍କିତ ।

ଶକତି ସାମର୍ଥ୍ୟ ଦିଅ
ପ୍ରଭୁ ସମସ୍ତଙ୍କୁ
ସଂସଦରେ ସୁବିଚାର -
ଧାରା, ଆପିବାକୁ,
ସଂସଦୀୟ କର୍ତ୍ତବ୍ୟ ସାଧନେ
ସମର୍ଥ ହୁଅନ୍ତୁ ସର୍ବେ ସେ ବିଧି ବିଧାନେ ।
ପୂର୍ଣ୍ଣକର ପ୍ରଭୁ !
ବଞ୍ଚିତ ନକର ତାକୁ ସେ ଦିବ୍ୟ ବିଭବୁ ।

•

"ସମାନୋ ଅଧ୍ୱା ସ୍ୱସ୍ରୋରନଂ -
ତସ୍ତମନ୍ୟାନ୍ୟା ଚରତୋ ଦେବଶିଷ୍ଟେ
ନ ମେଥେତେ ନ ତସ୍ଥତୁଃ ସୁମେକେ
ନକ୍ତୋଷାସା ସମନସା ବିରୂପେ । ।"

ସାମବେଦ ସଂହିତା । ୧୯ ଅଧ୍ୟାୟ । ମନ୍ତ୍ର ୧୭୫୧

ରାତ୍ରି ଏବଂ ଉଷା ଦୁଇ ଭଉଣୀ ପରି । ସେମାନେ ସର୍ବଦା ଗୋଟିଏ ମାର୍ଗରେ ଗତି କରନ୍ତି । ସେ ମାର୍ଗ କାଳ କାଳ ଧରି ଅନନ୍ତ । ଏହାର ସମାପ୍ତି ନାହିଁ । ଲଣକପରେ ଜଣେ ସେ ମାର୍ଗର ଯାତ୍ରୀ ଅଟନ୍ତି । ସେମାନଙ୍କର ଯାତ୍ରାମଧ୍ୟ ଅନ୍ତହୀନ । ଏ' ଦୁହେଁ ସର୍ବୋତ୍ତମ କର୍ମରେ ସର୍ବଦା ଲିପ୍ତ । ଉଭୟଙ୍କର ରୂପସାମ୍ୟ ନଥିଲେ ମଧ୍ୟ, ମନୋଭୂମି ଏକ ଏବଂ ଉଭୟଙ୍କ ମଧ୍ୟରେ ବିରୋଧଭାବ ନଥାଏ । ଏ' ଦୁହିଁଙ୍କର ଅବିରାମ ଅନ୍ତହୀନ ଯାତ୍ରା, ସେହି ଅସୀମ ପଥରେ ଅବିରତ ଚାଲିଛି ।

# ମହାବ୍ରତ

ଅରୁଣ ବରଣା ସିଏ ଜ୍ୟୋତିର୍ମୟୀ ଉଷା
ପ୍ରାଚୀ ବୁକେ ଉଭା ନିତି ପିନ୍ଧି ନବ ଭୂଷା,
ଉପାସନା କରନ୍ତି ସୂର୍ଯ୍ୟଙ୍କୁ,
ଦିବସର ଲୀଳା ରଚିବାକୁ ।

ଆସନ୍ତି ରଜନୀରାଣୀ ଉଷସୀ ବେଶରେ
ସୂର୍ଯ୍ୟ ଦେବଙ୍କୁ ପୂଜନ୍ତି ଅସ୍ତ ମଣ୍ଡପରେ,
ତା'ପରେ ସେ ନିଅନ୍ତି ବିଦାୟ,
ରଜନୀର ତମୋରୂପ ହୁଅଇ ଉଦୟ ।

ଉଷା, ତମସ୍ୱିନୀ ନିତି ବେନି ଭଗ୍ନୀ ସମ
ଚାଲିଥାନ୍ତି ଆନନ୍ଦରେ ସେ ପଥ ଅସୀମ,
ଅଟେ ଯାହା ଅନାଦି ଅନନ୍ତ,
ଯାତ୍ରା ତାଙ୍କ ଅଟେ ଅବିଶ୍ରାନ୍ତ ।

କେହି ନଜାଣନ୍ତି ତାଙ୍କ ଯାତ୍ରାର ଅବଧି
ଅନନ୍ତପଥ ସହିତ ବନ୍ଧା ଯାତ୍ରାବିଧି,
ଶୁଭମୟୀ ଲିପ୍ତ ଶୁଭକାମେ,
ବାଟବଣା ହୁଅନ୍ତିନି ସେ ପଥ ଦୁର୍ଗମେ ।

ଜଣେ ଅଟେ ତେଜୋମୟୀ ଜଣେ ତମୋମୟୀ
ରୂପର ବିତାନେ ଦୁହେଁ ବିପରୀତ ଥାଇ
କର୍ମେ କିନ୍ତୁ ନଥାଏ ବିରୋଧ
ମନୋଭୂମି, ସମ ସୁସଂହତ ।

କର୍ତ୍ତବ୍ୟ ପାଳନ୍ତି ଦୁହେଁ ଏକ ମନ ଧ୍ୟାନେ
ଅବିରତ ଗତିଶୀଳ ବିଧିର ବିଧାନେ
ଯାତ୍ରାମୟ ସେ ଅନନ୍ତ ପଥ,
ପାଳନ୍ତି ସେ ବ୍ରତମୟୀ ପୁଣ୍ୟ ମହାବ୍ରତ ।

•

"ବ୍ରହ୍ମା ଦେବାନାଂ ପଦବୀଃ କବୀନା -
ମୃଷିର୍ବିପ୍ରାଣାଂ ମହିଷୋ ମୃଗଣାମ୍ ।
ଶ୍ୟେନୋ ଗୃଧ୍ରାଣାଂ ସ୍ୱଧିତିର୍ବନାନାଂ
ସୋମଃ ପବିତ୍ରମତ୍ୟେତି ରେଭନ୍ । ।"

ସାମବେଦ ସଂହିତା । ଉତ୍ତରାର୍ଚ୍ଚିକୋ । ପଞ୍ଚମଅଧ୍ୟାୟ । ମନ୍ତ୍ର ୯୪୪

ସୋମ ରସାମୃତ ଦିବ୍ୟ କ୍ଷମତାର ଅଧିକାରୀ । ଏହା ଦେବଗଣଙ୍କ ମଧ୍ୟରେ ସୃଜନଶକ୍ତି, କବିଠାରେ ଶବ୍ଦ ବିନ୍ୟାସ, ଋଷିମାନଙ୍କଠାରେ ଋଷିତ୍ୱ ବା ଦିବ୍ୟଜ୍ଞାନ, ପଶୁମାନଙ୍କଠାରେ ବଳିଷ୍ଠତା, ପକ୍ଷୀମାନଙ୍କଠାରେ ଆକାଶରେ ଦ୍ରୁତଗତିରେ ଗତିଶୀଳ ହେବାର ଶକ୍ତି, ଏବଂ ହିଂସ୍ର ପଶୁମାନଙ୍କଠାରେ ବିନାଶକ ଶକ୍ତି ରୂପେ ଦେଖାଯାଇଥାଏ । ମଣିଷମାନଙ୍କର ହିଂସ୍ରତାର ଏହା କାରଣ ଅଟେ । ଏହା ମଧ୍ୟ ମାନବିକତାର ଏକ ମଧୁଭଣ୍ଡାର ।

ବି.ଦ୍ର. ସୋମଲତା ପର୍ବତର ଉଚ୍ଚ ଶିଖର ବ୍ୟତୀତ, କୁରୁକ୍ଷେତ୍ରର 'ଶର୍ଯ୍ୟାଣା' ନାମକ ମଣ୍ଡଳରେ, ଏକ ହ୍ରଦ କୂଳରେ ମଧ୍ୟ ଦେଖିବାକୁ ମିଳେ । ଏହା ବ୍ୟତୀତ ଆର୍ଜୀକ ଦେଶର ନଦୀ ତଟରେ ଏହା ପ୍ରଚୁର ପରିମାଣରେ ମିଳେ । 'ଆର୍ଜୀକ' କାଶ୍ମୀର ଅନ୍ତର୍ଗତ ଏକ ସ୍ଥାନ । ଏସବୁ ବେଦକାଳୀନ ନାମ ଅଟେ । ସାମବେଦ ସଂହିତାର ମନ୍ତ୍ର ୧୧୬୩ ଓ ୧୧୬୪ରେ ଏହାର ସୂଚନା ଅଛି ।

# ରସାମୃତ

ବେଦବ୍ରହ୍ମ କରନ୍ତି ଗାୟନ
ବିପୁଳ ପ୍ରଶସ୍ତି, ଦିବ୍ୟ ରସାମୃତ ଗୁଣ ।
ଦିବ୍ୟ କ୍ଷମତାର ତାହା ଅଟେ ଅଧିକାରୀ
ସୃଜନ ମହାଶକ୍ତିକୁ ଥାଏ ତା' ସଂଚରି -
ଦେବଗଣ ମଧ୍ୟେ,
ଏ ସତ୍ୟକୁ ଜାଣିଛନ୍ତି ଅଧ୍ୟାତ୍ମ ବିବୁଧେ ।

ଋଷିଗଣ ଲଭିଥାନ୍ତି ସେ ଅମୃତ ରସୁ -
ତପସିଦ୍ଧ ଋଷିତ୍ୱ ବିଭୂତି,
ମଣ୍ଡିତ ହୁଅନ୍ତି ସିଏ ଦୀପ୍ତ ଦିବ୍ୟଜ୍ଞାନେ
ଦୁର୍ଲଭ ସେ ସାଧନା ଓ ସିଦ୍ଧି ।
ତହୁଁ ମିଳେ ଦିବ୍ୟଭାବ,
ଉତ୍ତରିତ ହୋଇଥାଏ ନବ ଅନୁଭବ ।
ନିଗୂଢ଼ ତତ୍ତ୍ୱର ସେଇ ରହସ୍ୟ ପରଦା
ହୋଇ ଉତ୍ତୋଳିତ ମିଳେ ଜ୍ଞାନାଲୋକ ସଦା ।

କବି ଗଣ ସୋମ ଶକ୍ତି ରସାମୃତ ଲଭିଲେ ଜୀବନେ
ସାରସ୍ୱତ ଶକ୍ତିରୂପେ ସଂଚାରିତ ହୋଇଥାଏ ମନେ,
ଭାବାପ୍ଲୁତ ଶବ୍ଦାୟିତ ହୁଅଇ ଲେଖନୀ,
ଦିଏ ତାକୁ ଶକ୍ତି ସଂଜୀବନୀ ।

ବଳିଷ୍ଠ ହୁଅନ୍ତି ପଶୁ ସୋମଶକ୍ତି ବଳେ
ହିଂସ୍ର ପଶୁଗଣଙ୍କର ହିଂସ୍ରତା ଉଚ୍ଛୁଳେ,
ବିନାଶ ଶକ୍ତିରେ ହୁଏ ଦୁର୍ଦ୍ଧର୍ଷ ଦୁର୍ଦ୍ଦାନ୍ତ,
ମଣିଷ ହିଂସ୍ର ପାଲଟେ ହୋଇ ମଦ ମତ୍ତ ।

ସୋମ ଶକ୍ତି ପରାକ୍ରମେ ତୀବ୍ର ଗତି -
ଲଭେ ବିହଙ୍ଗମ,
ଶୂନ୍ୟଚାରୀ ହୋଇଥାଏ ମନ ପକ୍ଷୀସମ
ନୀଳିମ ଆକାଶେ
ବ୍ୟାପ୍ତ ବିହାୟସେ ।

•

"ଅଗ୍ନିରସ୍ମି ଜନ୍ମନା ଜାତବେଦା
ଘୃତଂ ମେ ଚକ୍ଷୁରମୃତଂ ମ ଆସନ୍ ।
ତ୍ରିଧାତୁରର୍କୋ ରଜସୋ ବିମାନୋଽଜସ୍ରଂ-
ଜ୍ୟୋତିର୍ହବିରସ୍ମି ସର୍ବମ ।"

ସା.ସଂ. । ଆରଣ୍ୟ ପର୍ବ । ଖ୨ । ମନ୍ତ୍ର ୬୧୩

ମୁଁ ଆତ୍ମା, ମୁଁ ମୋର ଆଦ୍ୟ ଉନ୍ମେଷରୁ ହିଁ ଅଗ୍ନିସ୍ୱରୂପ 'ଜାତଦେବ'। ମୁଁ ସର୍ବଜ୍ଞାତା, ମୁଁ ତେଜ ସ୍ୱରୂପ, ଯଜ୍ଞାଲୋକ ମୋର ନେତ୍ର ସ୍ୱରୂପ । ମୋ ମୁଖର ବାଣୀ ଅମରତ୍ୱ ପ୍ରଦାନ କରେ । ମୁଁ ପ୍ରାଣ, ଅପାନ ବ୍ୟାନ ରୂପକ ପ୍ରାଣରେ ପରିବ୍ୟାପ୍ତ ହୋଇ ରହିଛି । ମୁଁ ଶୂନ୍ୟଚାରୀ ବାୟୁ ଅଟେ । ମୁଁ ନିଜେ ହବି ଏବଂ ହବିବାହକ ଅଗ୍ନି ମଧ୍ୟ ।

ବି.ଦ୍ର.: 'ଅଗ୍ରଣୀ' ଶବ୍ଦରୁ 'ଅଗ୍ନି' ଶବ୍ଦର ସୃଷ୍ଟି । ଜ୍ୟୋତିର୍ମୟ ଚେତନ ପ୍ରବାହ ବା 'ଆତ୍ମା' ମଧ୍ୟ ଅଗ୍ନି । ଏହି ତାତ୍ତ୍ୱିକ ଅର୍ଥବୋଧ, କବିତାଟିର ଆଧାର ।

## ଆତ୍ମା

ମୁଁ ଅଟଇ ଆତ୍ମା, ଜାତଦେବ ଅଗ୍ନିର ସ୍ୱରୂପ
ମୁଁ ଆତ୍ମପୁରୁଷ -
ଜ୍ୟୋତିର୍ମୟ ଚେତନ ପ୍ରବାହ,
ଜୀବ ଜଗତର ମୁହିଁ ଜୀବନ ସର୍ବସ୍ୱ ।
ଶରୀର ମଣ୍ଡଳେ ମୁହିଁ ଅଟଇ ଅଗ୍ରଣୀ
ମୋ ବିନା ଶରୀର,
ମୁଠାଏ ଶୂନ୍ୟତା ଖାଲି ବ୍ୟାପ୍ତ ଶୂନ୍ୟତାର ।
ଅଗ୍ନିପରି ସମ୍ଭୂତ ମୁଁ ଅଟେ ଜାତଦେବ
ଅଟେ ତେଜରୂପ ମୁହିଁ ସ୍ୱୟଂଭୁ ସଂଭୂତ,
ଯଜ୍ଞାଗ୍ନି ଆଲୋକ ମୋର ଅଟଇ ନୟନ
ମୁଁ ଅଟଇ ସର୍ବଦ୍ରଷ୍ଟା ସର୍ବଜ୍ଞାତା ପୁଣ ।
'ପ୍ରାଣ' ମୁଁ ଅଟଇ
ପ୍ରାଣ, ଅପାନ, ବ୍ୟାନ ତିନିରୂପ ନେଇ
ପ୍ରାଣମୟ ଅଟେ ଏ ଜଗତ
ସଂଗୋପିତ, ପୁଣି ପରିବ୍ୟାପ୍ତ ।
ମୁଁ ଅଟଇ ଆତ୍ମା, ନିତ୍ୟ ଅବିନାଶୀ ପୁଣି
ଆତ୍ମଧ୍ୱନି ଅନାହତ ବ୍ରହ୍ମନାଦ ବାଣୀ
ଉଦ୍ଧରିତ ନିଖିଳ ଅନ୍ତରେ
ତ୍ରିଭୁବନେ ସେ ପ୍ରବାହ ଚାଲେ ନିରନ୍ତରେ ।
ମୁଁ ଅଟଇ ଶୂନ୍ୟଚାରୀ 'ବାୟୁ'
ଜୀବନ ସଙ୍ଗୀତ ତୋଳେ, ସୂକ୍ଷ୍ମରୂପ 'ଆୟୁ' ।
ନିଖିଳ ଆତ୍ମ ସ୍ୱରୂପ ମୁଁ ଅଟଇ 'ସୂର୍ଯ୍ୟ'
ପୋଷଣ ପ୍ରବାହ ଭରା ଦ୍ୟାବାପୃଥିବୀର
ଜ୍ୟୋତିର ଭଣ୍ଡାର ଅଟେ ବିପୁଳ ଐଶ୍ୱର୍ଯ୍ୟ ।
'ଭାନୁମାନ' ମୁଁ ଅଟେ 'ଏକାକୀ'
ତ୍ରିକାଳର ସାକ୍ଷୀ,
ମୁଁ ଅଟଇ ହବିଃ ପୁଣି ହବ୍ୟବାହ ଅଗ୍ନି
ଆତ୍ମା ରୂପେ ମଣ୍ଡିଛି ମେଦିନୀ ।

•

"ବିଧୁଂ ଦଦ୍ରାଣ ସମନେ ବହୂନାଂ
ଯୁବାନଂ ସନ୍ତଂ ପଲିତୋ ଜଗାର ।
ଦେବସ୍ୟ ପଶ୍ୟ କାବ୍ୟଂ ମହିତ୍ୱାଦ୍ୟା
ମମାର ସ ହ୍ୟଃ ସମାନ ।"

ସା.ସଂ. ।୨୦ଅଧ୍ୟାୟ । ମନ୍ତ୍ର୧୭୮୨

ଜୀବନଚକ୍ର ମଧ୍ୟରେ, ମଣିଷ ବୟସର ବିଭିନ୍ନ ସୋପାନ ଦେଇ ଗତି କରିଥାଏ । ତା'ରି ମଧ୍ୟରେ ଆସେ ତାରୁଣ୍ୟ । ତରୁଣ ଯୁବକ ବହୁ ଦୁରୂହ କର୍ମ ଓ ମହାନ କର୍ତ୍ତବ୍ୟ ସମ୍ପାଦନ କରିବାରେ ସମର୍ଥ ହୋଇଥାଏ । ସେ ଜୀବନ ସଂଗ୍ରାମରେ ବହୁ ପ୍ରତିକୂଳ ପରିସ୍ଥିତିର ସମ୍ମୁଖୀନ ହୁଏ ।

ତା'ପରେ ଆସେ ବାର୍ଦ୍ଧକ୍ୟ । ଦୁର୍ବଳତା ତାକୁ କବଳିତ କରିଥାଏ । ଜରାଗ୍ରସ୍ତ ଜୀବନ, ଜୀବନ ଯାତ୍ରାର ଅନ୍ତିମ ପର୍ଯ୍ୟାୟ । ତା'ପରେ ମନୁଷ୍ୟ ମୃତ୍ୟୁ ବରଣ କରେ ।

ମୃତ୍ୟୁପରେ ପୁଣି ନବୀନ ଜୀବନସମ୍ଭାର ନେଇ ସେ ପୃଥିବୀକୁ ଆସେ । ଜୀବନଚକ୍ରର ଏହି ମହାନ ଲୀଳା ମଧ୍ୟରେ ଦେବାଧିପତି ଇନ୍ଦ୍ରଦେବଙ୍କର ମହତ୍ତ୍ୱ ପ୍ରକଟିତ ହୋଇଥାଏ ।

ଏହି ମନ୍ତ୍ରରେ ପୁନର୍ଜନ୍ମ ପ୍ରକରଣର ସୂଚନା ମିଳେ ।

# ଜୀବନ ଚକ୍ର

ଜନ୍ମଲାଭ କରେ ଶିଶୁ ତୋଳି ନାଦ-
କୁଆଁ...କୁଆଁ...କୁଆଁ,
କହିଦିଏ ସଂସାରକୁ ମୁଁ ଆସିଛି
ନୂଆ...ନୂଆ...ନୂଆ ।
ଜୀବନର ହୁଏ ଦୀପାୟନ
ତେଜୋଦୀପ୍ତ ହୁଏ ସିଏ
ଆସେ ବାଲ୍ୟ, କୈଶୋର, ଯୌବନ ।
ଜୀବନ ସଂଗ୍ରାମେ ଲଢ଼େ ଜନ୍ମଠାରୁ ମରଣ ପର୍ଯ୍ୟନ୍ତ
ମହାନ କର୍ତ୍ତବ୍ୟ କରେ, କର୍ମଯଜ୍ଞ ଚାଲେ ଅବିରତ ।
ଅନୁକୂଳ ପ୍ରତିକୂଳ ପରିସ୍ଥିତି କେତେ
ସମ୍ମୁଖୀନ ହୋଇଥାଏ ଆସୁ ଯାହା ଯେତେ ।
ଦେହ ତା'ର ଶକ୍ତିଶାଳୀ ଦୀପ୍ତିମୟ ମନ
ଉଦ୍ଦାମ ଉତ୍ସାହଭରା ହୃଦୟ ମହାନ୍
ତାରୁଣ୍ୟର ଜୟଗାନ କରି,
ଜୀବନର ଯାତ୍ରାପଥେ ଚାଲେ ଅନୁସରି ।

ତାରୁଣ୍ୟ ବେଦିରେ ଶୁଭେ ବାର୍ଦ୍ଧକ୍ୟର ଘଣ୍ଟ
'ହେ ତରୁଣ ଆସିଲି ମୁଁ' କହି ସେ ଉଚ୍ଚାଟ,
ଏବେ, ଯିବ ଲିଭି ଲିଭି -
ଯୌବନର ଇନ୍ଦ୍ରଧନୁ ଛବି ।
ଜରାଜୀର୍ଣ୍ଣ ହେବ ଏବେ ଏ ଜୀବନ ତରୁ
ଶୁଖିଯିବ ପ୍ରାଣରସ ଜୀବନ ବୃକ୍ଷରୁ,
ପତ୍ର, ପୁଷ୍ପ, ସବୁ ଯିବ ଝଡ଼ି
ପ୍ରାଣବାୟୁ ଯିବ କାହିଁ ଉଡ଼ି ।
ପ୍ରୟାଣ ପୀଠରେ, ହେବ ପୂର୍ଣ୍ଣାହୁତି ଦାନ
ପୁନର୍ଜନ୍ମ ହେବ ପୁଣି ଆସିବ ନବୀନ ।
ଜଗତ ଜୀବନଚକ୍ର ଘୂରୁଛି ଏପରି
ଅବିରାମ ଗତି ତା'ର, ଚାଲିଛି ସତତ
ଚାଲିବ ଅନନ୍ତକାଳ ଚଳଚକ୍ର ପରି ।

•

ଭଦ୍ରଂ କର୍ଣେଭିଃ ଶୃଣୁୟାମ ଦେବା
ଭଦ୍ରଂ ପଶ୍ୟେମାକ୍ଷଭିର୍ଯଜତ୍ରାଃ ।
ସ୍ଥିରୈରଂଗୈସ୍ତୁଷ୍ଟୁବାଂ ସସ୍ତନୂଭି -
ର୍ବ୍ୟଶେମହି ଦେବହିତଂ ଯଦାୟୁଃ ।

ସାମ.ସଂ. । ଅଧ୍ୟାୟ ୨୧ । ମନ୍ତ୍ର ୧୮୭୪

ହେ ସର୍ବ ମଙ୍ଗଳମୟ ଦେବଗଣ । ଆମକୁ ଶୁଭାଶିଷ ଦିଅନ୍ତୁ, ଆମେ ଆମର କର୍ଣ୍ଣ ଦ୍ୱାରା ସର୍ବଦା ମଙ୍ଗଳମୟ ବଚନ ଶୁଣୁ । ଆମର ନୟନ ଯୁଗଳରେ ସତତ କଲ୍ୟାଣ କାରକ ଦୃଶ୍ୟ ଦେଖୁ । ଆପଣ ଆମର ଅଙ୍ଗ ପ୍ରତ୍ୟଙ୍ଗକୁ ପୁଷ୍ଟି ପ୍ରଦାନ କରନ୍ତୁ, ଯାହା ଆପଣଙ୍କର ସ୍ତୁତି ପାଠ ପାଇଁ ସର୍ବଦା ସମର୍ଥ ହୋଇ ରହିବ । ହେ ଦେବଗଣ ! ଆପଣ ଆମକୁ ଦୀର୍ଘାୟୁଯୁକ୍ତ କରନ୍ତୁ ଏବଂ ଦେବ ନିର୍ଦ୍ଧାରିତ ଆୟୁ ନେଇ ଆମେ ତାହାର ସାର୍ଥକ ବିନିଯୋଗ କରୁ । ଏହାହିଁ ଦେବଶକ୍ତି ପାଖରେ ଆମର ପ୍ରାର୍ଥନା ।

# ପ୍ରାର୍ଥନା

ଏ ମଙ୍ଗଳମୟ ବିଶ୍ୱବିଧାନେ
ତୁମେ ଶ୍ରେଷ୍ଠ ଦେବଗଣ
ତୁମ ମହିମାରେ ପ୍ରକାଶିତ ଆମେ,
ଚରାଚର, ତ୍ରିଭୁବନ ।

ତୁମେ ଅଟ ସବୁ ଅଧ୍ୟାତ୍ମ ଊର୍ଜଃର
ମହାନ୍ ବର୍ଷଣ ଧାରା
କରୁଣାର ତୁମେ ଅଟ ପାରାବାର
ଜଗତ ଯାଚନା ପରା -
ପୂର୍ଣ୍ଣ କରିଥାଅ ନିତି,
ତୁମ ପୂଜା ପାଠେ ଛିଡ଼ା ହୋଇଅଛୁ
ଆମେ ସବୁ ହାତପାତି ।

ମଙ୍ଗଳମୟ ବଚନ, ଶ୍ରବଣେ -
ଶୁଣିବାକୁ ମିଳୁ ସଦା,
ଶୁଭଦର୍ଶନ ନୟନକୁ ମିଳୁ
ପୀରତି ସେନେହ ଶ୍ରଦ୍ଧା ।

ଅଙ୍ଗ ଆମର ପୁଷ୍ଟ କରହେ
ତୁଷ୍ଟ କରହେ ମନ,
ତୁମ ଆରାଧନା ପାଠେ ପରିଣତ
ହେଉ ଏ ଜୀବନ ଆମ ।
ଦୀର୍ଘ ଜୀବନ କାମନା କରୁଛୁ
ଜଗତ ମଙ୍ଗଳ ପାଇଁ
ସାର୍ଥକତାରେ ବିନିଯୋଗ କରୁ,
ଆଶିଷ ଦିଅହେ ସାଇଁ ।
ଯାହା ଦେଇଅଛ ଯାହା ଦେଉଅଛ ତାହା,
ଘନ ଅନ୍ଧରେ ଫିଟାଉ ଜୀବନେ ରାହା ।

•

# ଅଥର୍ବ ବେଦ

## ଅଥର୍ବାଋଷି

ଅତୀତ ଭାରତ ଥିଲା ମୁନିଋଷିମୟ
ଭରିଥିଲା ତା ଅନ୍ତରେ ବୈଦିକ ବାଙ୍‌ମୟ,
ଋଷିମନ୍ତ୍ର ଥିଲା ସଦା ତା' ରକ୍ଷା କବଚ
ବିପୁଳ ଜୀବନ ତାର ପ୍ରେରଣାର ଉତ୍ସ ।

ଅଥର୍ବା ନାମରେ ତହିଁ ଥିଲେ ଜଣେ ଋଷି
'ବରୁଣ ଦେବ'ଙ୍କ ପୁତ୍ର ଅଟନ୍ତି ମହର୍ଷି,
'ଅଥର୍ବବେଦ' ଅଟଇ ତାଙ୍କ ମହାଦାନ
ଜୀବନ ଯାତ୍ରା ନିର୍ବାହ ପାଇଁ ସର୍ବୋତ୍ତମ -
ମନ୍ତ୍ର ତହିଁ ହୋଇଛି ବର୍ଣ୍ଣିତ,
କରିବାକୁ ଜୀବନକୁ ପୂର୍ଣ୍ଣ ବିକଶିତ ।

ସର୍ବବିଦ୍ୟ ଥିଲେ ଋଷି, ଥିଲେ ମାର୍ଗ ସ୍ରଷ୍ଟା,
ଥିଲେ ମଧ୍ୟ ଅନାଗତ ଭବିଷ୍ୟତ ଦ୍ରଷ୍ଟା,
ମାନବ ଦେବତା ବନ୍ଧୁ, ଶଲ୍ୟ ଚିକିତ୍ସକ
ଚିକିତ୍ସା ବିଜ୍ଞାନେ ଥିଲେ ନବ ଉଦ୍ଭାବକ
ହୃତ୍‌ପିଣ୍ଡର କରି ଶଲ୍ୟାୟନ
ସେ କରି ପାରନ୍ତି ବକ୍ଷେ ହୃଦୟ ରୋପଣ ।

ମଣିଷର ମୂର୍ଦ୍ଧାଦେଶେ ଶଲ୍ୟ ଉପଚାର
ବିଶାରଦ, ସୂକ୍ଷ୍ମତମ ଶଲ୍ୟ ଚିକିତ୍ସାର ।
ପ୍ରଥମ ଯାଜ୍ଞିକ ସିଏ
ଯଜ୍ଞଧାରା କଲେ ପ୍ରବର୍ତ୍ତନ,
ଯଜ୍ଞକୁଣ୍ଡେ କରିଥିଲେ, ସେ ପ୍ରଥମେ, ଆହୁତି ପ୍ରଦାନ ।

•

# ଅତିଥିସତ୍କାର

- ସର୍ବୋ ବା ଏଷ ଜଗ୍ଧପାପ୍ମା ଯସ୍ୟାନ୍ନମଶ୍ନ ନ୍ତ

ମନ୍ତ୍ର ୨୪୯୦

- ଆପ୍ନୋତୀମଂ ଲୋକମାପ୍ନୋତ୍ୟମୁମ୍ ।

ଅଥର୍ବବେଦ ୧ । ମନ୍ତ୍ର ୨୫୩୭

ଅତିଥି ସତ୍କାର ଆମର ଦେବତା ସହିତ ସମାନ । ଯେଉଁ ଗୃହରେ ସେ ଅନ୍ନଭୋଜନ କରନ୍ତି, ସେ ଗୃହସ୍ଥଙ୍କର ସର୍ବପାପ ହରଣ ହୋଇଯାଏ । ଯେଉଁ ଗୃହସ୍ଥ ଆନନ୍ଦ ଚିତ୍ତରେ ଅତିଥିଙ୍କୁ ଆମନ୍ତ୍ରଣ କରି ତାଙ୍କର ସେବା ଓ ସତ୍କାର କରନ୍ତି, ସେ ସମସ୍ତ ସୌଭାଗ୍ୟର ଅଧିକାରୀ ହୁଅନ୍ତି ।

ଆର୍ଯ୍ୟ ଭାରତରେ
ଅତିଥି ଦେବତା ସମ ପାଉଥିଲେ ପୂଜା
ଅତିନିଷ୍ଠା ଭରେ,
ତା'ଥିଲା ଜୀବନଚର୍ଯ୍ୟା ବୈଦିକ ଯୁଗରେ ।
ଅତିଥି ସତ୍କାର ବ୍ରତ ଯେ ପାଳେ ଜୀବନେ
ଜ୍ୟୋତିର୍ମୟ ଲୋକ ତାଙ୍କୁ ମିଳଇ ମରଣେ
ଶ୍ରଦ୍ଧାଭରେ ଭକ୍ତିଭାବେ ଅତିଥିଙ୍କ ସେବା ଯେ କରନ୍ତି
ଇହଲୋକେ ପରଲୋକେ ମହା ପୁଣ୍ୟ ଫଳ ସେ ଲଭନ୍ତି ।

ଅତିଥି ସତ୍କାରଶୀଳ ଅଟନ୍ତି ଯେ ନର
ଉଷାଦେବୀ ଆଲୋକିତ କରିନ୍ତି ତା'ଙ୍କୁ,
ସୂର୍ଯ୍ୟ ଦେବ କରିଥାନ୍ତି ତେଜୋଦୀପ୍ତ ତାଙ୍କୁ
ସେ ବୁଝି ଅଛନ୍ତି ବୋଲି ସେବା ମହିମାକୁ ।

ଅତିଥି ଆସିବେ ଆଜି ଗୃହକୁ ଆମର
ଶ୍ରଦ୍ଧାରେ ଯେ ଚାହିଁଥାନ୍ତି ପଥ ବାରମ୍ବାର,
ଆସି ପହଞ୍ଚିଲେ ବୋଲି ହୋଇ ପ୍ରମୁଦିତ
କରନ୍ତି ତାଙ୍କରି ସେବା ଉତ୍ତମ ଗୃହସ୍ଥ ।
ଅତିଥି ସତ୍କାର ଅଟେ ଯଜ୍ଞଧାରା ସମ
ମାନବ କର୍ତ୍ତବ୍ୟ ଏହା ଅଟେ ସର୍ବୋତ୍ତମ ।

•

• ଇୟଂ କଲ୍ୟାଣ୍ୟ ୧ଜରା ମର୍ତ୍ତ୍ୟସ୍ୟାମୃତା ଗୃହେ
ଯସ୍ମୈ କୃତା ଶୟେ ସ ଯଣ୍ଟକାର ଜକାର ସଃ ।।

ମନ୍ତ୍ର ୨୯୦୭

• ତ୍ୱଂ ସ୍ତ୍ରୀ ତ୍ୱଂ ପୁମାନସି ତ୍ୱଂ କୁମାର ଉତ ବା କୁମାରୀ
ତ୍ୱଂ ଜୀର୍ଣ୍ଣୋ ଦଣ୍ଡେନ ବଞ୍ଚସି ତ୍ୱଂ ଜାତୋ
ଭବସି ବିଶ୍ୱତୋମୁଖଃ ।

ଅ.ବେ.ସଂ.ଭା୧ । ମନ୍ତ୍ର ୨୯୦୮

ଅନନ୍ତ ଚିତ୍‌ଶକ୍ତିର କ୍ଷୟ ନାହିଁ । ଏହା ଜୀବର ଆତ୍ମଶକ୍ତି ଏବଂ ଅନିର୍ବାଣ । ଏହା ଦିବ୍ୟ କଲ୍ୟାଣକାରୀ ଶକ୍ତି ଏବଂ ମନୁଷ୍ୟର ଶରୀରରେ ବାସ କରେ । ଏହି ଆତ୍ମଶକ୍ତି ସାରା ବିଶ୍ୱରେ ଏକଧାରରେ ସ୍ତ୍ରୀ, ପୁରୁଷ, ଯୁବକ, ଯୁବତୀ ଏବଂ ବୃଦ୍ଧ ରୂପରେ ପ୍ରକଟିତ ହୋଇଥାଏ । ଏହାର ଉପାସନା ପ୍ରତ୍ୟେକ ବ୍ୟକ୍ତିର କାମ୍ୟ ।

# ଚେତନପ୍ରବାହ

ଚିତ୍ ଶକ୍ତି ଚେତନପ୍ରବାହ
ତୁମେ ପ୍ରବାହିତ ଏଇ ବିଶ୍ୱ ଜୀବନରେ -
ଶରୀରେ ଶରୀରେ,
ବିରାଜିତ 'ଆତ୍ମା' ରୂପେ ଏ'ଦେହ ମନ୍ଦିରେ ।

ତୁମେ ତ ଆଲୋକମୟୀ ଅନିର୍ବାଣ ଶିଖା
ତୁମେ ଅଟ ପ୍ରାଣମୟୀ,
ଏ ବିଶ୍ୱର ଜୀବନ ବର୍ତ୍ତିକା ।
ତୁମେ ନାରୀ ତୁମେ ବି ପୁରୁଷ,
ଯୁବକ, ଯୁବତୀ, ତୁମେ ବୃଦ୍ଧ ଆଉ ବୃଦ୍ଧା,
ପ୍ରକଟିତ ବିବିଧ ରୂପରେ,
ଆଦ୍ୟାଶକ୍ତି ନବ୍ ଚେତନାରେ ।

ତୁମେ କେବେ ନିର୍ବାପିତ ହୁଅନି ମରଣେ
ତରଙ୍ଗିତ ସଦା ଊର୍ଦ୍ଧ୍ୱାୟନେ,
ସନାତନ ଶକ୍ତି ତୁମେ,
ବିଦ୍ୟମାନ ସନାତନ କାଳୁ -
ତୁମର ଚେତନ ଊର୍ଜ୍ଜଃ
ଏ' ଜଗତେ, ଜାଗରିତ କେଉଁ ଅବଧିରୁ ।
ଅନନ୍ତ କାଳରୁ ।
ହେ ଚିଦାତ୍ମା ଚିନ୍ମୟ ଚେତନା ।
ଘେନ ଆମ ଭକ୍ତି ନିରାଜନା ।

•

"ପୂର୍ବାପରଂ ଚରତୋ ମାୟୟୈତୌ
ଶିଶୂ କ୍ରୀଡ଼ନ୍ତୌ ପରି ଯାତୋଽର୍ଣ୍ଣବମ୍,
ବିଶ୍ୱାନ୍ୟୋ ଭୁବନା ବିଚଷ୍ଟ ଋତୂଁ ରନ୍ୟୋ
ବିଦଧଜ୍ଜାୟସେ ନବଃ ।"

ଅଥର୍ବ ବେଦ ସଂହିତା । ଭାଗ ୧ । ମନ୍ତ୍ର ୧୯୪୮

ସୂର୍ଯ୍ୟ ଏବଂ ଚନ୍ଦ୍ର, ଦୁଇଟି ବାଳକ ପରି ଆଗପଛ ହୋଇ, ଏକ ଅପରକୁ ଅନୁଧାବନ କରି, ମାୟା ମୋହିତ ମନରେ ସମୁଦ୍ର ପର୍ଯ୍ୟନ୍ତ ସାବଲୀଳ ଗତିରେ ଚାଲିଥାନ୍ତି । ଏହି କ୍ରୀଡ଼ାରତ ଶିଶୁ ଦୁହିଁଙ୍କ ମଧ୍ୟରୁ ସୂର୍ଯ୍ୟ ସମଗ୍ର ଭୁବନକୁ ଆଲୋକ ତଥା ଉତ୍ତାପ ଦାନ କରନ୍ତି । ଚନ୍ଦ୍ର ପ୍ରତିଦିନ ନୂତନ କଳାଯୁକ୍ତହୋଇ ନୂତନ ନୂତନ ରୂପରେ ପ୍ରକାଶିତ ହୁଅନ୍ତି । ସୂର୍ଯ୍ୟଙ୍କଠାରୁ ପୃଥିବୀରେ ପଡୁଥିବା କୀରଣ ବିଭିନ୍ନ କ୍ରାନ୍ତି ବଳୟରେ ଋତୁ ରଚନା କରିଥାଏ, ଏବଂ ଚନ୍ଦ୍ରକଳାର ହ୍ରାସ ବୃଦ୍ଧି ତିଥି ରଚନା କରେ ।

ବି.ଦ୍ର. -"The change in the amount of Sunlight reaching the surface of various latitudes is the primary cause of the seasons."

# ଦୁଇ ଶିଶୁ

ଆକାଶର ଅଙ୍ଗନରେ ଦୁଇଶିଶୁ -
ଚାଲିଥାନ୍ତି ଆଗପଛ ହୋଇ,
ନାମ ତାଙ୍କୁ ପଚାରିଲେ
ହସି ଦେଇ ଚାଲିଯାନ୍ତି କିଛି ସେ ନକହି ।

ଜଣେ ଅତି ତେଜସ୍ୱାନ, ଚାଲେ ଆଗେ ଆଗେ
ଶାନ୍ତ ଶିଶୁ ଚାଲିଥାଏ, କାନ୍ତରୂପ ଶୀତଳ ସ୍ୱଭାବେ,
ଚାଲି ଚାଲି ଦୁହେଁ ଯାଇ ପହଞ୍ଚନ୍ତି
ସମୁଦ୍ର ବେଳାରେ,
ଜଣକ ପଛରେ ଜଣେ ଲୁଚିଯାନ୍ତି -
ଦିଗହଜା ନୀଳ ପଣତରେ ।

ଏଇପରି ନିତିଦିନ ଚାଲେ ଯା' ଆସ
ସମଗ୍ର ଭୁବନ ଜଣେ ଆଲୋକିତ କରି
ଦେଇଥାନ୍ତି ତାକୁ ଜୀବନ୍ୟାସ ।
ଦିନ ପ୍ରଜ୍ଞାପକ ସଦା କରିଥାନ୍ତି
ସେ ଋତୁ ରଚନା,
କିରଣର ଦୀର୍ଘତା ହ୍ରାସରେ
କ୍ରାନ୍ତି ବଳୟରେ ।

ନିତ୍ୟ ନୂତନ କଳାରେ ମଣ୍ଡିତ ଅପର
କଳା ଯୁକ୍ତ ସିଏ 'କଳାକର',
ଜଗତ ଜନର ସିଏ ନବୀନ 'ଚନ୍ଦ୍ରମା'
ଶାନ୍ତି ଶୀତଳତା ଦିଏ ଜ୍ୟୋସ୍ନା ଧବଳିମା ।
ଚନ୍ଦ୍ରକଳା ହ୍ରାସ ବୃଦ୍ଧି କ୍ରିୟା ସଂଘଟନେ
ତିଥି ଚକ୍ର କରେ ଚଳମାନ ।
ଯୁଗେ ଯୁଗେ ସେ ଅଟନ୍ତି ନବୀନ ସୁନ୍ଦର
ତୀର୍ଥ ଭୂମି ପ୍ରୀତି ପ୍ରଣୟର ।
ମହାଶକ୍ତି ମହାତେଜ ପ୍ରଭୁ ଦୀନମଣି
ତାଙ୍କରି ସର୍ଜନା ରୂପ ବହିଛି ମେଦିନ,
ପ୍ରଣମୁଛି ବେନି ଦେବଶିଶୁ ଶ୍ରୀପଦ୍ମରେ
ଉଷା ଉଷସୀର ଏଇ ଉଦୟ ପୀଠରେ ।

•

- ଅଜୋ ହ୍ୟ୧ଗ୍ନେରଜନିଷ୍ଟ ଶୋକାତ୍ ସୋ ଅପଶ୍ୟଜ୍ଜନିତାରମଗ୍ରେ
ତେନ ଦେବା ଦେବତାମଗ୍ର ଆୟାନ୍ ତେନ ରୋହାନ୍ ରୁରୁହୁର୍ମେଧ୍ୟାସଃ ।

ଅଥର୍ବ ବେଦ ସଂହିତା ।ଭା୧ । ମନ୍ତ୍ର ୬୯୩

ଅଗ୍ନି "ଅଜ" ଅଟନ୍ତି, ଏହାର ଅର୍ଥ ଜନ୍ମ ରହିତ । ଦିବ୍ୟ ତେଜରୁ ସେ ଉତ୍ପନ୍ନ ହୋଇଛନ୍ତି । ପ୍ରଥମେ ସେ ତାଙ୍କର ଉତ୍ପନ୍ନ କର୍ତ୍ତାଙ୍କୁ ଦେଖିଲେ । ଏହି ଅଜଙ୍କଠାରୁ ଦେବତାଗଣ ଦେବତ୍ୱ ଲାଭକଲେ । ଋଷିଗଣ ଊର୍ଦ୍ଧ୍ୱଲୋକରେ ପହଞ୍ଚିଲେ ।

- ଅଗ୍ନେର୍ମନ୍ୱେ ପ୍ରଥମସ୍ୟ ପ୍ରଚେତସଃ ପାଞ୍ଚଜନ୍ୟସ୍ୟ ବହୁଧା ଯମିନ୍ଧତେ ।
ବିଶୋବିଶଃ ପ୍ରବିଶିବାଂସମୀମହେ ସ ନୋ ମୁଞ୍ଚତ୍ୱଂହସଃ ।

ଅଥର୍ବ ବେଦ ସଂହିତା । ଭାଗ ୧ । ମନ୍ତ୍ର ୭୭୪

ଇନ୍ଧନ ଦ୍ୱାରା ଅଗ୍ନିଙ୍କୁ ଉଦ୍ଦୀପିତ କରାଯାଏ । ଅଗ୍ନିଦେବ, ପଞ୍ଚଦେବ ଦ୍ୱାରା ଉପାସନୀୟ । ସେ ବିଶ୍ୱର ସମସ୍ତ ଘଟରେ ପ୍ରବେଶ କରିଛନ୍ତି । ଏବଂ ପୃଥିବୀର ସମସ୍ତ ପ୍ରାଣୀ ତାଙ୍କର ଅଧୀନ । ହେ ଅଗ୍ନିଦେବ ! ଆମକୁ ପାପମୁକ୍ତ କରିବା ପାଇଁ ଆମେ ଆପଣଙ୍କୁ ପ୍ରାର୍ଥନା କରୁଛୁ ।

- "ଅଗ୍ନେ ପ୍ରେହି ପ୍ରଥମୋ ଦେବତାନାଂ
ଚକ୍ଷୁର୍ଦେବାନାମୁତ ମାନୁଷାଣାମ୍ ।
ଇୟକ୍ଷମାଣା ଭୃଗୁଭିଃ ସଜୋଷାଃ
ସ୍ୱର୍ଯନ୍ତୁ ଯଜମାନାଃ ସ୍ୱସ୍ତି ।"

ଅଥର୍ବବେଦ, ସଂହିତା । ଭାଗ ୧ । ମନ୍ତ୍ର ୬୯୭

ହେ ଅଗ୍ନିଦେବ ! ଆପଣ ପ୍ରମୁଖ ଦେବ ଅଟନ୍ତି । ଆପଣ ଦେବତା ଓ ମନୁଷ୍ୟମାନଙ୍କର ଚକ୍ଷୁ ସ୍ୱରୂପ ବା ମନ୍ତ୍ରରୂପ । ଆପଣଙ୍କ ସଙ୍ଗତି ଇଚ୍ଛା କରୁଥିବା ଯାଜକଗଣ ଭୃଗୁ ବା ତପସ୍ୱୀମାନଙ୍କର ସାନିଧ୍ୟ ଲାଭକରି, ସ୍ୱର୍ଗ ତଥା କଲ୍ୟାଣ ଲାଭକରନ୍ତୁ । ଯାହାକୁ ସ୍ୱଃ ବା 'ସ୍ୱସ୍ତି' ଲାଭ କୁହାଯାଏ ।

ବି.ଦ୍ର. 'ଅଗ୍ନିଦେବ' କବିତାଟି ଅଗ୍ନିଙ୍କ ଉପରେ ଥିବା ବିଭିନ୍ନ ମନ୍ତ୍ରର ନିର୍ଯ୍ୟାସଧାରା ।
**ପଞ୍ଚଯଜ୍ଞ** : ଦେବଯଜ୍ଞ, ମାନବ ଯଜ୍ଞ, ବ୍ରହ୍ମଯଜ୍ଞ, ପିତୃଯଜ୍ଞ, ଭୂତଯଜ୍ଞ, ପଞ୍ଚଦେବ ।

# ଅଗ୍ନି

ଜନ୍ମ ରହିତ ଅଟ ହେ ଅଗ୍ନିଦେବ
ତେଣୁ କି 'ଅଜ' ନାମ ଅଟଇ ତବ ।
ଦିବ୍ୟ ତେଜରୁ ସମ୍ଭବି ଅଛ ହେ ତୁମେ
ବିଶ୍ୱପ୍ରାଣ ଆଧାର ଏ ମର୍ତ୍ତ୍ୟ ଭୂମେ ।
ରଚିଛ ତୁମେ ଲୟ ବିଲୟ ଖେଳା
ରଚିଲ ଦେବଗଣ ଅମର ଲୀଳା
ହୋଇ ସମ୍ଭବ
ହେ ଅଗ୍ନିଦେବ ।

ଦେବ ମାନବର ଚକ୍ଷୁ ସ୍ୱରୂପ
ଅଟହେ ମନ୍ତ୍ରରୂପ
ସମସ୍ତ ଘଟରେ ପ୍ରବେଶ କରିଛ
ତୁମେ ହେ ଜୀବନ ଦୀପ ।
ମଣିଷ ଜଠରେ ଜଠରାଗ୍ନି ହେ
ସାଗରେ ବାଡ଼ବାନଳ
ବୃକ୍ଷ ଭିତରେ ରହିଛ ଗୋପନେ
ହୋଇ ତୁମେ ଦାବାନଳ ।

ସୃଷ୍ଟିରେ ତୁମେ ଅଗ୍ରଣୀ ବୋଲି
ବହିଛ ଅଗ୍ନି ନାମ
ପଞ୍ଚ ଯଜ୍ଞରେ ଉପାସନୀୟ ହେ
ଅଟ ତୁମେ ଅନୁପମ ।
ଅନ୍ତରିକ୍ଷରେ ବିଦ୍ୟୁତ୍ ତୁମେ
ଦ୍ୟୁଲୋକରେ ଅଟ ସୂର୍ଯ୍ୟ
ଭୂଲୋକରେ ତୁମେ ଅଗ୍ନି ଦେବତା
ଅଟ ହେ ସର୍ବ ପୂଜ୍ୟ ।
ତୁମରି ପୂଜନେ ତପସ୍ୱୀ ଗଣ
ଲଭନ୍ତି ଊର୍ଦ୍ଧ୍ୱଗତି
ସ୍ୱସ୍ତି ବିଭୂତି ଯାଜକ ଲଭନ୍ତି
ପାପ ପାଶୁ ମିଳେ ମୁକ୍ତି ।

ବ୍ରାହ୍ମଣ ଆଉ କ୍ଷତ୍ରିୟ ମଧ୍ୟେ
ଭରିଦିଅ ତେଜଧାରା
ତେଜୀୟାନ୍ ହୋଇ ବୈଶ୍ୟ ଶୂଦ୍ର
ଲଭନ୍ତି ଶକ୍ତି ପରା,
ସମାଜେ ସର୍ବୋଦୟ
ରାଷ୍ଟ୍ରର ହୁଏ ଜୟ ।

ଅପଯଶ ତୁମେ ଲଭିଛ ଜୀବନେ
'କୁମାରୀହର୍ତ୍ତା' ବୋଲି
କୁମାରୀରୁ ସିଏ ବଧୂ ହୋଇଯାଏ
ତୁମ ଚାରିପାଖେ ବୁଲି ।
'ହୁତାଶନ' ନାମେ ସର୍ବଗ୍ରାସ ତୁମେ
କରି ପାର ଜଗତରେ
ଜାଳି ପୋଡ଼ି ସବୁ ଧ୍ୱଂସ କର ହେ ।
ଏ ମହାନ୍ ମହି ତଳେ ।
ତୁମେ ହେ ଅଗ୍ନି, ତୁମେ ଜ୍ୱାଳାମୟ
ଜ୍ୱଳନ ତୁମର ଧର୍ମ
ଭସ୍ମ ମୁଠାରେ ପରିଣତ କର
ସରିଲେ ଜୀବନ କର୍ମ ।
ଅବଶେଷ ଥିବେ ଭସ୍ମ ମୁଠାକ ଖାଲି
ଛାଡ଼ିଯାଅ ତୁମେ କହିବାକୁ କ'ଣ
"ଏ ମର ଜଗତ ବୋଲି " ।

•

## ଉନ୍ନତ କର

**ଉନ୍ମାଦୟତ ମରୁତ ଉଦନ୍ତରିକ୍ଷ ମାଦୟ**
**ଅଗ୍ନ ଉନ୍ମାଦୟା ତ୍ୱମସୌ ମାମନୁ ଶୋଚତୁ ।**

ଅର୍ଥବବେଦ ସଂହିତା । ଭାଗ ୧ । ମନ୍ତ୍ର ୧୭୦୦

ହେ ମରୁତଗଣ ! ତୁମେ ଆମକୁ ଉନ୍ନତ କର । ହେ ଅନ୍ତରିକ୍ଷ, ତୁମେ ଆମକୁ ଉନ୍ନତ କର । ହେ ଅଗ୍ନିଦେବ, ତୁମେ ମଧ୍ୟ ଆମକୁ ଉନ୍ନତ କର, ଏହା ଫଳରେ ଆମେ ଉନ୍ନୀତ ହେଉ । କାମଦେବ ଆମକୁ ଉନ୍ମାଦିତ କରି ନପାରି, ଅନୁଶୋଚନା କରନ୍ତୁ ।

ହେ ମରୁତ ଦେବ ତୁମପରି ମୋତେ
କର ହେ ପ୍ରବହମାନ
ନିର୍ବିକାର କର, ବିସ୍ତାର କର
ଉନ୍ନତ ବେଗବାନ ।
ନ ପାରିବ ମୋତେ ଛୁଇଁ
କନ୍ଦର୍ପ, ବାଣ ବିଦ୍ଧ କରିବା ପାଇଁ ।

ଅନ୍ତରିକ୍ଷ ହେ, ଅନ୍ତର ମୋର
ପ୍ରମତ୍ତ କର ତୁମେ
ଶାନ୍ତ କରହେ କାମାକୁଳ ମନ
ବ୍ୟାପ୍ତ ନୀଳିମ ଧାମେ ।
କାମ କାମନାର ଶିଖା
ଦଗ୍ଧ ନ କରୁ ମୁଗ୍ଧ ମର୍ମଲେଖା ।

ଅଗ୍ନିଦେବ ହେ, ଉନ୍ନତ କର
ଆଗ୍ନେୟ କର ମୋତେ
ଉଦ୍ଦୀପ୍ତ କର ଉନ୍ନତ କର
ଉଠେ ମୁଁ ଊର୍ଦ୍ଧ୍ୱ ପଥେ ।
ଉନ୍ମାଦ କରି ନପାରୁ ମଦନ ବାଣ
କାମ କାମନାରୁ ହେଉ ମୋ ଉତ୍ତରଣ,
ମନସିଜ ଭୋଗୁ ପରାଜୟ ପରାଭବ
ନିଜ ତାପେ ସିଏ ଦଗ୍ଧ ହେଉ ହେ
ଦର୍ପୀ ଅନଙ୍ଗ ଦେବ ।

•

ଦ୍ୱା ସୁପର୍ଣ୍ଣା ସଯୁଜା ସଖାୟା
ସମାନଂ ବୃକ୍ଷଂ ପରି ଷସ୍ୱଜାତେ ।
ତୟୋରନ୍ୟଃ ପିପଳଂ ସ୍ୱାଦ୍ୱତ୍ୟନ -
ଶ୍ନନ୍ନନ୍ୟୋ ଅଭି ଚାକଶୀତି ।

ଅର୍ଥବ ବେଦ. ସଂହିତା । ଭାଗ ୧ । ମନ୍ତ୍ର ୨୬୦୬

ବୃକ୍ଷରେ ମିତ୍ରଭାବାପନ୍ନ ଦୁଇଟି ପକ୍ଷୀ,ଏକ ସହିତ ଅବସ୍ଥାନ କରୁଥିବା ପରି, ଜୀବାତ୍ମା ଏବଂ ପରମାତ୍ମା, ପ୍ରକୃତି ଅଥବା ଶରୀର ରୂପକ ବୃକ୍ଷରେ ଏକତ୍ର ବାସ କରନ୍ତି । ଜୀବାତ୍ମା ରୂପକ ପକ୍ଷୀଟି ବିଶ୍ୱବୃକ୍ଷ କିମ୍ୱା ଶରୀର ରୂପକ ବୃକ୍ଷର ସ୍ୱାଦିଷ୍ଟ ପିପଳ ଫଳ ଭକ୍ଷଣ କରେ । ପରମାତ୍ମା ରୂପକ ଅପର ପକ୍ଷୀଟି କିଛି ନଖାଇ କେବଳ ଦ୍ରଷ୍ଟା ରୂପେ ସବୁ ଦେଖୁଥାଏ ।

# ଦ୍ୱା ସୁପର୍ଣ୍ଣା

ବୃକ୍ଷଟି ବଢ଼ିଥାଏ କେଡ଼େ ଗହଳ
ତା'ଡ଼ାଳେ ବସିଥାନ୍ତି ପକ୍ଷୀ ଯୁଗଳ,
ଜୀବାତ୍ମା, ପରମାତ୍ମା' ସେ ପକ୍ଷୀ ଦୁଇ
ପାଖରେ ବହୁଥାଏ ଜୀବନ ନଈ
ପ୍ରବହମାନ ଜୀବ ଯମୁନା ତୁଲେ
ବୃକ୍ଷଟି ଛିଡ଼ା ହୋଇଥାଏ ତା' କୂଳେ ।

ଯେତେ ଯେ ଯୁବା ବୁଢ଼ା ବାଳୁତ କସି
ବୃନ୍ତରୁ ଝଡ଼ିପଡ଼ି ଯାଆନ୍ତି ଭାସି -
ନିରନ୍ତର 'କରାଳ' ତା' ସ୍ରୋତ ଧାରେ,
ପକ୍ଷୀ ଦୁଇଟି ଦେଖୁଥାନ୍ତି ସେ ଡ଼ାଳେ ।

ଗୋଟିଏ ପକ୍ଷୀ ତହୁଁ ହୁଏ ବିକଳ
ଏ ଦୃଶ୍ୟ ଦେଖି ତା'ର ପ୍ରାଣ ଆକୁଳ,
ଆର ପକ୍ଷୀଟି ଚାହିଁଥାଏ ନିରବେ
ପ୍ରତିକ୍ରିୟା ତାହାର ନଥାଏ ଜବେ ।
ଦୁଃଖେ ନଥାଏ ଦୁଃଖ, ସୁଖରେ ସୁଖ
ସେ ସ୍ଥିର ନିର୍ବିକାର ପ୍ରଶାନ୍ତ ମୁଖ ।

ଜୀବାତ୍ମା ପକ୍ଷୀ ପକ୍ୱ ଫଳକୁ ଭକ୍ଷି
ଆନନ୍ଦିତ ସେ ହୁଏ, ତା' ସ୍ୱାଦୁ ଚାଖି,
ଏ ଡ଼ାଳୁ ସେ ଡ଼ାଳକୁ ସେ ଡ଼େଇଁ ଡ଼େଇଁ
କ୍ଷୁଧା ମେଣ୍ଟାଏ ପକ୍ୱ ଫଳକୁ ଖାଇ ।

ମଉନ ପକ୍ଷୀ ବସିଥାଏ ମଉନେ
ଯଥା ତାପସ ମଗ୍ନ ଅଟେ ଧିଆନେ,
ଅଟଇ ସର୍ବଦ୍ରଷ୍ଟା ସେ 'ପରମାତ୍ମା'
ମାୟା ମୋହିତ ପକ୍ଷୀ ଅଟେ 'ଜୀବାତ୍ମା' ।

•

"ଯଦୁବକ୍ଥାନୃତଂ ଜିହ୍ୱୟା ବୃଜିନଂ ବହୁ
ରାଜ୍ଞସ୍ତ୍ୱା ସତ୍ୟଧର୍ମଣୋ ମୁଞ୍ଚାମି ବରୁଣାଦହମ୍ ।"

ଅଥର୍ବ ବେଦ ସଂହିତା । ଭାଗ ୧ । ମନ୍ତ୍ର ୪୭

ହେ ଯାତନା ପ୍ରପୀଡ଼ିତ ମାନବ ! ତୁମେ ନିଜ ବାଣୀର ଦୁରୁପଯୋଗ କରି, ଅସତ୍ୟ ଓ ପାପ ବଚନ ଉଚ୍ଚାରଣରେ ନିଜର ଗୌରବକୁ ପ୍ରତିହତ କରିଛ । ବରୁଣ ଦେବଙ୍କ ଅନୁଗ୍ରହ ଫଳରେ ମୁଁ ତୁମକୁ ଏହି ଦୁଃଖଦ ସ୍ଥିତିରୁ ମୁକ୍ତ କରୁଛି । ବଚନର ମର୍ଯ୍ୟାଦା ହରାଅ ନାହିଁ, ଏହାକୁ ସର୍ବଦା ରକ୍ଷା କର ।

# ବାଣୀ

ହେ ମାନବ ! ସର୍ବଗୁଣେ ହୋଇ ଅଧିକାରୀ
ବିଶ୍ୱ ସର୍ଜନାର ଶ୍ରେୟପଦ ନେଲ ବରି,
ଲଭିଲ ଦୁର୍ଲଭ ଦାନ ଏ ମହିମଣ୍ଡଳେ
ମହିୟାନ୍ ହେଲ ତୁମେ ବିଶ୍ୱ ଦରବାରେ ।

ତୁମକୁ କରିଲେ ପ୍ରଭୁ ବାଣୀ ବିଭୂଷିତ
ପ୍ରତି ପ୍ରାଣେ ଭରିବାକୁ ବଚନ ଅମୃତ,
ଅସୁମାର ଦୁଃଖ ତାପ କରିବାକୁ ଦୂର
କରୁଣା ବଚନ ଢ଼ାଳି ଉଦାର ମଧୁର ।

ପଦିଏ ଶୀତଳ ଶାନ୍ତ ମଧୁର ବଚନ
ଅମାପ ଯନ୍ତ୍ରଣା କରିପାରେ ଉପଶମ,
ବାଣୀ ବେଣୁ ନାଦ ସୁଧା ସର୍ବ ଦୁଃଖ ହର
ହେ ମାନବ ଅଟ ତୁମେ ବାଣୀର ଭଣ୍ଡାର ।

ଉପଯୋଗ କରିଲନି ସେ ବାଣୀ ବିଭୂତି
ଲିପ୍ତ ହେଲ ପାପ, ମିଥ୍ୟା, ନିତି ରଚିରଚି,
ହରାଇଲ କୋମଳତା କର୍କଶ ବଚନେ
ହଜାଇଲ ମଧୁରତା ତିକ୍ତ ବାକ୍ୟ ବାଣେ ।
ମ୍ଳାନ ହେଲା ଉତ୍ତୁଙ୍ଗ ଗରିମା
ମଣିହରା ଫଣୀ ସମ ହେଲ ପଥ ବଣା ।

ମୁଁ ଯାଜ୍ଞିକ, ଯଜ୍ଞ ପ୍ରିୟ ବରୁଣ ଦେବଙ୍କୁ
ହବ୍ୟାହୁତି କରେ ଦାନ, ମନ ବଚନକୁ –
ପରିଶୁଦ୍ଧ କରିବାକୁ ଆଶିଷ ପ୍ରଦାନେ
ବିପୁଳିତ କରିବାକୁ ସଦ୍‌ଭାବନା ଦାନେ ।
ବାଣୀ ତୁମ କରନ୍ତୁ ମଧୁର
ମଧୁମୟ ହେଉ ତୁମ ବଚନ ଭଣ୍ଡାର ।

- କାଲୋ ଭୂତିମସୃଜତ କାଲେ ତପତି ସୂର୍ଯ୍ୟଃ
  କାଲେ ହ ବିଶ୍ୱା ଭୂତାନି କାଲେ ଚକ୍ଷୁର୍ବିପଶ୍ୟତି ।

- କାଲେ ମନଃ କାଲେ ପ୍ରାଣଃ କାଲେ ନାମ ସମାହିତମ୍
  କାଲେନ ସର୍ବା ନନ୍ଦନ୍ତ୍ୟାଗତେନ ପ୍ରଜା ଇମାଃ ।

ଅ.ସଂ ୨। ମନ୍ତ୍ର ୪୯୫୭, ୪୯୫୮

କାଳରୁ ଏ ସୃଷ୍ଟି ସମ୍ଭୂତ ହୋଇଛି । ସୂର୍ଯ୍ୟ କାଳଦ୍ୱାରା ତାପିତହୋଇ ଏ ବିଶ୍ୱକୁ ଆଲୋକ ଓ ଉତାପ ପ୍ରଦାନ କରନ୍ତି । ସଂସାରର ସମସ୍ତ ପ୍ରାଣୀ କାଳ ପାଖରେ ଆଶ୍ରିତ । କାଳ ପ୍ରଭାବରେ ନେତ୍ର, ଦୃଶ୍ୟମାନ ପ୍ରକୃତିକୁ ଦର୍ଶନ କରେ ।

କାଳ ଭିତରେ ସମସ୍ତ ନାମ, ମନ ଏବଂ ପ୍ରାଣ ସମାହିତ ଅବସ୍ଥାରେ ବିଦ୍ୟମାନ । ଆବଶ୍ୟକ ଅନୁସାରେ ଏହା ପୁଣି ତା' ମଧ୍ୟରୁ ପ୍ରକଟିତ ହୋଇଥାଏ । ଏ ବିଶ୍ୱର ପ୍ରଜାଗଣ, କାଳର ଶୁଭଦୃଷ୍ଟି ଲାଭ କରି, ଆନନ୍ଦରେ ଜୀବନ ଅତିବାହିତ କରନ୍ତି ।

- କାଲେ ତପଃ କାଲେ ଜ୍ୟେଷ୍ଠଂ କାଲେ ବ୍ରହ୍ମ ସମାହିତମ୍
  କାଲୋ ହ ସର୍ବସ୍ୟେଶ୍ୱରୋ ଯଃ ପିତାସୀତ୍ ପ୍ରଜାପତେଃ ।

- ତେନେଷିତଂ ତେନ ଜାତଂ ତଦୁ ତସ୍ମିନ ପ୍ରତିଷ୍ଠିତମ୍
  କାଲୋ ହ ବ୍ରହ୍ମ ଭୂତ୍ୱା ବିଭର୍ତି ପରମେଷ୍ଠିନମ୍ ।

- କାଲେନ ବାତଃ ପବତେ କାଲେନ ପୃଥିବୀ ମହୀ ।
  ଦ୍ୟୌର୍ମହୀ କାଲ ଆହିତା ।

ଅ. ସଂ ୨। ମନ୍ତ୍ର ୪୯୫୯, ୪୯୬୦, ୪୯୬୩

ଦୁର୍ଲଭ ତପଃ ଶକ୍ତି, ଶ୍ରେଷ୍ଠ ମହାନୁଭବତା ଏବଂ ପବିତ୍ର ବ୍ରହ୍ମବିଦ୍ୟା ଏହି କାଳ ଗର୍ଭରେ ସମାହିତ ଅବସ୍ଥାରେ ରହିଛନ୍ତି । କାଳ ବିଶ୍ୱର କର୍ତ୍ତା, ଭର୍ତ୍ତା ଏବଂ ପିତା । ତେଣୁ ତାଙ୍କୁ ସର୍ବେଶ୍ୱର କୁହାଯାଏ । ସମସ୍ତେ କାଳର ଆଶ୍ରିତ । ଏ ସଂସାର କାଳରୁ ଜାତ, ତାହା ଦ୍ୱାରା ପ୍ରେରିତ ଏବଂ ପ୍ରତିଷ୍ଠିତ ମଧ୍ୟ । ବ୍ରହ୍ମଚେତନା କାଳ ମଧ୍ୟରେ ଆବୃତ ହୋଇ ରହିଥାଏ । କାଳ ପ୍ରଜାପତିଙ୍କୁ ଧାରଣ କରିଛି । ବାୟୁଦେବ, କାଳ ପ୍ରଭାବରେ ଗତିଶୀଳ, ବିଶ୍ୱବ୍ରହ୍ମାଣ୍ଡ ଚଳଚଞ୍ଚଳ । ଏପରିକି ଦେବଲୋକ ମଧ୍ୟ କାଳର ଆଶ୍ରୟରେ ଅବସ୍ଥିତ ।

# କାଳ

ଏ' ସୃଷ୍ଟିର ଆଦ୍ୟ ପରିଚିତି
କାଳ ଗର୍ଭୁ ହୋଇଲା ଉତ୍ପତ୍ତି,
ସୂର୍ଯ୍ୟ ଦେବ ହେଲେଉଭା କିରଣ ମଣ୍ଡିତ
ସେ ତେଜ ଆଲୋକ ନେଇ ଅନନ୍ତ କାଳରୁ
ଏ' ବିଶ୍ୱକୁ କଲେ ଆଲୋକିତ ।

ପ୍ରବାହିତ ବାୟୁଦେବ କାଳର ଇଙ୍ଗିତେ
ଗତିଶୀଳ ଏ ପୃଥିବୀ ସେଇ କାଳସ୍ରୋତେ,
ତ୍ରିଭୁବନ ଆଶ୍ରିତ ସେ କୋଳେ,
ସେ ଅଟନ୍ତି 'ସର୍ବେଶ୍ୱର', ହର୍ତ୍ତାକର୍ତ୍ତା
ପିତା ମହିତଲେ ।

ଏ ନିଖିଳ ବିଶ୍ୱ ଚରାଚର
ସର୍ବେ ବଶ ଅଟନ୍ତି କାଳର,
ସର୍ବନାମ, ମନ,ପ୍ରାଣ, ସଂମାହିତ କାଳ କବରରେ
ତପଃଶକ୍ତି, ବ୍ରହ୍ମବିଦ୍ୟା ଜ୍ୟୋତିତ ସେଠାରେ
ପ୍ରକଟିତ ଯଥା ସମୟରେ ।

ଏ ବିଶ୍ୱ ମହିମଣ୍ଡଳ କାଳରୁ ସମ୍ଭୂତ
କାଳ ଦ୍ୱାରା ପ୍ରତିଷ୍ଠିତ, କାଳାନୁପ୍ରେରିତ,
ହରିନିଏ ମହାକାଳ ଭରିଦିଏ ପୁଣି,
ଲୟ ବିଲୟର ପରା ସେ ବ୍ରହ୍ମବିନ୍ଧାଣି ।

ମହାକାଳ ସେ ମହାନାୟକ
ବିଧାତା ରୂପରେ ସିଏ ପାଳକ ପୋଷକ,
ସବୁଠାରେ ବିରାଜିତ, ତ୍ରିଲୋକ ଭିତରେ
ହୁଅନ୍ତି ପତିତ ସର୍ବେ ସେ କାଳଗର୍ଭରେ ।
କାଳଦୃଷ୍ଟି କେ ପାରିବ ଏଡ଼ି ।
ସ୍ନେହ ସୂତ୍ରେ ରଖିଅଛି ଜଗତକୁ ଭିଡ଼ି ।

•

"ଭଦ୍ରମିଚ୍ଛନ୍ତ ଋଷୟଃ ସ୍ୱର୍ବିଦସ୍ତପୋ
ଦୀକ୍ଷା ମୁପନିଷେଦୁରଗ୍ରେ
ତତୋ ରାଷ୍ଟ୍ରଂ ବଳମୋଜଶ୍ଚ ଜାତଂ
ତଦସ୍ମୈ ଦେବା ଉପସଂନମନ୍ତୁ ।"

ଅଥର୍ବ ବେଦ ସଂହିତା । ଭାଗ୨ । ମନ୍ତ୍ର ୪୮୭୩

ସୃଷ୍ଟିର ପ୍ରାରମ୍ଭରୁ ମୁନି ଋଷିମାନେ, ତପଃ ଏବଂ ଦୀକ୍ଷାଦାନ ଆଦି ବିଧି ବିଧାନ ନିଷ୍ଠାର ସହ ପାଳନ କରିବାକୁ, ବ୍ରତନିଷ୍ଠ ହେଲେ । ଶକ୍ତି ଏବଂ ସାମର୍ଥ୍ୟର ସୃଷ୍ଟି ହେଲା । ସେଥିରୁ ଆମ ଭିତରେ ରାଷ୍ଟ୍ରୀୟ ଭାବନା ଉଦ୍ରେକହେଲା । ରାଷ୍ଟ୍ରବଳ ଆମକୁ ପ୍ରତିଷ୍ଠିତ କଲା । ସମାଜର ହେ ଜ୍ଞାନୀ ଗୁଣୀ ବ୍ୟକ୍ତିଗଣ, ରାଷ୍ଟ୍ର ଚେତନାରେ ଉଦ୍‌ବୁଦ୍ଧ ହୋଇ, ଏହାର ସେବା ପାଇଁ ନିଜକୁ ଉତ୍ସର୍ଗ କର ।

# ରାଷ୍ଟ୍ର ଚେତନା

ସୃଷ୍ଟିର ପ୍ରାରମ୍ଭ କାଳୁ ମୁନିଋଷିଗଣ
ଆତ୍ମଜ୍ଞାନୀ ଅଟନ୍ତି ସେ ବିବୁଧ ପ୍ରଜ୍ଞାନ,
ଜଗତ ମଙ୍ଗଳପାଇଁ କରନ୍ତି ସେ ତପଃ
ଅଟନ୍ତି ବିଶ୍ୱର ସଦା ସେ ଶୁଭ ଚିନ୍ତକ ।

ତପଃ ଦୀକ୍ଷାଦାନ ତାଙ୍କ ଜୀବନର ବ୍ରତ
ଅଧ୍ୟାତ୍ମ ବିଭୂତି ଭରା ସଦା ତେଜୋଦୀପ୍ତ,
ଧ୍ୟାନଧାରା ଅତୁଟ ତାଙ୍କର,
ସେ ଅଟନ୍ତି ଶକ୍ତିରୂପ, ଏ ବିଶ୍ୱ ରାଷ୍ଟ୍ରର ।

ସେ ଶକ୍ତିରୁ ଅଭ୍ୟୁଦୟ ରାଷ୍ଟ୍ରୀୟଚେତନା
ସେଥିରୁ ସଂଭୂତ ରାଷ୍ଟ୍ରଶକ୍ତି ବିଭାବନା,
ସାମର୍ଥ୍ୟର ହୁଅଇ ଉତ୍ପତ୍ତି,
କି ମହାନ ଅନୁପମ ଦିବ୍ୟତାର ଶକ୍ତି ।

ହେ ବିଜ୍ଞ ପୁରୁଷ, ଜ୍ଞାନୀ ମାନୀଗଣ ତୁମେ
ରାଷ୍ଟ୍ର ଭାବନାରେ ମନ ରହୁ ଅନୁକ୍ଷଣେ,
ରାଷ୍ଟ୍ର ସେବାବ୍ରତେ ହେଉ ସାର୍ଥକ ଜୀବନ
ଜଗତ ମଙ୍ଗଳଧ୍ୟାୟୀ ହୁଅ ବିଶ୍ୱପ୍ରାଣ
ରାଷ୍ଟ୍ର ଚିନ୍ତନରେ,
ହୁଅ ଉତ୍ସର୍ଗୀତ ତୁମେ ଦେଶାତ୍ମବୋଧରେ ।

ରାଷ୍ଟ୍ରୀୟ ଭାବନା ବୃଦ୍ଧିକରେ ରାଷ୍ଟ୍ରବଳ
ମନହୁଏ ଦୃଢ଼ୀଭୂତ ସକ୍ରିୟ ସଚଳ,
ଦୂରକରେ ସଂକୀର୍ଣ୍ଣତା, କରେ ଉଚ୍ଚମନା
ଉଦ୍‌ବୁଦ୍ଧ କରଇ ମନ ରାଷ୍ଟ୍ରୀୟ ଚେତନା ।
ହେ ସନ୍ତାନ ଗଣ,
ରାଷ୍ଟ୍ର ନିର୍ମାଣରେ କର ଆତ୍ମ ସମର୍ପଣ ।

•

ରାତ୍ରି ମାତରୁଷସେ ନଃ ପରି ଦେହି
ଉଷା ନୋ ଅହ୍ନେ ପରି ଦଦାତ୍ୱହସ୍ତୁଭ୍ୟଂ ବିଭାବରି

ଅଥର୍ବ ବେଦ. ସଂହିତା । ଭାଗ୨ । ମନ୍ତ୍ର ୪୯ ୨୩

ହେ ବିଶ୍ୱଜନନୀ ରାତ୍ରି ! ଏବେ ତୁମ କୋଳରୁ ଆମକୁ ନେଇ, ଉଷା ଦେବୀଙ୍କ କୋଳରେ ଅର୍ପଣ କର । ଉଷା ଦେବୀ ଆମକୁ ନେଇ, ଦିବସର କୋଳରେ ସମର୍ପଣ କରିବେ । ଦିନ ଶେଷରେ ସେ ଆମକୁ ଆଣି ପୁଣି ତୁମ କୋମଳ ଅନ୍ଧକାର କୋଳରେ ଅର୍ପଣ କରି ଦେବେ ।

## ବିଭାବରୀ

ଆଗୋରାତ୍ରି ସ୍ନେହମୟୀ ଜଗତ ଜନନୀ !
ଶିଶୁସମ ଶୋଇଥାଏ, ତୁମ କୋଳେ ଏ ବିଶ୍ୱଅବନି,
ଶାନ୍ତି ନିଦ୍ରା ଲଭେ ସେ ଅପାର
ଆନନ୍ଦରେ ପାହିଯାଏ ଘନ ଅନ୍ଧକାର ।

କହେ ସିଏ ସ୍ନେହଭରେ, "ଉଠ ଉଠ ପିଲେ"
ମାତୃମୟୀ ଉଷାଦେବୀ ଉଭା ଅଗଣାରେ
ତାଙ୍କ ହାତେ ଟେକି ଦେବି ତୁମକୁ ମୁଁ ନେଇ
ଶ୍ରଦ୍ଧାରେ କୋଳେଇ ନେବେ ଉଷା ସ୍ନେହମୟୀ ।
କୋଳାହଳ ହେବ ତାଙ୍କ ପୁର,
ବହୁଅଛି ସୁଲୁସୁଲୁ ବାଆ ସୁଶୀତଳ ।

ମାଖିଦେଲେ ମୁଖେ ସୁଖେ ବାଳସୂର୍ଯ୍ୟ ହସ
ଭରି ଦେଲେ ପ୍ରାଣ ପାତ୍ରେ ସୁଧାମୟ ରସ,
ଉଲ୍ଲସିତ କଲେ ମନ, ହୃଦୟ, ଅନ୍ତର
ଦେଲେ ଉପହାର ଡାଲା ବାସ କୁସୁମର ।
ପ୍ରାଣ ଶକ୍ତି କଲେ ପ୍ରଖରିତ,
ଉଷା ଦେବୀ, ଅରପିଲେ ଏ ବିଶ୍ୱଜଗତ ।

ଆନନ୍ଦେ କୋଳେଇ ନେଲେ ଜ୍ୟୋତିର୍ମୟ ପିତା
ସୂର୍ଯ୍ୟଦେବ, ଶକ୍ତିମୟ ବିଶ୍ୱ ପ୍ରାଣଦାତା,
କୋଳେ ଥାପି ତ୍ରିଭୁବନ ସନ୍ତାନ ତାଙ୍କର
କର୍ମ ପଥେ ଯାତ୍ରା ବାଜି ହେଲେ ଅଗ୍ରସର ।
କର୍ମ ଯଜ୍ଞେ ସର୍ବେ ଗଲେ ମାତି
ଓଁକାର ଝଙ୍କାର ତୋଳି, କର୍ମର ଆହୁତି ।

ଅସ୍ତାଚଳ ଚୂଳେ ଯେବେ ସୂର୍ଯ୍ୟ ଗଲେ ନଇଁ
ଉଷସୀ କୋଳରେ ଦେଲେ ଜଗତକୁ ନେଇ,
ଆନନ୍ଦେ କୋଳେଇ ନେଲେ ଫଗୁଳ ବରଣା
ପରଂବ୍ରହ୍ମ ଆଦିତ୍ୟଙ୍କୁ କଲେ ଉପାସନା ।
ଏକୀଭୂତ ନିଖିଳ ଭୁବନ,
ଆକାଶ ଓ ଅନ୍ତରିକ୍ଷେ ଚାଲେ ସ୍ତବାୟନ ।

ଅନ୍ଧକାର ଶେଯପାରି ବିଭାବରୀ ଆସି
ସନ୍ତାନଗଣଙ୍କୁ ନେଲେ କୋଳରେ ଆଉଁଶି,
ମାଖି ଦେଲେ ସୁଖନିଦ୍ରା ନୟନେ ନୟନେ
ଆନନ୍ଦରେ ମଗ୍ନ ହେଲେ ସର୍ବେ ନିଦ୍ରାୟନେ ।
କର୍ମ କ୍ଳାନ୍ତି ହୋଇଗଲା ଦୂର,
ଭରିଗଲା ପ୍ରାଣଶକ୍ତି ଜୀବନ ସମ୍ଭାର ।

•

ଦିଶାଂ ପ୍ରଜ୍ଞାନାଂ ସ୍ୱରୟନ୍ତମର୍ଚିସା
ସୁପକ୍ଷମାଶୁଂ ପତୟନ୍ତମର୍ଣ୍ଣବେ ।
ସ୍ତବାମ ସୂର୍ଯ୍ୟଂ ଭୁବନସ୍ୟ ଗୋପାଂ
ଯୋ ରଶ୍ମିଭିର୍ଦିଶ ଆଭାତି ସର୍ବାଃ ।

ଅଥର୍ବବେଦ. ସଂହିତା । ଭାଗ ୨ । ମନ୍ତ୍ର ୩୬୬୫

ନିଜ ଦୀପ୍ତି ଦ୍ୱାରା ଦଶ ଦିଗକୁ ଆଲୋକିତ କରୁଥିବା, ବିପୁଳ ରଶ୍ମିଜାଳ ସହିତ ସାଗରରେ ବିଚରଣ କରୁଥିବା, ତ୍ରିଭୁବନର ସଂରକ୍ଷକ, ପ୍ରାଣଦାତା ସେହି ସୂର୍ଯ୍ୟ ଦେବଙ୍କୁ ଆମେ ବିଶ୍ୱର ମଙ୍ଗଳ ପାଇଁ ସ୍ତୁତି କରୁଛୁ ।

## ସୂର୍ଯ୍ୟଦେବ

ଆହେ ସୂର୍ଯ୍ୟ ଦେବ ! ତୁମେ ସର୍ବ ପ୍ରାଣାଧାର
ତୁମେ ଅଟ ପ୍ରାଣଦାତା ସୃଷ୍ଟି ସର୍ଜନାର ।
ଅନନ୍ତ ଅନ୍ତରିକ୍ଷରେ -
ତେଜୋମୟ ! କର ବିଚରଣ,
ତେଜୋଦୀପ୍ତ କରିଥାଅ -
ଆକାଶକୁ କରି ପରିପୂର୍ଣ୍ଣ ।
ପ୍ରଭୁ ! ଦଶଦିଗ କର ଆଲୋକିତ -
ତୁମ ରଶ୍ମିଧାରା ବାହି -
ଏ ଧରାକୁ କର ପୁଲକିତ
ତୁମେ ଦିବାକର
ପରମ ସୁନ୍ଦର ।

ବିଶ୍ୱର ବାରିଧି ବୁକେ ଜ୍ୟୋତିର୍ମୟ କର ବିଚରଣ
ତୁମେ ଧାତା, ବିଧାତା ହେ। ସୃଷ୍ଟିଧାରା କର ଚିରନ୍ତନ,
ଆକାଶର ସ୍ରଷ୍ଟାତୁମେ, ଅନ୍ତରିକ୍ଷ ଆଲୋକ ଭଣ୍ଡାର
ଆଲୋକିତ କର ତୁମେ ତ୍ରିଭୁବନ, ପ୍ରଭୁ ନିରନ୍ତର ।

ତ୍ରିଲୋକର ସ୍ୱାମୀ ଆହେ !
ବ୍ରହ୍ମଣ୍ଡ ଆବୋରି,
ରହିଛି ଆଲୋକ ତୁମ, ତ୍ରିପଥରେ ଭରି,
ଏଡି ନାହିଁ ତିଳେ ବ୍ୟତିକ୍ରମ
ହେ ପ୍ରଭୁ ପରମ ।

ଅଖିଳ ମଣ୍ଡଳାକାର ଆହେ ଦିବାକର
ବ୍ରହ୍ମାଣ୍ଡର ପିତା ତୁମେ ହେ ପ୍ରଭୁ ଭାସ୍କର !
ତୁମ ପଦେ ସଭକ୍ତି ପ୍ରଣତି,
ପ୍ରଭୁ ପ୍ରାଣପତି ।
ଶାସ୍ତ୍ର କହେ ତୁମ ନାମ ଅଟଇ 'ଏକାକୀ'
ସମସ୍ତ ଘଟଣା, ଏକା ଦେଖେ ତୁମ ଆଖି,
ତୁମେ ଅଟ ତ୍ରିକାଳଜ୍ଞ, ତ୍ରିକାଳର ସାକ୍ଷୀ
ବର୍ତ୍ତମାନ, ଭୂତ, ଭବିଷ୍ୟତ,
ଏକାକୀ ଅଟହେ ତୁମେ କାଳଜୟୀ
ସବୁଠାରେ ସଦା ଉପସ୍ଥିତ ।

ସତ୍ୟ ରଶ୍ମିରାଗେ ଊର୍ଦ୍ଧ୍ୱ ଆକାଶ ଜ୍ୟୋତିତ
ଜ୍ଞାନାଲୋକେ ବିଶ୍ୱପ୍ରାଣ ହୁଏ ଆଲୋକିତ
ପ୍ରାଣ ଦ୍ୱାରା ପ୍ରାଣମୟ ଅନନ୍ତ ପ୍ରକୃତି
ଏକାକୀ ତୁମେ ହେ ପ୍ରଭୁ ଅଗତିର ଗତି ।
ଆହେ ପ୍ରାଣପତି ।

•

ଆ ନୋ ଅଗ୍ନେ ସୁମତିଂ ସଂଭଲୋ
ଗମେଦିମାଂ କୁମାରୀଂ ସହ ନୋ ଭଗେନ !
ଜୁଷ୍ଟା ବରେଷୁ ସମନେଷୁ ବଲ୍ଗୁରୋଷଂ
ପତ୍ୟା ସୌଭଗମସ୍ତ୍ୱସ୍ୟୈ ।

ଅଥର୍ବ ବେଦ ଭା ୧ । ମନ୍ତ୍ର ୩୫୩

ହେ ଅଗ୍ନି ଦେବତା ! ଆମର ଏହି ବୁଦ୍ଧିମତୀ କୁମାରୀ କନ୍ୟାକୁ, ସର୍ବଗୁଣ ସମ୍ପନ୍ନ 'ବର'ଟିଏ ମିଳୁ । ଆମର ଏହି କନ୍ୟା ସମସ୍ତଙ୍କର ଆଦରଣୀୟା ଅଟେ । ଉଦାର ବିଚାରବନ୍ତ, ସମ୍ମାନସ୍ପଦ ବ୍ୟକ୍ତିଙ୍କ ଦୃଷ୍ଟିରେ ଅତ୍ୟନ୍ତ ମନୋରମ । ପତି, ପରିବାର ଓ ପରିଜନଙ୍କ ଗହଣରେ ସେ ଜୀବନ ଯାପନ କରିବାର ସୌଭାଗ୍ୟ ଲାଭକରୁ । ।

# ପିତାର ପ୍ରାର୍ଥନା

ମଙ୍ଗଳମୟ ହେ ତୁମେ, ହେ ଅଗ୍ନି ଦେବତା।
ବିଘ୍ନ ବିନାଶକ ତୁମେ ଆଶିଷ ପ୍ରଦାତା,
ହବ୍ୟାହୁତି କରୁଛି ଅର୍ପଣ,
ତୁମର ସନ୍ତୋଷ ସୁଧା କର ମୋତେ ଦାନ ।

ମୋର ଏହି ସୁକୁମାରୀ କୁମାରୀ କନ୍ୟାକୁ
ବୁଦ୍ଧିମତୀ, ଶ୍ରଦ୍ଧାମୟୀ, ପ୍ରାଣ ଚନ୍ଦ୍ରମାକୁ,
ଐଶ୍ୱର୍ଯ୍ୟ ସମ୍ପନ୍ନ ସର୍ବ ଗୁଣାଧାର ବର
ଜୀବନର ସାଥୀ ମିଳୁ ନବୀନ ସୁନ୍ଦର ।

ତୁମ କୃପାବଳେ ହେଉ ପ୍ରିୟ ତା'ର ପତି
ଲଭନ୍ତୁ ସେ ସର୍ବସୁଖ ସଂସାର ବିଭୂତି,
ସ୍ନେହମୟୀ, ସେବାମୟୀ, ଅଟେ ମୋ ଦୁହିତା
ମହୀୟସୀ ମନୋରମା ସେ ଶ୍ରଦ୍ଧା ସରିତା,

ସ୍ୱାମୀ ସହ ଗୁରୁଜନ ପରିବାର ମେଳେ
ଆନନ୍ଦେ ଜୀବନ ବିତୁ ତା' ଗୃହ ସଂସାରେ ।
ସେ ପରମ ଭାଗ୍ୟବତୀ, ହେଉ ସେ ସୁମତି
ତୁମ କୃପାବଳେ ଲଭୁ ଅକ୍ଷୟ କୀରତି ।
ତୁମ ପଦେ ଅଗ୍ନି ଦେବ ଏତିକି ଯାଚନା
ପୂରଣ କର ହେ ପ୍ରଭୁ ! ପିତାର ପ୍ରାର୍ଥନା ।
ତୁମେ ସିଦ୍ଧିଦାତା
ହେ ଅଗ୍ନି ଦେବତା !

•

- ଏଷା ତେ ରାଜନ୍ କନ୍ୟା ବଧୂର୍ନି ଧୂୟତାଂ ଯମ
  ସା ମାତୁର୍ବଧ୍ୟତାଂ ଗୃହେଽଥୋ ଭ୍ରାତୁରଥୋ ପିତୁଃ । ।

ଅର୍ଥବ ବେଦ. ସଂହିତା । ଭାଗ ୧ । ମନ୍ତ୍ର ୬୪

ହେ ଆର୍ଯ୍ୟଶ୍ରେଷ୍ଠ ! ମୁଁ ମୋର ଏ କନ୍ୟାକୁ ଆପଣଙ୍କ ହସ୍ତରେ ଅର୍ପଣ କରୁଛି । ସେ ଆପଣଙ୍କର କୁଳବଧୂ ରୂପେ କୁଳ ମଣ୍ଡନକରୁ । ବଧୂ ବିହିତ ଆଚରଣ କରି ବଧୂଧର୍ମ ପାଳନ କରୁ । ଆପଣଙ୍କୁ ମାତା ପିତାର ମର୍ଯ୍ୟାଦାରେ ମଣ୍ଡିତକରି ପରିବାର ଗହଣରେ ଆନନ୍ଦରେ ଜୀବନ ଯାପନ କରୁ ।

- ଏଷା ତେ କୁଳପା ରାଜନ୍ ତାମୁ ତେ ପରି ଦଦ୍ମସି
  ଜ୍ୟୋକ୍ ପିତୃଷ୍ୱାସାତା ଆ ଶୀର୍ଷ୍ଣଃ ସମୋପ୍ୟାନ୍

- ଅସିତସ୍ୟ ତେ ବ୍ରହ୍ମଣା କଶ୍ୟପସ୍ୟ ଗୟସ୍ୟ ଚ ।
  ଅନ୍ତଃକୋଶମିବ ଜାମୟୋଽପି ନହ୍ୟାମି ତେ ଭଗମ୍ । ।

ଅର୍ଥବବେଦ. ସଂହିତା । ଭାଗ ୧ । ମନ୍ତ୍ର ୬୫,୬୬

ହେ ରାଜନ୍ ! ଏ କନ୍ୟା ଆପଣଙ୍କ କୁଳରକ୍ଷା କରିବା ପାଇଁ, ଆମେ ଆପଣଙ୍କୁ ପ୍ରଦାନ କରୁଛୁ । ସେ ନିରନ୍ତର ଆପଣଙ୍କ କୁଳର ଶ୍ରେଷ୍ଠ ମର୍ଯ୍ୟାଦାବନ୍ଧନ ମଧ୍ୟରେ ରହି ପରିବାରର ଶାନ୍ତି ଓ କଲ୍ୟାଣର ଅଧିକାରିଣୀ ହେଉ ।

ବହୁମୂଲ୍ୟ ଅଳଙ୍କାରକୁ, ପେଡ଼ିରେ ସାଇତି ରଖିଲା ପରି, ଆମେ ତୁମର ସୌଭାଗ୍ୟକୁ, ଅସିତ, ଗୟ ଏବଂ କଶ୍ୟପଋଷିଙ୍କ ମନ୍ତ୍ର ବନ୍ଧନ ମଧ୍ୟରେ ସୁରକ୍ଷିତ କରି ରଖୁଛୁ ।

- ଭଗମସ୍ୟା ବର୍ଚ ଆଦିଷ୍ୟଧି ବୃକ୍ଷାଦିବ ସ୍ରଜମ
  ମହାବୁଧ୍ନ ଇବ ପର୍ବତୋ ଜ୍ୟୋକ୍ ପିତୃଷ୍ୱାସ୍ତାମ୍ ।

ଅର୍ଥବ ବେଦ.ସଂହିତା । ଭାଗ ୧ । ମନ୍ତ୍ର ୬୩

ମନୁଷ୍ୟ ଯେପରି ବୃକ୍ଷାଦିରୁ ପୁଷ୍ପ ଚୟନ କରେ, ସେହିପରି ଆମେ ଏହି କନ୍ୟାର ଶ୍ରୀ ସୌଭାଗ୍ୟ, ଓଜଃ ଓ ତେଜକୁ ଗ୍ରହଣ କରୁଛୁ । ବିଶାଳ ପର୍ବତ ଯେପରି ଏହି ମେଦିନୀ ବକ୍ଷରେ ସ୍ଥିର ରହେ, ସେହିପରି ଏହି କନ୍ୟା, ପିତୃ ଗୃହରେ ଆନନ୍ଦରେ ଯେପରି ଥିଲା , ସେପରି ଆମ ଗୃହରେ ପିତା ମାତା ପରିବାର ଭିତରେ, ସୁରକ୍ଷିତ ଆନନ୍ଦମୟ ଜୀବନ ଯାପନ କରୁ ।

# କନ୍ୟାଦାନ

ଜୀବନର ଏହି ମଧୁ ଉତ୍ସବେ ଆନନ୍ଦେ ମୁହିଁ
ଆର୍ଯ୍ୟ ପ୍ରବର କନ୍ୟାଦାନ ମୁଁ କରୁଛି ଏଇ,
ଗୁରୁ ଗଉରବେ ମୁଗ୍ଧ ମନେ
ସମର୍ପଣ ମୁଁ କରୁଅଛି ମୋ'ର ଜୀବନ ଧନେ,
ଶୁଦ୍ଧ ସବିଧି ମନ୍ତ୍ର ଗାନେ ।

କୁଳ ମଣ୍ଡନ କରୁ ସିଏ ତୁମ କୁଳର ବଧୂ
କର୍ତ୍ତବ୍ୟ କରୁ ବଧୂ ବିଧି ପାଳି ମନଟି ମଧୁ -
କରିଦେଉ, ତାର ବଚନ ସୁଧା
ସବୁରି ହୃଦୟେ ପରଶି ଦେଉ ସେ ସୁରଭି ଶ୍ରଦ୍ଧା,
ମଧୁର ତା'ର ଆଚରଣ ହେଉ ମମତା ବୋଳା
ଗୃହ ଧର୍ମ ସେ ପାଳୁ ତା' ଜୀବନେ ସେ ଶୁଚିଶୀଳା ।

ସଂଯମ ପାଳୁ ତା' ଆଚରଣେ
ନୀତି ନିଷ୍ଠାର ହେଉ ପୂଜାରିଣୀ ଗୃହ ଜୀବନେ,
ଏ' କୁଳ କନ୍ୟା ସେ କୁଳରେ ହେଉ ସେ ବଧୂରାଣୀ
ସାମ୍ରାଜ୍ୟ ତା'ର ସେଇ ପରିବାର ଶାନ୍ତି ଭୂମି
କଲ୍ୟାଣୀ ବଧୂ ହେଉ ସେ ତହିଁ
ସବୁରି ମନକୁ ବାନ୍ଧି ରଖୁ ସେ ହୃଦୟ ଦେଇ,
କୁଳ ରକ୍ଷା ପାଇଁ ସମର୍ପି ଦେଇଛି ଦୁହିତା ମୋର
ବଂଶ ଲତାକୁ ବଢ଼ାଇବ ସିଏ ବୋହି ତା'ଭାର ।

ରଖୁ ସେ କୁଳର ପରମ୍ପରା,
ମର୍ଯ୍ୟାଦା ଆଉ ଆଚାର ବିଚାରେ ପୁଣ୍ୟଧାରା
ଗ୍ରହୀତା ରୂପେ ମୁଁ ଗ୍ରହଣ କରୁଛି ଏ ମହାଦାନ
ଏ' କନ୍ୟା ହେଉ, ଶ୍ରୀମୟୀ ବଧୂ, ମୋ' ଘରେ ପୁଣ ।

କଲ୍ୟାଣମୟୀ, ଶ୍ରଦ୍ଧାମୟୀ,
ମଣ୍ଡନ କରୁ ଆଳୟ ଆମର ସେ ଶୁଭଧ୍ୟାୟୀ ।
ମନ୍ତ୍ରର ଧାରା, ସୌଭାଗ୍ୟ ପରା ଦେଇଛି ଢ଼ାଳି,
କବଚ ସାଜିଛି, ସୁରକ୍ଷିତ ତାକୁ ରଖିବ ବୋଲି
ଏ'ଘର ତା'ର ତିର୍ଥଭୂମି
ଗୃହଧର୍ମ ପାଳି, ବିତିବ ଜୀବନ ସ୍ୱର୍ଗମଣି ।

ଯେନାଗ୍ନିରସ୍ୟା ଭୂମ୍ୟା ହସ୍ତଂ ଜଗ୍ରାହ ଦକ୍ଷିଣମ୍
ତେନ ଗୃହ୍ଣାମି ତେ ହସ୍ତଂ ମା ବ୍ୟଥିଷ୍ଠା
ମୟା ସହ ପ୍ରଜୟା ଚ ଧନେନ ଚ ।

ଅଥର୍ବ ବେଦ. ସଂହିତା । ଭାଗ୨ । ମନ୍ତ୍ର ୩୮୩୯

ଯେଉଁ ମହାନ୍ ପବିତ୍ର ଉଦ୍ଦେଶ୍ୟନେଇ ଅଗ୍ନିଦେବ ଏହି ଭୂମିର ଦକ୍ଷିଣ ହସ୍ତକୁ ଗ୍ରହଣ କଲେ, ସେହି ପବିତ୍ର ଭାବ ନେଇ, ହେ ବଧୂ ! ମୁଁ ତୁମର ପାଣି ଗ୍ରହଣ କରୁଛି । ତୁମେ ନିର୍ବିଘ୍ନରେ ମୋ ସହିତ ଜୀବନ ଅତିବାହିତ କର । ଶ୍ରୀ ସନ୍ତାନ ଓ ସୁଖ ସମୃଦ୍ଧିରେ ଜୀବନ ପରିପୂର୍ଣ୍ଣ ହେଉ ।

ଗୃହ୍ଣାମି ତେ ସୌଭଗତ୍ୱାୟ ହସ୍ତଂ
ମୟା ପତ୍ୟା ଜରଦଷ୍ଟିର୍ଯଥାସଃ
ଭଗୋ ଅର୍ଯମା ସବିତା ପୁରନ୍ଧିର୍ମହ୍ୟଂ
ତ୍ୱା ଦୁର୍ଗାର୍ହପତ୍ୟାୟ ଦେବାଃ ।

ଅଥର୍ବ ବେଦ. ସଂହିତା । ଭାଗ୨ । ମନ୍ତ୍ର ୩୮୪୧

ହେ ବଧୂ ! ସୌଭାଗ୍ୟ ବୃଦ୍ଧି ଲାଗି, ମୁଁ ତୁମର ପାଣି ଗ୍ରହଣକରୁଛି । ମୋତେ ପତିର ସମ୍ମାନ ଦେଇ, ବୃଦ୍ଧାବସ୍ଥା ପର୍ଯ୍ୟନ୍ତ ମୋ' ସାଥିରେ ରହ । ଭଗ, ଅର୍ଯମା, ସବିତା ଓ ପୂଷା ଦେବ, ଗୃହସ୍ଥ ଧର୍ମ ପାଳନ କରିବା ପାଇଁ, ତୁମକୁ ମୋର ପତ୍ନୀ ରୂପେ ପ୍ରଦାନ କରିଛନ୍ତି ।

ବି.ଦ୍ର. : ଋଗ୍ ବେଦ ସଂହିତା ଚତୁର୍ଥଭାଗର ମନ୍ତ୍ର ୯୭୦୨ ସହିତ ଏହାର ସାମଞ୍ଜସ୍ୟ ଅଛି । ଆଉ ମଧ୍ୟ ଏହାର, ସୂର୍ଯ୍ୟ ପୁତ୍ରୀ ସୂର୍ଯ୍ୟାଙ୍କ ବିବାହ ବର୍ଣ୍ଣନାର ମନ୍ତ୍ର ଗୁଡ଼ିକ, ଅଥର୍ବ ବେଦରେ ପ୍ରାୟ ଅନୁସରଣ କରାଯାଇଛି । ବୈଦିକ ଯୁଗରୁ ଆଜି ପର୍ଯ୍ୟନ୍ତ ଲୌକିକ ବିବାହ ପରମ୍ପରାରେ ଏହି ମନ୍ତ୍ରଗୁଡ଼ିକ ମଧ୍ୟ ଅନୁସୃତ ହେଉଛି ।

## ପାଣିଗ୍ରହଣ

ଚିତ୍ତେ ବହି ଯେ ପବିତ୍ର ଭାବ
ପୁଣ୍ୟମୟୀ ଯଜ୍ଞ ଭୂମି ଦକ୍ଷିଣ ହସ୍ତକୁ -
ସସମ୍ମାନେ ଅଗ୍ନିଦେବ କରନ୍ତି ବରଣ,
ଘେନି ସେହିଭାବ,
ଆଗୋ ବଧୂ ! ତବ -
ଦକ୍ଷିଣ ହସ୍ତକୁ ମୁହିଁ କରୁଅଛି ସଶ୍ରଦ୍ଧେ ଗ୍ରହଣ ।
ଦଶ ଦିଗପାଳ, ଅଗ୍ନି, ଦେବଗଣ ସାକ୍ଷୀ
ଆଜିଠାରୁ ତୁମେ ହେଲ -
ଶୁଭଙ୍କରୀ ମୋ ଜୀବନ ସାଥୀ,
ମୁଁ ତୁମର ପ୍ରାଣପ୍ରିୟ ପତି ।

ରଚିବା ଜୀବନ ଯାତ୍ରା ଏକାଠିଯେ ଦୁହେଁ
ଆଦରିବା ସୁଖ ଦୁଃଖ ଆନନ୍ଦେ ନିର୍ଭୟେ,
ପରିବାର ଧର୍ମ କର୍ମ କରିବା ନିର୍ବାହ
ଜୀବନ ଝଂଜାଳ ହେଉ ଯେତେ ବା ଦୁର୍ବହ;
ଅନ୍ତିମ ଅବଧି,
ଅତିକ୍ରମ କରିବା ଗୋ ! ଜୀବନ ବାରିଧି ।
ପଦେ ପଦେ ଦୁଃଖ ଆସୁ
ନିମନ୍ତ୍ରଣ କରିବା ସାଦରେ,
ଅନିବାର୍ଯ୍ୟ ଅଟେ ତାହା ବିଧାତା ବିଧିରେ
କେ ପାରିବ ଏଡ଼ି !
ଦୁଃଖ ଆସେ ନାହିଁ କେବେ
ସୁଖଟିକୁ ଛାଡ଼ି ।

ବେନି ହୃଦ ଦେବାର୍ପିତ ମନ୍ତ୍ରାନୁବନ୍ଧିତ
ଦାମ୍ପତ୍ୟ ଜୀବନ ହେବାପାଇଁ ଆଲୋକିତ,
ଆଗୋ ବଧୂ କଲ୍ୟାଣମୟୀ !
ବରୁଛି ତୁମର ହସ୍ତ କେତେ ସ୍ୱପ୍ନ ନେଇ
ସୁ ସନ୍ତାନ ସୁଖ ସମୃଦ୍ଧିରେ
ଏ ଜୀବନ ପରିପୂର୍ଣ୍ଣ ହେଉ ସବିଧିରେ ।

•

- ଇହୈବ ସ୍ତଂ ମାବି ଯୌଷ୍ଟଂ ବିଶ୍ୱମାୟୁର୍ବ୍ୟ ଶ୍ନୁତମ୍
  କ୍ରୀଡ଼ନ୍ତୌ ପୁତ୍ରୈର୍ନପ୍ତୃଭିର୍ମୋଦମାନୌ ସ୍ୱସ୍ତକୌ ।

ମନ୍ତ୍ର ୩୮ ୧୩

- ଯୁବଂ ଭଗଂ ସଂ ଭରତଂ ସମୃଦ୍ଧମୃତଂ ବଦନ୍ତାବୃତୋଦ୍ୟେଷୁ
  ବ୍ରାହ୍ମଣସ୍ପତେ ପତିମସ୍ୟୈ ରୋଚୟ ଚାରୁ
  ସଂଭଲୋ ବଦତୁ ବାଚମେତାମ୍ ।

ଅଥର୍ବ ବେଦ. ସଂହିତା । ଭାଗ ୨ । ମନ୍ତ୍ର ୩୮ ୨୨

ଉପରୋକ୍ତ ଦୁଇଟି ମନ୍ତ୍ରର ଅର୍ଥ ପ୍ରାୟ ସମାନ । ଏହାର ଅର୍ଥ ହେ ବର ଓ ବଧୂ ! ତୁମେ ଦୁହେଁ ଏକତ୍ର ମିଳିମିଶି ଜୀବନ ଯାପନ କର । ପରସ୍ପରଠାରୁ କୌଣସି ପରିସ୍ଥିତିରେ ବିଚ୍ଛିନ୍ନ ହୁଅନାହିଁ । ଏକ ବିଶେଷ ଜୀବନର ଅଧିକାରୀହୋଇ ଜୀବନ ଅତିବାହିତ କର । ଗୃହସ୍ଥଧର୍ମ ପାଳନ କରି, ପୁତ୍ର ପୌତ୍ରାଦି ସନ୍ତାନଗଣଙ୍କ ଗହଣରେ, ଆମୋଦ ପ୍ରମୋଦରେ ଜୀବନ ବିତାଇ ଦିଅ ।

ହେ ନବ ଦମ୍ପତି ! ସଦ୍ ବ୍ୟବହାର ତୁମ ଜୀବନର ଧ୍ୟେୟ ହେଉ । ସମୃଦ୍ଧି ଓ ସୌଭାଗ୍ୟ ଲାଭପାଇଁ ଉଭୟଙ୍କ ମଧ୍ୟରେ ଉତ୍ତମ ବୁଝାମଣା ଆବଶ୍ୟକ । ଏହା ପାରିବାରିକ ଶାନ୍ତିର ପଥ ସୁରକ୍ଷିତ କରିବ ।

ହେ ବ୍ରହ୍ମଣସ୍ପତେ । ପତ୍ନୀ ଓ ପତି, ଉଭୟଙ୍କ ହୃଦୟରେ, ଉଭୟଙ୍କ ପ୍ରତି ଗଭୀର ଶ୍ରଦ୍ଧାରହୁ । ପତିପତ୍ନୀ ମଧୁର ବଚନରେ ଉଭୟଙ୍କର ମନୋରଞ୍ଜନ କରନ୍ତୁ ।

## ବର ଓ ବଧୂ

**ହେ ବର ବଧୂ !**
ଏ ଗୃହରେ ଦୁହେଁ ଆନନ୍ଦରେ ରୁହ
ବିତରି ହୃଦୟ ମମତା ମଧୁ,
ହେ ବର ବଧୂ !
ପରସ୍ପରଠାରୁ ପୃଥକ ହୁଅନି
ଜୀବନେ କେବେ,
ଶତ ଝଡ଼ ଝଞ୍ଜା ଆସୁବା ଜୀବନେ -
ବିଚଳିତ ତୁମେ ନହୁଅ ଲବେ ।
ଅନ୍ତର ହେଉ ମିଳନ ପୀଠ
ଏଇଠେ ହୋଇଛି ଆଦ୍ୟ ଭେଟ -
ଜୀବନଯାତ୍ରା ରଚିବା ପାଇଁ
ପୃଥକ ହୁଅନି କେବେହେଲେ ତୁମେ
କା'ଠାରୁ କେହି ।
ଗୃହସ୍ଥ ଧର୍ମ ପାଳହେ ବିଧିରେ
ଏ'ଗୃହ ତୁମ -
ମନ୍ଦିର ଅଟେ, ସୁନ୍ଦରତର ପବିତ୍ରତମ ।
ପରିବାର ଆଉ ସନ୍ତାନଗଣ ଗହଣେ ରହି
ଆମୋଦ ପ୍ରମୋଦେ ବିତାଅ ଜୀବନ
ଶାନ୍ତି ପାଇ ।
ସ୍ୱର୍ଗୀୟ ସୁଖ ମିଳିବ ଏଥି
ବିମୁଖ ନହୁଅ କେ' କାହା ପ୍ରତି ।
ହେ ବର ବଧୂ !
ବିତରି ଦିଅ ହେ ମମତା ମଧୁ,
ଶ୍ରଦ୍ଧାରେ ଭରୁ ଅନ୍ତର ବେନି ଶ୍ରଦ୍ଧାଶୀଳ
ମଧୁର ବଚନ ଅମୃତେ ହେଉ ଉଚ୍ଛଳ,
ବୁଝାମଣା ହେଉ ଉତ୍ତମ ସଦା, ମଧୁରତର
ବ୍ୟବହାର ହେଉ ଉଦାର ମଧୁର ଶ୍ରଦ୍ଧାଶୀଳ
ହେ ବରବଧୂ !
ଜୀବନେ ଲଭ ଗୋ ଶାନ୍ତି ମଧୁ ।

•

ଭଗସ୍ତେତୋ ନୟତୁ ହସ୍ତଗୃହ୍ୟାଶ୍ୱିନା
ତ୍ୱା ପ୍ର ବହତାଂ ରଥେନ,
ଗୃହାନ୍ ଗଚ୍ଛ ଗୃହପତ୍ନୀ ଯଥା ସୋ
ବଶିନୀ ତ୍ୱଂ ବିଦଥମା ବଦାସି ।

ଅଥର୍ବ ବେଦ. ସଂହିତା । ଭାଗ୨ । ମନ୍ତ୍ର ୩୮ ୧ ୧

ହେ ସୂର୍ଯ୍ୟତନୟା, ନବବଧୂ ଉଷେ। ଭଗଦେବ ବାଣୀଶ୍ୱର୍ଯ୍ୟ ପ୍ରଦାୟକ ଦେବ, ତୁମର ହାତଧରି ଏଠାରୁ ନେଇ ଯାଆନ୍ତୁ। ଅଶ୍ୱିନୀ କୁମାର ଦେବଦ୍ୱୟ ତୁମକୁ ରଥରେ ବସାଇ ପିତାଙ୍କ ଗୃହରୁ ପତିଙ୍କ ଗୃହକୁ ସବିଧିରେ ନେଇ ଯାଆନ୍ତୁ। ଏହି ଶୁଭ ମୁହୂର୍ତ୍ତରେ ତୁମେ ତୁମ ପତିଙ୍କ ଗୃହକୁ ଗମନକର। ସେଠାରେ ତୁମେ ଗୃହଧର୍ମ ପାଳନ କରିବା ପାଇଁ ଗୃହ କର୍ତ୍ତ୍ରୀର ଆସନ ଗ୍ରହଣ କରିବ। ଗୃହର ସମସ୍ତଙ୍କୁ ସ୍ନେହବନ୍ଧନ ମଧ୍ୟରେ ବଶୀଭୂତକରି ରଖିବ । ମନେରଖ, ସର୍ବଦା ବିବେକସମ୍ମତ କାମକରିବ ଏବଂ ଶାନ୍ତ ମଧୁରବାଣୀ ପ୍ରୟୋଗକରିବ। ଏହା ଫଳରେ ଗୃହଧର୍ମର ମର୍ଯ୍ୟାଦା ସୁରକ୍ଷିତହେବ।

# ନବବଧୂ ଗମନ

ହେ ସୂର୍ଯ୍ୟ ତନୟା ଉଷା ସୌଭାଗ୍ୟଶାଳିନୀ
ଆଜିଠାରୁ ହେଲ ତୁମେ ଚିର ପ୍ରବାସିନୀ,
ଭଗଦେବ ହାତଧରି ନେଇ ଯାନ୍ତୁ -
ବିବାହ ବେଦିରୁ,
ପତି ଗୃହେ କରିବ ଗମନ
ସେ ଗୃହଟି ତୁମ ପାଇଁ ଅଟେ ସ୍ୱର୍ଗସମ ।

ଅଶ୍ୱିନୀ କୁମାର ଦ୍ୱୟ ରଥରେ ବସାଇ
ନେଇଯିବେ ପତି ଗୃହେ 'ବଧୂ' ରୂପେ ତହିଁ,
ଏ ଗୃହର କନ୍ୟାଥିଲ -
ଏବେ ତୁମେ ସେ ଗୃହର ବଧୂ,
ଗମନ କର ଗୋ ତହିଁ ପୂର୍ଣ୍ଣତମା ବିଧୁ ।

ସ୍ୱାମିନୀ ସଂଜ୍ଞାନେ ତୁମେ
ସ୍ୱାମୀ ଗୃହେ ହୁଅ ସମ୍ମାନିତ,
ଚଳାଅ ଗୃହକୁ ନୀତି ଅନୁଶାସନରେ
ସ୍ନେହାନୁବନ୍ଧନେ କରି ସର୍ବେ ପ୍ରମୁଦିତ ।

ବିବେକସମ୍ମତ କାର୍ଯ୍ୟ କର ଗୋ ଜୀବନେ
ବିବେକ ବିହିତ ମଧୁବାଣୀ ଉଚ୍ଚାରଣେ
ବଶୀଭୂତ କର ସବୁମନ,
କରିବ ଗୋ ତାହା ସୁଖ ଶାନ୍ତି ବିତରଣ ।

ଗୃହ ଧର୍ମ ପରମ ପବିତ୍ର
ସେ ଧର୍ମ ପାଳନ ହେଉ ଜୀବନର ବ୍ରତ,
ଆଗୋ ବଧୂ ! ସୌଭାଗ୍ୟଶାଳିନୀ
ପରିବାର ପାଇଁ ତୁମେ ପରମ କଲ୍ୟାଣୀ,
ସ୍ନେହ ଶ୍ରଦ୍ଧା ମନ୍ଦାକିନୀ ।

•

ଇହ ପ୍ରିୟଂ ପ୍ରଜାୟୈ ତେ ସମୃଧ୍ୟତାମସ୍ମିନ୍
ଗୃହେ ଗାର୍ହପତ୍ୟାୟ ଜାଗୃହି ।
ଏନା ପତ୍ୟା ପନ୍ୱଂ ୧ ସଂ ସୃଶସ୍ୱାଥ
ଜିର୍ବିର୍ବିଦଥମା ବଦାସି ।

ଅଥର୍ବବେଦ. ସଂହିତା । ଭାଗ୨ । ମନ୍ତ୍ର ୩୮ ୧ ୨

ହେ ବଧୂ ! ତୁମେ ଏହି ପତିଙ୍କ ଗୃହରେ ପରିବାରଧର୍ମ ପାଳନକରି, ଗାର୍ହପତ୍ୟ ଅଗ୍ନି ସ୍ଥାପନକର । ଏହାରଅର୍ଥ, ଗୃହସ୍ଥଧର୍ମକୁ ନିଷ୍ଠାର ସହିତ ପାଳନ କର । ତୁମେ ସନ୍ତାନସନ୍ତତିଯୁକ୍ତ ହୁଅ । ସ୍ୱାମୀଙ୍କସହିତ ଏକ ପ୍ରାଣ ଓ ଏକମନହୋଇ ବୃଦ୍ଧାବସ୍ଥା ପର୍ଯ୍ୟନ୍ତ ଶାନ୍ତିରେ ଚଳ । ସନ୍ତାନମାନଙ୍କୁ ସଦୁପଦେଶ ଦେଇ ଜୀବନର ମାର୍ଗଦର୍ଶନ କରାଅ ।

# ଶ୍ୱଶୁରାଳୟ

ତୁମେ ପୂର୍ଣ୍ଣିମା ବିଧୁ
ଆଗୋ କଲ୍ୟାଣୀ ବଧୂ !
ଆଜିଠାରୁ ହେଲା ପତିଙ୍କ ଆଳୟ
ତୁମର ପୁଣ୍ୟ ପୀଠ,
ପରିବାର ଧର୍ମ ପାଳଗୋ ସେଠାରେ
ଆଦରି କର୍ମ ପଥ ।
ଧର୍ମ ପାଳନ ପାଇଁ,
ଜାଗ୍ରତ ହୁଅ ନବ ପରିଣୀତା
ନବୀନ ମନ୍ତ୍ର ଗାଇ ।

ଗାର୍ହପତ୍ୟଅଗ୍ନି ସ୍ଥାପନ କରଗୋ
କଲ୍ୟାଣୀ ବଧୂ ବେଶେ,
ଏତ ଗୃହ ଧର୍ମ, ପବିତ୍ର ପରମ
ନିର୍ବାହ ପରିତୋଷେ ।
ସନ୍ତାନବତୀ ହୋଇ,
ପରିବାରଟିକୁ ଚଳାଅ ସୁଖରେ
ଆଗୋ ଶୁଭାଶିଷ ନେଇ ।

ସ୍ୱାମୀଙ୍କ ସହିତ ଏକ ମନପ୍ରାଣେ
ବିତାଅ ଜୀବନକାଳ
ଅନ୍ତିମ ଯାଏ ସେ ଜୀବନ ହେଉ
କର୍ତ୍ତବ୍ୟ କୋଳାହଳ ।
ସନ୍ତାନଗଣ ମଙ୍ଗଳ କାମନାରେ,
ସଦୁପଦେଶରେ ଅନ୍ତର ଭର
ସୁଖଦ ଚିନ୍ତନରେ ।
ଚଳାଅ ପୁଣ୍ୟ ପଥେ,
ଟାଳିବେ ଯେପରି ବାଧା ବନ୍ଧନ
ଆସୁଥିବା ଯାହା ଯେତେ ।

•

ଅକ୍ଷ୍ୟୌ ନୌ ମଧୁସଂକାଶେ ଅନୀଙ୍କ ନୌ ସମଞ୍ଜନମ୍
ଅନ୍ତଃ କୃଣୁଷ୍ୱ ମାଂ ହୃଦି ମନ ଇନ୍ନୌ ସହାସତି ।

ଅଥର୍ବ ବେଦ ସଂହିତା । ଭାଗ୧ । ମନ୍ତ୍ର ୧୮୧୯

ହେ ପତ୍ନି । ଆମ ଦୁହିଁଙ୍କର ନେତ୍ର, ପରସ୍ପର ମଧୁର ଭାବପୂରିତ ହେଉ । ମହାନ୍ ପବିତ୍ରତାର ଅଞ୍ଜନ, ନେତ୍ରରେ ଲେପିତ ହେଉ । ଆମ ଉଭୟଙ୍କ ମନ ଏକ ହୋଇ ସମଭାବର ଅଧିକାରୀ ହେଉ । ଏହାହିଁ ଆମର ସାରାଜୀବନର କାମନା ।

# ପତି ଓ ପତ୍ନୀ

ପତି ପତ୍ନୀ ବେନି
ସଂସାର ରଚନ୍ତୁ ସୁଖେ
ଶ୍ରଦ୍ଧାମୟ ଶୁଭାଶିଷ ଘେନି ।

ପରସ୍ପର ଶ୍ରଦ୍ଧାଭାବ ରହୁ ନିରନ୍ତର
ପୂଣ୍ୟ ପ୍ରେମ ଭାବ ଭରୁ ହୃଦୟ ଅନ୍ତର ।
ମୁଗ୍ଧ ମଧୁଭାବ ଭରୁ ସେ ବେନି ନୟନେ
ଅନ୍ତରେ ଅନ୍ତର ମିଶୁ ଶ୍ରଦ୍ଧା ଆକର୍ଷଣେ ।

ପବିତ୍ରତାର ଅଞ୍ଜନ ହେଉ ନେତ୍ର ରେଖା
ନେତ୍ରରେ ଦୀପିତ ହେଉ ପବିତ୍ରତା ଶିଖା,
ସ୍ନେହ ସୁରଭିତ ନେତ୍ର ହେଉ ଦୁହିଁଙ୍କର
ଚାହାଣିରେ ଫୁଟିଉଠୁ ଶ୍ରଦ୍ଧାର ଅନ୍ତର ।
ନେତ୍ର ବହୁ ହୃଦୟର ଛବି,
ଢୋଳୁ ପ୍ରାଣେ ଶ୍ରଦ୍ଧାଭରା ପ୍ରୀତିର ପୂରବୀ ।

ବେନି ହୃଦ ହୋଇଯାଉ ଗୋଟିଏ ମଣ୍ଡଳ
ସମ ଚିନ୍ତନର ତାହା ହେଉ ଭାବସ୍ଥଳ ।
ପତି ହେଲେ ଧ୍ୱନି, ପତ୍ନୀ ହେବେ ପ୍ରତିଧ୍ୱନି
ସମ୍ମାନ ଦିଅନ୍ତୁ ପତି, ପତ୍ନୀଙ୍କର ବାଣୀ ।
ସେମାନଙ୍କ ଧର୍ମ ହେଉ ଏକ,
ପରସ୍ପର ଅନୁକୂଳ ଭାବର ପ୍ରତୀକ ।

ଗୃହସ୍ଥ ଧର୍ମକୁ ଦୁହେଁ ପାଳନ୍ତୁ ବିଧିରେ
ହେଉ କର୍ମ ସମ୍ପାଦିତ ବିବେକ ବିଚାରେ,
ବେନିଜନ ମନ ହୃଦ, ଅନ୍ତର, ଆବେଗ
ଏକାକାର ହୋଇଯାଉ ବନ୍ଧି ଏକଭାବ ।
ତେବେ ହେବ ସାର୍ଥକ ଜୀବନ,
ସଂସାରର ଦୁଃଖ ତାପେ ହେବନି ମଳିନ ।

•

# ବଧୂଧର୍ମ

**ସମ୍ରାଜ୍ଞେଧି ଶ୍ୱଶୁରେଷୁ ସମ୍ରାଜ୍ଞ୍ୟୁତ ଦେବୃଷୁ**
**ନନାନ୍ଦୁଃ ସମ୍ରାଜ୍ଞ୍ୟେଧି ସମ୍ରାଜ୍ଞ୍ୟୁତ ଶ୍ୱଶ୍ରୁବାଃ ।**

ଅଥର୍ବ ବେଦ. ସଂହିତା । ଭାଗ ୨ । ମନ୍ତ୍ର ୩୮୩୫

ହେ ବଧୂ ! ତୁମେ ପରିବାରର ଶାଶୂ, ଶ୍ୱଶୁର, ଦିଅର, ନଣଦଙ୍କର, ସାମ୍ରାଜ୍ଞୀ ତୁଲ୍ୟ ସମ୍ମାନନୀୟା ଅଟ । ତୁମର ସେବା, ସ୍ନେହ, ଶ୍ରଦ୍ଧା ତଥା ପରିପାଳନ ଦ୍ୱାରା ସେମାନେ ପରିଚାଳିତ ହେବେ । ଏହା ତୁମର ବଧୂ ବିହିତ ଧର୍ମ ଅଟେ ।

ବଧୂ ତୁମେ ସମୃଦ୍ଧି ସନ୍ତକ
ଶାନ୍ତି ସୁଖ ସୌଭାଗ୍ୟ ବର୍ଦ୍ଧକ ।
ପରିବାର ପାଇଁ ତୁମେ ସାମ୍ରାଜ୍ଞୀ ସମାନ
ସମ୍ମାନରେ ସମ୍ମାନିତା ପୁଣ ।
ତୁମେ ଅଟ ଏ ଗୃହର କର୍ତ୍ତ୍ରୀ
ପରିବାର ସଦସ୍ୟଙ୍କ ଅଟ ତୁମେ ଭର୍ତ୍ତ୍ରୀ ।

ସ୍ୱାମୀ, ଶ୍ୱଶୁର, ନଣଦ, ଶାଶୂ ଓ ଦେବର
ସ୍ନେହାନୁବନ୍ଧନେ ତୁମ, ବିମୁଗ୍ଧ ଅନ୍ତର,
ସେବାଶୀଳା, ଶ୍ରଦ୍ଧାଶୀଳା ତୁମେ,
ଶାନ୍ତିର ସଲିଳ ସିଞ୍ଚ ସେଇ ମନୋଭୂମେ ।

ଭକ୍ତି ସ୍ନେହ ଶ୍ରଦ୍ଧା ସେବା ଦେଇ ସେ ହୃଦୟ
ଉଦାର ମଧୁର ଭାବେ କର ତୁମେ ଜୟ,
ଶାନ୍ତି ସ୍ନିଗ୍ଧ ମୁଗ୍ଧ ବ୍ୟବହାରେ,
ଅଜେୟ ନଥାଏ କିଛି, ଏ ବିଶ୍ୱ ସଂସାରେ ।

ବଧୂଧର୍ମ ଅଟେ, ପୁଣ୍ୟ ପରିବାରଧର୍ମ
ସେ ଧର୍ମ ପାଳନେ ସିଦ୍ଧି ଲଭେ ସବୁ କର୍ମ,
ସର୍ବ ମଙ୍ଗଳଦାୟିନୀ -
ଆଗୋ ବଧୂ ! ପୁଣ୍ୟ ପ୍ରବାହିଣୀ ।

•

ଇହେମାବିନ୍ଦ୍ର ସଂ ନୁଦ ଚକ୍ରବାକେବ ଦମ୍ପତୀ
ପ୍ରଜୟୈନୌ ସ୍ୱସ୍ତକୌ ବିଶ୍ୱମାୟୁର୍ବ୍ୟ ଶ୍ନୁତାମ୍ ।

ଅଥର୍ବ ବେଦ ସଂହିତା । ଭାଗ୨ । ମନ୍ତ୍ର ୩୯୧୯

ହେ ଇନ୍ଦ୍ରଦେବ ! ଏହି ନବ ଦମ୍ପତିଙ୍କୁ, ଚକ୍ରବାକ ଚକ୍ରବାକୀ ପରି, ନିଜନିଜ ଭିତରେ ଆନ୍ତରିକ ସ୍ନେହଭାବ ସର୍ବଦା ରଖିବାକୁ ଆପଣ ଆଶୀର୍ବାଦ ଦିଅନ୍ତୁ । ଏମାନେ ଜୀବନରେ ଏକ ଉତ୍ତମ ଶୁଭପ୍ରଦଗୃହ ଲାଭକରି, ସୁସନ୍ତାନଯୁକ୍ତ ହୁଅନ୍ତୁ । ଏମାନେ ଜୀବନରେ ସର୍ବସୁଖର ଅଧିକାରୀହୋଇ ଜୀବନ ଅତିବାହିତ କରନ୍ତୁ ।

ଚକ୍ରବାକୀ ଚାହିଁଛି ବିକଳେ
ପ୍ରତୀକ୍ଷାର ଅନ୍ତ ନାହିଁ, ଅତୃପ୍ତ ଅନ୍ତରେ,
ଚକ୍ରବାକ ଝୁରେ ତା' ସାଥୀରେ ।
ଦାମ୍ପତ୍ୟର ଦୁର୍ଦ୍ଦମ ପିପାସା
ଦୂରକରିବାକୁ ଦୁହେଁ, ଚାହିଁଥାନ୍ତି ଘନରାତ୍ରି ଶୃଙ୍ଗାର ଶଯ୍ୟାରେ
ଶାନ୍ତ କରି ପାରନ୍ତିନି ପ୍ରଖରିତ ସେ କାମ ପିପାସା ।

ଜାୟା ଆଉ ପତି ଏବେ ଏ ନବଦମ୍ପତି
ଚକ୍ରବାକ ଚକ୍ରବାକୀ ପରି, ଦୁହେଁ ତୃଷାତୁର ଅତି,
ଶ୍ରଦ୍ଧାମୟ ପ୍ରୀତିମୟ ପ୍ରତ୍ୟୟ ପ୍ଲାବିତ
ପ୍ରୀତି ପ୍ରେରଣାରେ ପ୍ରାଣ ଅଟେ ଉଲ୍ଲୋଳିତ ।
ସେ ବେନି ଅନ୍ତର ଅଟେ ରସ ଘନ ସିନ୍ଧୁ
ଲଭିବାକୁ ପ୍ରୀତି ବାରି ବିନ୍ଦୁ,
ପ୍ରଭୁ ଇନ୍ଦ୍ର ଦେବ ! ଦିଅ ତବ ଆଶୀର୍ବାଦ
ଶାନ୍ତ ହେଉ ପ୍ରୀତିକାମୀ ବିରହ ବିଚ୍ଛେଦ ।
ସେ ଲଭନ୍ତୁ ଗୃହଟିଏ ସୁଖ ଶାନ୍ତିମୟ
ସୁସନ୍ତାନ ଲଭନ୍ତୁ ସେ, ସମୃଦ୍ଧି ନିଚୟ ।
ଗୃହ ଧର୍ମ କରନ୍ତୁ ପାଳନ,
ସୌଭାଗ୍ୟର ହେଉ ଉଦୟନ
ହେ ବିଶ୍ୱପାଳକ !
ଦାମ୍ପତ୍ୟ ଜୀବନ ତାଙ୍କ ହେଉ ହେ ସାର୍ଥକ ।

•

"ଆପ ଇଦ୍ ବା ଉ ଭେଷଜୀରାପୋ ଅମିବଚାତନୀଃ
ଆପୋ ବିଶ୍ୱସ୍ୟ ଭେଷଜୀସ୍ତାସ୍ତ୍ୱା ମୁଞ୍ଚନ୍ତୁ କ୍ଷେତ୍ରିୟାତ୍ ।"

ଅର୍ଥବ ବେଦ. ସଂହିତା । ଭାଗ ୧ । ମନ୍ତ୍ର ୪୦୬

ଜଳ ସମସ୍ତ ରୋଗର ମହୌଷଧି ତୁଲ୍ୟ । ସ୍ନାନ ପାନ ଇତ୍ୟାଦି ଦ୍ୱାରା ଏହି ଜଳ, ଔଷଧ ରୂପେ ବିଭିନ୍ନ ରୋଗ ଉପଶମ କରି ପାରିଥାଏ । ଗୋଟିଏ ଗୋଟିଏ ଔଷଧ, ଗୋଟିଏ ଗୋଟିଏ ରୋଗକୁ ଦୂର କରୁଥିବାବେଳେ, ଜଳ ପ୍ରାୟ ସମସ୍ତ ରୋଗକୁ ଦୂର କରିପାରେ । ହେ ରୋଗଗ୍ରସ୍ତ ମାନବ ! ଜଳଦ୍ୱାରା ତୁମର ସମସ୍ତ ରୋଗ ଉପଶମ କରିବାକୁ ଚେଷ୍ଟାକର ।

## ଜଳ

ହେ ଜଳ! ତୁମର ନାମ ଅଟଇ 'ଜୀବନ'
ଜୀବନ ଆଧାର ତୁମେ ଅଟ ପ୍ରାଣରସ,
ତୁମେ ସର୍ବମହୌଷଧି ସର୍ବ ରୋଗହର
ବିଶ୍ୱ ଜୀବନ ପ୍ରବାହ ଅଟ ଆଦ୍ୟ ଉତ୍ସ ।

ତୁମେ ଏକା ଦୂର କରିପାର ସର୍ବରୋଗ
ଜଳପାନେ ପଲ୍ଲବିତ ଅଟଇ ଏ ପ୍ରାଣ,
ଦେହ ମନ ପରିଶୁଦ୍ଧ ହୁଏ ସଦା ସ୍ନାନେ
ଶ୍ରାନ୍ତି କ୍ଳାନ୍ତି ଦୂର କରି, କରେ ଶାନ୍ତିଦାନ ।

ତୁମ ସ୍ପର୍ଶେ ଅଗ୍ନିଦାହ ହୁଏ ପ୍ରଶମିତ
ତୃଷା ହରି ପ୍ରାଣେ ମାଖ ଶାନ୍ତି ଶୀତଳତା,
ଜୀବନର ତରୁତଳେ ସଂଚାରିତ ହୋଇ
ପତ୍ରେ ପୁଷ୍ପେ ଭରିଦିଅ ପ୍ରାଣର ବାରତା ।

ପ୍ରାଣବନ୍ତ ଶସ୍ୟ ଶ୍ୟାମ ବିପୁଳ ପୃଥିବୀ
ତୁମର ଅମୃତ ପାନେ ପ୍ରାଣମୟ ଧରା,
ବୈଶାଖର ତାପଦଗ୍ଧ ସନ୍ତାପିତ ପ୍ରାଣେ
ଢାଳିଦିଅ ଶାନ୍ତିମୟ ସୁଧାମୟ ଧାରା ।

ଜଳବିନା ହାହାକାର ଅଟେ ଏ' ଜୀବନ
ମରଣ ମୁହୂର୍ତ୍ତେ ମଧ୍ୟ ଲୋଡ଼ା ଟୋପେ ଜଳ,
ଅପଚୟ କରନାହିଁ ପ୍ରକୃତିର ଦାନ
ଜଳ ହିଁ ଜୀବନ ଖାଲି..ଜଳ ହିଁ ଜୀବନ ।
ସର୍ବପାପ ତାପୁ ଜୀବେ ଦିଅଇ ମୁକତି
ସର୍ଜନାର ମୂଳାଧାର ପ୍ରକୃତିର ଅମୂଲ୍ୟ ସମ୍ପତ୍ତି ।
ଜଳ, ସର୍ବ ଦୁଃଖ ହର,
ଅଟଇ ଜୀବନ ତାହା ବିଶ୍ୱ ଜୀବନର ।

•

ଦେବାନାଂ ପତ୍ନୀରୁଶତୀରବନ୍ତୁ
ନଃ ପ୍ରାବନ୍ତୁ ନସ୍ତୁଜୟେ ବାଜସାତୟେ ।
ଯାଃ ପାର୍ଥିବାସୋ ଯା ଅପାମପି
ବ୍ରତେ ତା ନୋ ଦେବୀଃ ସୁହବାଃ ଶର୍ମ ଯଚ୍ଛନ୍ତୁ ।

ଅଥର୍ବବେଦ. ସଂହିତା । ଭାଗ ୧ । ମନ୍ତ୍ର ୧୮୪୪

ହେ ଦେବପତ୍ନି ! ଆମକୁ ରକ୍ଷା କରିବା ନିମିତ୍ତ ଆପଣମାନେ ଆମ ନିକଟକୁ ସମସ୍ତେ ଆସନ୍ତୁ । ଆମମାନଙ୍କର କଲ୍ୟାଣ କାମନା କରି, ଆମକୁ ଅନ୍ନଦାନ କରନ୍ତୁ । ଯେଉଁ ଦେବିମାନେ ପୃଥିବୀରେ ଜଳ ବୃଷ୍ଟି ପାଇଁ ଅନ୍ତରିକ୍ଷରେ ବାସ କରନ୍ତି, ସେମାନେ ସମସ୍ତେ ଆମକୁ ସୁଖ ପ୍ରଦାନ କରନ୍ତୁ । ଆମେ ତାହାଙ୍କୁ ଆହୁତି ଦାନକରି ଆବାହନ ଜଣାଉଛୁ ।

ବି.ଦ୍ର.: ଇନ୍ଦ୍ରାଣୀ, ବରୁଣାନୀ, ରୋଦସୀ (ଦ୍ୟାବାପୃଥିବୀ), ରାଟ ଦେବୀ, କୁହୁଦେବୀ, ରାକାଦେବୀ, ଦେବପତ୍ନୀ, ସୀନୀବାଲୀ, ଉଷାଦେବୀ, ଏମାନେ ପୃଥିବୀ ପୃଷ୍ଠରେ ଏବଂ ଅନ୍ତରିକ୍ଷରେ ବାସ କରନ୍ତି ।

ସିନୀବାଲୀ -ଦେବଗଣଙ୍କ ଭଉଣୀ

ଉଷାଦେବୀ - ପ୍ରଜାପତିଙ୍କ କନ୍ୟା ।

# ଦେବୀ

ଆଗୋ ! ଦେବପତ୍ନୀ, ଭଗ୍ନୀ, କନ୍ୟାଗଣ !
ଯଜ୍ଞେ ହବ୍ୟାହୁତି ଲଭି, ହୋଇ ପ୍ରମୁଦିତ -
କରିଥାଅ ମଙ୍ଗଳ ବିଧାନ,
ତୁମେ ବିଶ୍ୱପ୍ରାଣ !

ତୁମେ ସବୁ ଅଟ ସଦା
ଶକ୍ତି ଆଉ ସମୃଦ୍ଧିର ବିପୁଳ ଭଣ୍ଡାର,
ଏ' ମର୍ତ୍ତ୍ୟ ବାସିନୀ ତଥା ସ୍ୱର୍ଗ ନିବାସିନୀ
ଆମ ମଧ୍ୟେ କରିଥାଅ ଶକ୍ତିର ସଂଚାର,
ଅସରନ୍ତି ବୃଷ୍ଟିଜଳ ଢ଼ାଳି -
ଶୋଭାମୟୀ କରିଥାଅ ପ୍ରକୃତି ରାଣୀକୁ,
ଅଙ୍ଗେ ଅଙ୍ଗେ ଶ୍ୟାମଶିରୀ ଭରି ।

ଶ୍ରୀ ଦେବୀ, ଇନ୍ଦ୍ରାଣୀ, ଉଷା
ବରୁଣାନୀ ଦେବୀ,
ରୋଦସିନୀ, ରାଟଦେବୀ, କୁହୂରାଜଦେବୀ,
ଦେବଭଗ୍ନୀ ସିନୀବାଳୀ,
ସର୍ବେ ମିଳି ସଦା,
ଏ ବିଶ୍ୱ ବିପୁଳାୟନେ
ତତ୍ପର ସର୍ବଦା ।
ଅନ୍ନଦାତ୍ରୀ ଅନ୍ନପୂର୍ଣ୍ଣା ରୂପେ
ଆବାହନ କରୁଅଛୁ ଏ ବସୁଧା ବୁକେ,
ଶୁଦ୍ଧ ପୂତ ମନ୍ତ୍ର ଉଚ୍ଚାରଣେ
ଯଜ୍ଞ ପୀଠେ ହବ୍ୟାହୁତି ଦାନେ,
ପରମ ତୃପ୍ତିରେ ସିଏ -
ଏ ସନ୍ତାନେ ଦିଅନ୍ତୁ ଆଶିଷ,
ଅନ୍ନ ଜଳ, ସୁଖ ଲଭି,
ଲଭନ୍ତୁ ସେ ସଦା ପରିତୋଷ ।

•

• ପର୍ଯ୍ୟାବର୍ତ୍ତେର୍ଦୁଷ୍ୱପ୍ନ୍ୟାତ୍ ପାପାତ୍ ସ୍ୱପ୍ନ୍ୟାଦଭୂତ୍ୟାଃ
ବ୍ରହ୍ମାହମନ୍ତରଂ କୃଣ୍ୱେ ପରା ସ୍ୱପ୍ନମୁଖାଃ ଶୁଚଃ ।।

ମନ୍ତ୍ର ୧୯୯୬

• ଯତ୍ ସ୍ୱପ୍ନେ ଅନ୍ନମଶ୍ନାମି ନ ପ୍ରାତରଧିଗମ୍ୟତେ
ସର୍ବଂ ତଦସ୍ତୁ ମେ ଶିବଂ ନହି ତଦ୍ ଦୃଶ୍ୟତେ ଦିବା ।

ଅଥର୍ବ ବେଦ ସଂହିତା । ଭାଗ ୧ । ମନ୍ତ୍ର ୧୯୯୭

ହେ ଦୁଃସ୍ୱପ୍ନ ନାଶନ ଦେବତା ! ଆମକୁ ଦୁଃସ୍ୱପ୍ନ ଜନିତ ପାପ ତାପ ଓ ମାନସିକ ଅବସାଦରୁ ରକ୍ଷା କରନ୍ତୁ । ଆମେ ନିଜର ଜ୍ଞାନ ଓ ବିଚାର ବଳରେ ସ୍ୱପ୍ନ ଦୋଷ ଓ ସ୍ୱପ୍ନ ଶୋକକୁ ଦୂର କରି ପାରିବାର ଶକ୍ତି ଦାନ କରନ୍ତୁ ।

ସ୍ୱପ୍ନରେ ଭୋଜନ କରୁଥିବାର ଅନୁଭୂତି, ଜାଗ୍ରତ ହେବାପରେ ଆମ ଭିତରେ ନଥାଏ । ଅନେକ ଦୁଃଖଦ ଓ ସୁଖଦ ସ୍ୱପ୍ନର ଅନୁଭୂତି ଜାଗ୍ରତ ଅବସ୍ଥାରେ ମଉଳି ଯାଏ । ତେବେ ଏହାର ସୂକ୍ଷ୍ମାନୁଭୂତି ମନ ମଧ୍ୟରୁ ଲୁପ୍ତ ହୁଏ ନାହିଁ । ତାହା କିଛି ମାତ୍ରାରେ ମନକୁ ପ୍ରଭାବିତ କରିଥାଏ ।

# ସ୍ୱପ୍ନ

ଏପରି ରାତ୍ରିଗୋଟିଏ ଆସେନି ଜୀବନେ
ଯାହ, ନ କଟଇ ସୁଖ, ଦୁଃଖଦ ସପନେ,
ରାତ୍ରି ଘନ..ସ୍ୱପ୍ନାୟିତ ମନ
ଦିବାଗମେ ହୋଇଯାଏ, ତାହା ସ୍ୱପ୍ନହୀନ ।

ରହିଯାଏ ମନମଧ୍ୟେ ପଦ ଚିହ୍ନ
ସ୍ୱପ୍ନରେ ସ୍ୱପ୍ନରେ,
ଆଉ କେତେ ଲିଭିଯାଏ ବିସ୍ମୃତିର
ଘନ ଅନ୍ଧକାରେ ।
ସ୍ଥୁଳଭାବେ ସ୍ୱପ୍ନର ପ୍ରଭାବ
ପଡ଼େ ନାହିଁ ଜୀବନରେ
କରେନି ସେ ତାହା ଅନୁଭବ ।
ସ୍ୱପ୍ନରେ ମିଳେ ଯେ ସ୍ୱାଦୁ -
ସ୍ୱପ୍ନାନ୍ନ ଭୋଜନେଂ,
ଲିଭିଯାଏ ସେ ଆନନ୍ଦ ପୁଣି ଜାଗରଣେ ।
ସ୍ଥୁଳ ରୂପେ ରହେନି ସେ ସ୍ମୃତି,
ରହିଯାଏ ମନେ କିନ୍ତୁ ସୂକ୍ଷ୍ମ ଅନୁଭୂତି ।

ଦୁଃସ୍ୱପ୍ନ ମନକୁ ସଦା କରଇ ଦହନ
ପାପ, ତାପ, ଅବସାଦେ ଘୋଟି ଥାଏ ମନ
ଅନେକ ଦୁଃଖଦ ସ୍ମୃତି ମନକୁ ଆବୋରି
ଯନ୍ତ୍ରଣାରେ ମନ ସଦା ହେଉଥାଏ ଘାରି ।
କେତେକ ସ୍ୱପ୍ନରେ ଥାଏ ଭବିଷ୍ୟ ସୂଚନା
ମଙ୍ଗଳ ସାଧନ ପାଇଁ ଦିଏ ତା' ପ୍ରେରଣା,
ଭୁଲି ପାରୁନାହିଁ ଆମେ ସୁଖଦ ସ୍ମୃତିକୁ
ସ୍ୱପ୍ନ..ସମ୍ପତ୍ତିକୁ ।
ଦୁଃସ୍ୱପ୍ନର ଦୁଃଖ ତାପ କରିବାକୁ ଦୂର
ହେ ସ୍ୱପ୍ନ ନାଶନ ଦେବ କରୁଛୁ ଜୁହାର ।

•

ସୂର୍ଯୋର୍ମେ ଚକ୍ଷୁର୍ବାତଃ ପ୍ରାଣୋଽନ୍ତରିକ୍ଷମାତ୍ମା
ପୃଥିବୀ ଶରୀରମ୍ ।
ଅସ୍ତୃତୋ ନାମାହମୟମସ୍ମି ସ ଆତ୍ମାନଂ ନି ଦଧେ
ଦ୍ୟାବା ପୃଥିବୀଭ୍ୟାଂ ଗୋପୀଥାୟ ।।

ମନ୍ତ୍ର ୧୦୦୨

ବୃହତା ମନ ଉପ ହ୍ୱୟେ ବାୟୁରିଶ୍ୱନା ପ୍ରାଣାପାନୌ ।
ସୂର୍ଯ୍ୟାଚ୍ଚକ୍ଷୁରନ୍ତରିକ୍ଷାଚ୍ଛ୍ରୋତ୍ରଂ ପୃଥିବ୍ୟାଃ ଶରୀରମ୍ ।
ସରସ୍ୱତ୍ୟା ବାଚମୁପ ହ୍ୱୟାମହେ ମନୋୟୁଜା ।।

ଅଥର୍ବ ବେଦ.ସଂହିତା । ଭାଗ ୧ । ମନ୍ତ୍ର ୧୦୧୧

ଉପରୋକ୍ତ ଦୁଇଟିଯାକ ମନ୍ତ୍ରର ଅନ୍ତର୍ନିହିତ ଅର୍ଥ ପ୍ରାୟ ସମାନ । ସୂର୍ଯ୍ୟଦେବ ଆମର ନେତ୍ର ସ୍ୱରୂପ । ବାୟୁଦେବ ଆମର ପ୍ରାଣ ସ୍ୱରୂପ, ଅନ୍ତରିକ୍ଷ ଦେବ ଏ' ବିଶ୍ୱଜଗତର ଆତ୍ମା, କାରଣ ନିଖିଳ ଜଗତର ଆତ୍ମା ଏଠାରେ ଆଶ୍ରୟ ନିଏ । ଏ' ପୃଥିବୀ ଶରୀର ସ୍ୱରୂପ ଅଟେ, ଏଠାରେ ପ୍ରାଣୀ ବା ଶରୀର ମଣ୍ଡିତ ହୁଏ । ଏମାନେ ସମସ୍ତେ ଚିରନ୍ତନ । ଆମେ ସେମାନଙ୍କର କଲ୍ୟାଣ କାମନା କରୁଛୁ । ଦ୍ୟାବା-ପୃଥିବୀ ଦ୍ୱାରା ସଂରକ୍ଷିତ ହୋଇ ରହିବାକୁ, ଆମେ ଆମ ଆତ୍ମାକୁ ସେମାନଙ୍କ ଆଶ୍ରିତ କରୁଛୁ ।

# ଆବାହନ

ଆମର ଯାଚନା ଘେନ ଆହେ ଦେବଗଣ ।
ହେ ବାୟୁ ଦେବତା । କର ସର୍ବେ ପ୍ରାଣଦାନ,
ହେ ସୂର୍ଯ୍ୟ ଦେବତା ତୁମେ ଜ୍ୟୋତିର ଆଧାର
ନିଖିଳ ନେତ୍ରର ଜ୍ୟୋତି ତୁମେ ଦିବାକର ।

ହେ ଚନ୍ଦ୍ରମା । ତୁମ ପଦେ କରୁଛୁ ପ୍ରାର୍ଥନା
ତୁମ ପରି ମନ ସବୁ କରହେ ସର୍ଜନା,
ଶାନ୍ତି ଶୀତଳତା ତହିଁ ଭରିଦିଅ ପ୍ରଭୁ ।
ଆଲୋକିତ ମନ ହେଉ ତୁମର ପ୍ରତିଭୂ ।
ଦୂର କର ମନର ମ୍ଳାନିମା,
ସେ ମନଟି ହେଉ ଶ୍ରଦ୍ଧା ଜ୍ୟୋତ୍ସ୍ନା ଧବଳିମା ।

ପୃଥିବୀଦେବଙ୍କୁ ଆମେ କରୁ ନିବେଦନ
ସେ କରନ୍ତୁ ସର୍ଜନାର କାୟାକଳ୍ପ ଦାନ,
ସେ ଦିବ୍ୟ ପରଶ ପାଇ ଲଭିବୁ ଶରୀର
ଜୀବନେ ମଣ୍ଡିତ ହେବ ଏ ସୃଷ୍ଟି ସମ୍ଭାର ।

ଅନ୍ତରିକ୍ଷ, ଆମ୍ଭ ଦାନେ କରନ୍ତୁ ମଣ୍ଡିତ
ଜ୍ଞାନର ଆଲୋକ ପିଣ୍ଡେ କରନ୍ତୁ ପିଣ୍ଡିତ -
ଜ୍ଞାନ ଦାତ୍ରୀ ସରସ୍ୱତୀ ବାଣୀ ଦାନ କରି
ବାଣୀମୟ କରନ୍ତୁ ଏ ବିଶ୍ୱରେ ସଂଚରି ।
ବାଣୀ ପୁତ୍ର ହୁଅନ୍ତୁ ମାନବ,
ମଧୁକ୍ଷରା ହେଉ ମୁଖ
ହୃଦେ ଭରି ମହା ଅନୁଭବ ।
ସେମାନଙ୍କ ପଦେ ଆମ୍ଭ କରୁଛୁ ଆଶ୍ରିତ
ପ୍ରାଣ ପ୍ରୟାଣରେ ତାହା ଦ୍ୟାବା-ପୃଥିବୀରେ-
ହେଉ ସଂରକ୍ଷିତ ।
ଆହେ ଦେବଗଣ
ଘେନ ନିବେଦନ ।

•

- ତୁଭ୍ୟଂ ବାତଃ ପବତାଂ ମାତରିଶ୍ୱା ତୁଭ୍ୟଂ ବର୍ଷନ୍ତ୍ୱମୃତାନ୍ୟାପଃ
  ସୂର୍ଯ୍ୟସ୍ତେ ତନ୍ୱେ୩ ଶଂ ତପାତି ତ୍ୱାଂ ମୃତ୍ୟୁର୍ଦୟ ତାଂ ମା ପ୍ର ମେଷ୍ଠାଃ

ଅଥର୍ବବେଦ.ସଂହିତା । ଭାଗ ୧ । ମନ୍ତ୍ର ୨୦୩୫

ଅନ୍ତରିକ୍ଷରେ ଥିବା ବାୟୁ ତୁମ ପାଇଁ ପ୍ରାଣ ଦାୟକ ଓ ଚିତ୍ତ ଉଲ୍ଲାସକ ହେଉ । ଜଳ ଅମୃତ ପରି ଶାନ୍ତି ଓ ତୃପ୍ତିଦାୟକ ହେଉ । ସୂର୍ଯ୍ୟଦେବ, ପ୍ରାଣ ପ୍ରଦାୟକ ଉତ୍ତାପ ଓ ତେଜ ପ୍ରଦାନ କରନ୍ତୁ । ତୁମେ ମୃତ୍ୟୁଦେବ (ଯମ)ଙ୍କ କରୁଣା ଲାଭ କରି, ଦୀର୍ଘ ନିରାମୟ ଜୀବନର ଅଧିକାରୀ ହୁଅ ।

- ମା ତେ ମନସ୍ତତ୍ର ଗାନ୍ମା ତିରୋ ଭୂନ୍ମା ଜୀବେଭ୍ୟଃ ପ୍ର ମଦୋ
  ମାନୁ ଗାଃ ପିତୃନ୍ । ବିଶ୍ୱେ ଦେବା ଅଭି ରକ୍ଷନ୍ତୁ ତ୍ୱେହ ।

ମନ୍ତ୍ର. ୨୦୩୬

ହେ ମନୁଷ୍ୟଗଣ ! ତୁମର ମନ ମୃତ୍ୟୁମୁଖୀ ନହେଉ । ତୁମେ ପିତୃ ପୁରୁଷଙ୍କୁ ସ୍ମରଣ କରି, ତାଙ୍କ ପାଖକୁ ଯିବାକୁ ବ୍ୟାକୁଳ ହୁଅ ନାହିଁ । ଏ ମଧୁମୟ ସଂସାରରେ ବଞ୍ଚି ରହିବା ପାଇଁ, ଅଭିଳାଷ ପୋଷଣ କର । ସମସ୍ତ ଦେବତା ତୁମକୁ ସୁରକ୍ଷା ପ୍ରଦାନ କରନ୍ତୁ ।

ଜୀବେଭ୍ୟସ୍ତ୍ୱା ସମୁଦେ ବାୟୁରିନ୍ଦ୍ରୋ ଧାତା ଦଧାତୁ ସବିତା ତ୍ରାୟମାଣଃ ।
ମା ତ୍ୱା ପ୍ରାଣୋ ବଳଂ ହାସୀଦସୁଂ ତେଽନୁ ହ୍ୱୟାମସି ।

ମନ୍ତ୍ର ୨୦୪୫

ସବିତା ଦେବ, ବାୟୁଦେବ ଏବଂ ଇନ୍ଦ୍ରଦେବ, ଜୀବ ଜଗତର ରକ୍ଷକ ଏବଂ ପ୍ରାଣ ପୋଷକ ଅଟନ୍ତି । ହେ ମନୁଷ୍ୟଗଣ ! ସେମାନେ ତୁମକୁ ରକ୍ଷା କରନ୍ତୁ । ତୁମେ ତୁମର ପ୍ରିୟ ପରିବାର ସହିତ ଏ ପୃଥିବୀରେ ଆନନ୍ଦରେ ରହ । ଆମେ ମନ୍ତ୍ର ବଳରେ ତୁମକୁ ମୃତ୍ୟୁର ଊର୍ଦ୍ଧ୍ୱକୁ ନେଇ ଯାଉଛୁ । ତୁମ ଜୀବନଧାରାକୁ ପ୍ରାଣର ଅନୁକୂଳ କରୁଛୁ । ସେ ତୁମକୁ ତ୍ୟାଗ ନ କରନ୍ତୁ ।

## ମରିବାକୁ କର ନାହିଁ ଇଚ୍ଛା

ମରିବାକୁ କର ନାହିଁ ଇଚ୍ଛା
ସମସ୍ତଙ୍କ ରହିଛି ସଦିଚ୍ଛା ।
ବଞ୍ଚି ରହିବାକୁ ଏଇ ସୁନ୍ଦର ସୃଷ୍ଟିରେ
ଅତି ଆନନ୍ଦରେ.. ।

ମୃତ୍ୟୁମୁଖୀ ମନ ତୁମ
ମୃତ୍ୟୁ କୋଳେ ନହେଉ ବିଲୀନ,
ପିତୃ ପୁରୁଷଙ୍କ ପାଶେ ଯିବ ବୋଲି
ନବଳାଅ ମନ ।
ସେମାନେ ତ ଯାଇଛନ୍ତି ଚାଲି
ତାଙ୍କରି ସ୍ମରଣେ ପ୍ରାଣ ନଦିଅ ଉଜାଡ଼ି ।
ଇଚ୍ଛା କର ବଞ୍ଚିବ ଜୀବନେ
ଜୀବନୁ ମଧୁରତର ନାହିଁ ତ୍ରିଭୁବନେ ।

ବାୟୁଦେବ ତୁମ ପାଇଁ ହୁଅନ୍ତୁ ସୁଖଦ
ସୂର୍ଯ୍ୟଙ୍କର ତେଜାଲୋକ କରୁ ପ୍ରମୁଦିତ,
ଜଳଧାରା ଅମୃତ ସମାନ
କରନ୍ତୁ ଅମୃତମୟ ଦୀର୍ଘାୟୁ ଜୀବନ ।

ସର୍ବ ଦେବଗଣ ରକ୍ଷା କରିବେ ତୁମକୁ
ହାତ ଧରି ଉଠାଇବେ ଦୀପ୍ତିରେ ଊର୍ଦ୍ଧ୍ୱକୁ,
ଅଜ୍ଞତାର ଓ ଅନ୍ଧକାର ହୋଇଯିବ ଦୂର,
ଅଧିକାରୀ ହୁଅ ତୁମେ ଦୀର୍ଘ ଜୀବନର ।
ମୃତ୍ୟୁର ଊର୍ଦ୍ଧ୍ୱକୁ ନେଇଯିବୁ ମନ୍ତ୍ରବଳେ,
ଜୀବନର ଧାରା ବାହି ପ୍ରାଣ ଅନୁକୂଳେ
ଆନନ୍ଦରେ ବିତିବ ଜୀବନ
ଦୁର୍ଲଭ ଜନମ ।
ଜୀବନ ଯଜ୍ଞରେ ଢ଼ାଳ କର୍ତ୍ତବ୍ୟ ଆହୁତି
ସନ୍ତୋଷ ଲଭନ୍ତୁ ସଦା ଜୀବ ଆୟୁ ପତି
ହୁଅନ୍ତୁ ପ୍ରସନ୍ନ,
ବଞ୍ଚିବାକୁ ଅନୁକୂଳ ହେବ ଏ ଜୀବନ ।

•

• ଦୃଷ୍ଟିକେ ଦୃଷ୍ଟବନ୍ଧନ ଉଦମୂଂ ଛିନ୍ଧି ଦୃଷ୍ଟିକେ ।
ଯଥା କୃତଦ୍ୱିଷ୍ଟାସୋଽମୁଷ୍ମୈ ଶେପ୍ୟାବତେ ।।

ମନ୍ତ୍ର ୨୦୧୯

• ଦୃଷ୍ଟାସି ଦୃଷ୍ଟିକା ବିଷା ବଷାତକ୍ୟସି
ପରିବୃକ୍ତା ଯଥାସସ୍ୟୃଷଭସ୍ୟ ବଶେବ ।

ଅଥର୍ବବେଦ.ସଂହିତା । ଭାଗ୧ । ମନ୍ତ୍ର ୨୦୨୦

ମନୁଷ୍ୟ ଜୀବନ ତୃଷ୍ଣାମୟ । ତାର ବହୁତୃଷ୍ଣା ମଧ୍ୟରେ କାମ ତୃଷ୍ଣା ଓ ଧନ ଲାଭ ତୃଷା ଅତ୍ୟନ୍ତ ପ୍ରବଳ । ଏହାର କୁପ୍ରଭାବ ଦ୍ୱାରା ଦାମ୍ପତ୍ୟ ଜୀବନରେ ଝଡ଼ ସୃଷ୍ଟି ହୋଇଥାଏ । ଧନ ଓ କାମ ତୃଷ୍ଣା ଦାମ୍ପତ୍ୟ ପ୍ରୀତି ବନ୍ଧନକୁ ଛିନ୍ନ କରେ ।

ତୃଷ୍ଣା ଲୋଭନୀୟ ଅଟେ । ଏହା ବିଷଲତା ପରି ଜୀବନକୁ ଆବୃତ କରି ଥାଏ । ବୃଷଭର ସାନିଧ୍ୟରୁ ବଞ୍ଚିତ । ଗାଭୀ ଯେପରି ପରିତ୍ୟକ୍ତ ଓ ବାଛୁରୀ ହୀନ ହୋଇଯାଏ, ସେହିପରି ହେ ତୃଷ୍ଣା । ତୁମେ ପରିତ୍ୟକ୍ତ ହୋଇ ରହିବା ପାଇଁ ଯୋଗ୍ୟ । ଏହାର ଅର୍ଥ ମଣିଷ ଭିତରେ ମନୋବିକାର ଏବଂ କାମତୃଷ୍ଣା ସୃଷ୍ଟିହେଲେ ଏହା ଉପରେ ଅଧିକ ଚିନ୍ତନ ଦେଇ ତାକୁ ବିକଶିତ କରନାହିଁ । ଦୁର୍ଭାବନାକୁ ମନରୁ ଆଡ଼େଇ ଦେଲେ ତାହା ଆପେ ଆପେ ମ୍ଳାନ ହୋଇଯାଏ ।

# ତୃଷ୍ଣା

ତୃଷ୍ଣାତୁର ମନବ ଜୀବନ
ତୃଷ୍ଣା ମରିଚିକା ପଥେ -
ଉତ୍କଣ୍ଠାରେ କରିଥାଏ ସେ ଅନୁଧାବନ ।
ଏ ଜୀବନ ତୃଷ୍ଣାର ଦଉଡ଼
କ୍ଷତାକ୍ତ ହୋଇବି, ତାହା ଲାଭ ଲୋଭ ପାଇଁ,
ଶାନ୍ତ କେବେ ନହୁଏ ଅନ୍ତର ।

ଧନ ତୃଷ୍ଣା, କାମତୃଷ୍ଣା
ମନଭୂମି ରଖଇ ଆବୋରି,
ଈର୍ଷା, ଦ୍ୱେଷ, ଅହଂକାର, ତାର ସହଚରୀ
ସେଥିରେ ସେ ଲଭଇ ଆନନ୍ଦ
ହେଉ ବା ନହେଉ ତା'ର କାମନା ପୂରିତ ।

ଉଜାଡ଼ି ଦିଅଇ ଏହା ଶାନ୍ତିମୟ
ସୁଖର ସଂସାର,
ଦାମ୍ପତ୍ୟ ଜୀବନ ପୁଣ୍ୟ ହୁଏ ଛାରଖାର,
ତୁଟିଯାଏ ପ୍ରଣୟ ବନ୍ଧନ
କାମ କାମନା ଜର୍ଜର କଳୁଷିତ ମନ ।

ମନେ ତୃଷ୍ଣା ସଦା -
ଜୀବନ ବୃକ୍ଷରେ ଲୋଃଟେ ଯଥା ବିଷଲତା ।
ବିଷାକ୍ତ ପ୍ରବାହ ତା'ର -
ପ୍ରାଣେ ପ୍ରାଣେ ହୁଏ ସଂଚାରିତ,
କରିଦିଏ ଜୀବନକୁ ଅଚିରେ ବିଷାକ୍ତ ।
ତୃଷ୍ଣା ମରିଚିକା ଅଟେ ଅତି ଲୋଭନୀୟ
ତାହା କେବେ ତୃଷାତୁରେ ଦେବକି ପାନୀୟ ।
ପରିତ୍ୟକ୍ତ ହେବା ପାଇଁ ଏ ଭାବନା ଯୋଗ୍ୟ -
ବିକାରଭାବକୁ, କରନାହିଁ ଭାବଭୋଗ୍ୟ
ତୁଷ୍ଟରହ ନିଜର ସ୍ଥିତିରେ,
ପାଗଳ ହୁଅନି ଧନ, କାମ, ଲାଳସାରେ ।

•

"ତବ ଦ୍ୟୌରିନ୍ଦ୍ର ପୌଂସ୍ୟଂ ପୃଥିବୀ ବର୍ଦ୍ଧତି ଶ୍ରବଃ
ତ୍ୱା ମା ପଃ ପର୍ବତାସଶ୍ଚ ହିନ୍ୱିରେ ।"

ଅଥର୍ବବେଦ ସଂହିତା । ଭାଗ ୨ । ମନ୍ତ୍ର ୫୬୮୯

ହେ ଇନ୍ଦ୍ର ଦେବ ! ଆପଣଙ୍କର ଶକ୍ତି ଏବଂ ସାମର୍ଥ୍ୟର ଭଣ୍ଡାର ହେଉଛି ଅନନ୍ତ ଆକାଶ । ପୃଥିବୀ ଆପଣଙ୍କ ଅମାପଶକ୍ତିର ପ୍ରୟୋଗଶାଳା । ଏଠାରେ ଆପଣଙ୍କର ଯଶରୂପ ପ୍ରକଟିତ ହୁଏ । ଆପଣଙ୍କୁ ନିଜର ଅଧିପତି ମନେ କରି, ମେଘମାଳା ଏବଂ ଅନ୍ତରିକ୍ଷର ସୂକ୍ଷ୍ମପ୍ରବାହ ଆପଣଙ୍କ ପାଖରେ ଯାଇ ପହଞ୍ଚନ୍ତି ।

ବି.ଦ୍ର. ସଂଶିତ କବିତାଟିରେ ସମଧର୍ମୀ ଅନ୍ୟ ମନ୍ତ୍ର ଗୁଡ଼ିକର ଭାବ ମଧ୍ୟ ରହିଛି ।

# ଇନ୍ଦ୍ରଦେବ ଓ ଆକାଶ

ଅନନ୍ତ ଆକାଶ ଅଟେ ଶକ୍ତିର ଭଣ୍ଡାର
ଦିବ୍ୟ ଚେତନା ଚର୍ଚ୍ଚିତ ଇନ୍ଦ୍ରଦେବଙ୍କର,
ସେ ଶକ୍ତି ପ୍ରୟୋଗଶାଳା, ଅଟେ ଏହି ଧରା
ତେଜୋରୂପ ପ୍ରକଟିତ ହୁଏ ଏଥି ପରା ।

ଦେବରାଜ, ଦେବଗଣ ଆସନ୍ତି ଏ ପୁରେ
ମନ୍ତ୍ରମୟ ରୂପେ ଉଭା ପବିତ୍ର ମହିରେ,
ପରଂବ୍ରହ୍ମ ଅବିନାଶୀ ପ୍ରକାଶ ରୂପରୁ
ପ୍ରକଟିତ ଦେବରାଜ ବ୍ରହ୍ମ ଚେତନାରୁ ।
ସେ ଅଟନ୍ତି ତ୍ରିଭୁବନପାଳ,
ସର୍ଜ୍ଜନାର ସୂକ୍ଷ୍ମତତ୍ତ୍ୱ ତାଙ୍କଠାରେ ଠୁଳ ।

ତାଙ୍କ ଶକ୍ତିବଳେ ସୃଷ୍ଟ ଗ୍ରହ ତାରାଗଣ
ଦ୍ୟୁଲୋକ, ଭୂଲୋକ, ଚନ୍ଦ୍ରସୂର୍ଯ୍ୟ ଜ୍ୟୋତିଷ୍ମାନ ।
ବୃତାସୁର ବାନ୍ଧିଥିଲା ଅଖଣ୍ଡ ମେଘକୁ,
ଅଟକାଇ ରଖିଥିଲା ଜଳ ପ୍ରବାହକୁ ।

ବଜ୍ରାଘାତେ କଲେ ହତ ମେଘଗଲା ଫାଟି
ସ୍ୱର୍ଗରୁ ଜଳ ପ୍ରବାହ ମର୍ତ୍ତେ ଗଲା ଛୁଟି,
ଭରିଗଲା ନଦୀ ସାଗରରେ
ସଜଳ ହୋଇଲା ଧରା ଅମୃତ ସ୍ପର୍ଶରେ ।

ଇନ୍ଦ୍ର ଦେବଙ୍କର ଦିବ୍ୟ ସର୍ଜ୍ଜନାର ତୂଳି
ପ୍ରକୃତିରେ ଶ୍ୟାମସ୍ନିଗ୍ଧ ରୂପ ଦିଏ ବୋଳି,
ଅନ୍ତରିକ୍ଷୁ ମର୍ତ୍ତ୍ୟଯାଏ ତାଙ୍କ ରୂପ ରାଜେ
ତାଙ୍କ ମନ୍ତ୍ରଧ୍ୱନି ବିଶ୍ୱ କାନେ କାନେ ବାଜେ ।
ସିଏ ମନ୍ତ୍ରମୟ,
ଦେବ, ଋଷି, ଏ ଜଗତ ସ୍ତୁତିରଆଳୟ ।
ଏ ଆକାଶ ଅଟେ ସ୍ତୁତିମୟ ।

•

- ଶ୍ରମେଣ ତପସା ସୃଷ୍ଟା ବ୍ରହ୍ମଣା ବିତ୍ତର୍ତେଶ୍ରିତା

ମନ୍ତ୍ର ୩୫୩୧

- ସତ୍ୟେନାବୃତା ଶ୍ରିୟା ପ୍ରାବୃତା ଯଶସା ପରୀବୃତା

ମନ୍ତ୍ର ୩୫୩୨

- ସ୍ୱଧୟା ପରିହିତା ଶ୍ରଦ୍ଧୟା ପର୍ୟୂଢ଼ା ଦୀକ୍ଷୟା ଗୁପ୍ତା
  ୟଜ୍ଞେ ପ୍ରତିଷ୍ଠିତା ଲୋକୋ ନିଧନମ୍ ।

ଅଥର୍ବବେଦ. ସଂହିତା । ଭାଗ ୨ । ମନ୍ତ୍ର ୩୫୩୩

ବ୍ରାହ୍ମଣ, ତପସ୍ୟା ଦ୍ୱାରା ଲାଭ କରାଯାଇଥିବା ସତ୍ୟରେ ସର୍ବଦା ଆଶ୍ରୟ ନେଇଥାନ୍ତି । ସେ ସତ୍ୟ ଦ୍ୱାରା ପରିବୃତ୍ତ । ଶ୍ରୀ ସମ୍ପଦରେ ପରିପୂର୍ଣ୍ଣ ଏବଂ ଯଶସମ୍ପଦ ଦ୍ୱାରା ତାଙ୍କ ଜୀବନ ଭରପୂର ଅଟେ । ଚତୁର୍ଦ୍ଦିଗରେ ଏହା ତାଙ୍କୁ ଆବୃତ କରି ରଖିଅଛି । ବ୍ରାହ୍ମଣ ନିଜର ତପଶକ୍ତି ଓ ଏବଂ ବାକ୍‌ଶକ୍ତି ଦ୍ୱାରା ସର୍ବଦା ସୁରକ୍ଷିତ । ସେ ଶ୍ରଦ୍ଧାଭାବାପନ୍ନ ଓ ଦୀକ୍ଷାବ୍ରତ ଦ୍ୱାରା ସଂରକ୍ଷିତ । ଯଜ୍ଞରେ ମଧ୍ୟ ସେ ପ୍ରତିଷ୍ଠିତ ଅଟନ୍ତି ।

# ବ୍ରାହ୍ମଣ

ବ୍ରାହ୍ମଣ କୁଳେ ଯେ ଜାତ, ନୁହନ୍ତି ବ୍ରାହ୍ମଣ -
ନଥାଏ ଯଦ୍ୟପି ଆତ୍ମଜ୍ଞାନ, ବ୍ରହ୍ମଜ୍ଞାନ ।
ପିନ୍ଧି ଦେଲେ ହେବ ନାହିଁ ବ୍ରାହ୍ମଣର ବେଶ
ଆଚରଣେ ଉଚ୍ଚାରଣେ -
ନାହିଁ ଯଦି ତାଙ୍କ ସାମଞ୍ଜସ୍ୟ,
ଅଟେ ତାହା କଷାୟ କଳ୍ମଷ ।

ବ୍ରାହ୍ମଣ ଅଟନ୍ତି ସଦା ବ୍ରହ୍ମନିଷ୍ଠ ବ୍ୟକ୍ତି
ବ୍ରହ୍ମବିଦ୍ୟା ଅଟେ ତାଙ୍କ ପରମ ସମ୍ପତ୍ତି,
ସେ ଅଟନ୍ତି ସତ୍ୟାଶ୍ରୟୀ ତପଃଶୀଳ ଜ୍ଞାନୀ
ସତ୍ୟରେ ଆଶ୍ରୟ ତାଙ୍କ ସିଏ ମହାଦାନୀ ।
କରିଥାନ୍ତି ଜ୍ଞାନଦାନ ଅକୁଣ୍ଠ ଚିତ୍ତରେ
ସମାଜର ଆଚାର୍ଯ୍ୟ ରୂପରେ ।

ଯଶ ସମ୍ପଦରେ ଭରା ଜୀବନ ତାଙ୍କର
ଶିରୀ ସମ୍ପଦରେ ଭରା ଅଟଇ ଭଣ୍ଡାର
ଶ୍ରଦ୍ଧାଭାବାପନ୍ନ ସିଏ -
ସମାଜର ଅଧ୍ୟାତ୍ମ ସେବକ,
ସେ ଅଟନ୍ତି ନୀତିଗୁରୁ ନୀତି ସଂରକ୍ଷକ ।
ଦୀକ୍ଷା ବ୍ରତ ଦାନେ
ପ୍ରତିଷ୍ଠିତ ହୋଇଥାନ୍ତି ବାକ୍, ତପ, ଧ୍ୟାନେ ।

ବ୍ରହ୍ମଚର୍ଯ୍ୟ ତପଃ ଶକ୍ତି ବଳେ
ତ୍ୟାଗ ନିଷ୍ଠ ରାଷ୍ଟ୍ରର ମଙ୍ଗଳେ ।
ସମାଜରେ ବ୍ୟକ୍ତିତ୍ୱ ଗଠନ
ଅଧ୍ୟାତ୍ମବିଭବ ତାଙ୍କ ଶ୍ରେଷ୍ଠ ଅବଦାନ ।
ବ୍ରହ୍ମାନୁଶାସନେ,
ପରିଚିତ ଏ ଜଗତେ 'ବ୍ରାହ୍ମଣ' ନାମେ ।

•

- ଆଗନ୍ ରାତ୍ରୀ ସଂଗମନୀ ବସୂନାମୂର୍ଜଂ ପୁଷ୍ଟଂ ବସ୍ୱାବେଶୟନ୍ତୀ
ଅମାବାସ୍ୟାୟେ ହବିଷା ବିଧେମୋର୍ଜଂ ଦୁହାନା ପୟସା ନ ଆଗନ୍ ।

ଅଥର୍ବବେଦ.ସଂହିତା । ଭାଗ ୧ ମନ୍ତ୍ର ୧୯୪୨

ଆଜି ପୃଥିବୀକୁ ଅମାବାସ୍ୟାର ଘନ ଅନ୍ଧକାର ରାତ୍ରି ଆସିଛି । ଆମେ ଏହି ଶୁଭମୟୀ ଦେବୀଙ୍କ ଆଗମନକୁ ଗଭୀର ପ୍ରତୀକ୍ଷା ମଧ୍ୟରେ ଚାହିଁ ରହିଥିଲୁ । ଏହି ତିଥିରେ ଇନ୍ଦ୍ର ତଥା ଅନ୍ୟ ଦେବଗଣଙ୍କର ଏକତ୍ର ମିଳନ ହୁଏ । ସେମାନେ ଆମମାନଙ୍କ ଉପରେ ସନ୍ତୁଷ୍ଟ ହୋଇ ଅନ୍ନ, ଧନ ଓ ଯଶ ପ୍ରଦାନ କରନ୍ତି ।

- ଅମାବାସ୍ୟେ ନ ତ୍ୱଦେତାନ୍ୟନ୍ୟୋ ବିଶ୍ୱାରୂପାଣି ପରିଭୂର୍ଜଜାନ
ଯତ୍କାମାସ୍ତେ ଜୁହୁମସ୍ତନ୍ନୋ ଅସ୍ତୁ ବୟଂ ସ୍ୟାମ ପତୟୋ ରୟୀଣାମ୍ ।

ମନ୍ତ୍ର ୧୯୪୩

ହେ ଦେବୀ ଅମାବାସ୍ୟା । ତୁମ ଦ୍ୱାରା ଏହି ସମଗ୍ର ଜଗତ ରଚିତ ହୋଇଅଛି । ଏହି ମହାନ୍ ଶକ୍ତି ଅନ୍ୟ କୌଣସି ଦେବତାଙ୍କର ମଧ୍ୟ ନାହିଁ । ତୁମେ ଆମକୁ ଧନ ଦାନ କରିବା ସହିତ ମନ କାମନା ପୂରଣ କରିବାକୁ, ଆହୁତି ପ୍ରଦାନ କରୁଛୁ ।

- କୁହୂଂ ଦେବୀଂ ସୁକୃତଂ ବିଦ୍ମନାପସମସ୍ମିନ୍ ଯଜ୍ଞେ ସୁହବା ଜୋହବୀମି
ସା ନୋ ରୟିଂ ବିଶ୍ୱବାରଂ ନି ଯଚ୍ଛାଦ୍ ଦଦାତୁ ବୀରଂ ଶତଦାୟମୁକ୍ଥ୍ୟମ ।

ମନ୍ତ୍ର ୧୮୪୦

ହେ କୁହୂଦେବୀ ! ଆପଣ ମଙ୍ଗଳମୟୀ । ଧନ, ମାନ, ସୁସନ୍ତାନ ଓ ଯଶ ପ୍ରାପ୍ତି ପାଇଁ, ଆମେ ଆପଣଙ୍କୁ ପ୍ରାର୍ଥନା କରୁଛୁ । ଆପଣ ଅମୃତର ପୁଷ୍ଟିକାରିଣୀ (କୁହୂର୍ଦେବାନାମମୃତସ୍ୟ ପତ୍ନୀ) । ଆପଣଙ୍କର ସନ୍ତୋଷ ବିଧାନ ପାଇଁ ଆମେ ଯଜ୍ଞାହୁତି ପ୍ରଦାନ କରୁଛୁ ।

## ଅମାବାସ୍ୟା

ଅମାବାସ୍ୟା ଅଟେ ଅତି ଶୁଭ ଦିନ
ଶୁଭ ମିଳନର ତିଥି
ପ୍ରଭୁ ଇନ୍ଦ୍ରଦେବ, ସବୁ ଦେବ ମିଶି
ହୁଅନ୍ତି ତହିଁ ଏକାଠି ।

ଉଗ୍ରଦେବ ସୂର୍ଯ୍ୟ, ଶାନ୍ତ ଦେବ ଚନ୍ଦ୍ର
ସେଦିନ ଏକାଠି ହୋଇ
ପ୍ରତି ମୁହୂର୍ତ୍ତକୁ ମଙ୍ଗଳମୟ
କରନ୍ତି ଜଗତ ପାଇଁ ।
ଆକାଶେ ସେଦିନ ଚନ୍ଦ୍ର ନ ଦିଶନ୍ତି
ଅନ୍ଧକାର ଥାଏ ଘୋଟି,
'କୁହୂ' କୁହାଯାଏ ସେ ଘନରାତ୍ରିକୁ
ଦେବୀ ରୂପେ ପୂଜାପାନ୍ତି ।

ଶିରୀ ସମୃଦ୍ଧି ସେ ପ୍ରଦାନ କରନ୍ତି
ଶୁଭମୟୀ ଶୁଭପ୍ରଦା
ବିଶ୍ୱ ବରଣୀୟା, 'ବିଶ୍ୱବାରା' ରୂପେ
ଅଟନ୍ତି ସଦା ପୂଜିତା ।

କରି ଅଛନ୍ତି ସେ ଜଗତ ରଚନା
ତାଙ୍କ ଅନ୍ଧକାର କୋଳେ
ଏ' ଶକ୍ତି କାହାର ନାହିଁ ତ୍ରିଭୁବନେ
ପୂଜିତା ସେ କାଳେକାଳେ ।
ଅମୃତ ଦାୟିନୀ ପୁଷ୍ଟି ପ୍ରଦାୟିନୀ
ସୁକର୍ମା ଅଟନ୍ତି ଦେବୀ
ଦୁଃଖ ବିନାଶିନୀ, ସୌଭାଗ୍ୟ ଦାୟିନୀ
ତାଙ୍କ ଶୁଭାଶିଷ ଲଭି -
ମିଳେ ସୁସନ୍ତାନ ଧନ,
ଯଶ ପଉରୁଷ ମାନ ।।

•

"ଅନୁବ୍ରତଃ ପିତୁଃ ପୁତ୍ରୋ ମାତ୍ରା ଭବତୁ ସଂମନାଃ
ଜାୟା ପତ୍ୟେ ମଧୁମତୀଂ ବା ଚଂ ବଦତୁ ଶାନ୍ତିବାମ୍ ।"

ଅ.ସଂ.ଭା୧।ମନ୍ତ୍ର ୫୭୪

ପୁତ୍ର ନିଜ ପିତାଙ୍କର ଅନୁକୂଳ କର୍ମ କରିବାକୁ ଯୋଗ୍ୟତା ଲାଭ କରୁ । ନିଜ ମାତା ପିତାଙ୍କ ସହିତ, ସମଭାବାପନ୍ନ ହୋଇ ବାସ କରୁ । ପତ୍ନୀ ନିଜ ପତିଙ୍କୁ କୋମଳ ବଚନରେ ଆନନ୍ଦିତ କରୁ ।

"ମା ଭ୍ରାତା ଭ୍ରାତରଂ ଦ୍ୱିକ୍ଷନ୍ମା ସ୍ୱସାରମୁତ ସ୍ୱସା
ସମ୍ୟଞ୍ଚଃ ସବ୍ରତା ଭୂତ୍ୱା ବାଚଂ ବଦତ ଭଦ୍ରୟା ।" ମନ୍ତ୍ର ୫୭୫

ଭାଇ ନିଜର ସହୋଦର ଭାଇ ପ୍ରତି ବିଦ୍ୱେଷଭାବ ପୋଷଣ ନକରୁ । ଭଉଣୀ ମଧ୍ୟ ନିଜର ଭଉଣୀ ପ୍ରତି ଅନୁରୂପ ବ୍ୟବହାର ପ୍ରଦର୍ଶନ କରୁ । ସେମାନେ କୁଳାଚାରଯୁକ୍ତ ହୋଇ ସମ ବିଚାରଶୀଳ ଓ ସମଦର୍ଶୀ ହୁଅନ୍ତୁ । ସେମାନଙ୍କ ଆଚରଣ, କଥୋପକଥନ, ଆଭିଜାତ୍ୟ ସମ୍ପନ୍ନ ଓ ଭଦ୍ର ହେଉ ।

ଜ୍ୟାୟସ୍ୱନ୍ତଶ୍ଚିତ୍ତିନୋ ମା ବି ଯୌଷ୍ଟ ସଂରାଧୟନ୍ତଃ ସଧୁରାଶ୍ଚରନ୍ତଃ
ଅନ୍ୟୋ ଅନ୍ୟସ୍ମୈ ବଲଗୁ ବଦନ୍ତ ଏତ ସଧ୍ରୀଚୀନାନ୍ ବଃ ସଂମନସସ୍କୃଣୋମି ।

ମନ୍ତ୍ର ୫୭୭

ତୁମ ନିଜ ଭିତରେ ସଂହତି ରକ୍ଷା କର । କେହି କାହାଠାରୁ ପୃଥକ ହୁଅ ନାହିଁ । ପରିବାରର ସମସ୍ତଙ୍କ ପ୍ରତି ସମଦୃଷ୍ଟି ରଖ । ପରସ୍ପର ମଧ୍ୟରେ ଶ୍ରଦ୍ଧାମୟ ଆଳାପ ଆଲୋଚନା କରି, ସ୍ନେହ ସୌହାର୍ଦ୍ଦ୍ୟ ରକ୍ଷା କର ।

ସମାନୀ ପ୍ରପା ସହ ବୋଽନ୍ନଭାଗ
ସମାନେ ଯୋକ୍ତ୍ରେ ସହ ବୋ ଯୁନଜ୍ମି
ସମ୍ୟଞ୍ଚୋଽଗ୍ନିଂ ସପର୍ଯ୍ୟତାରା ନାଭିମିବାଭିତଃ । ମନ୍ତ୍ର ୫୭୮

ହେ ସମାନତା କାମନା କରୁଥିବା ମନୁଷ୍ୟଗଣ ! ତୁମ ପାନୀୟ ଜଳ ସଂଗ୍ରହର ସ୍ଥାନ ସମାନ ହେଉ କିମ୍ବା ଗୋଟିଏ ସ୍ଥାନରୁ ତୁମେ ଜଳପାନ କର । ତୁମ ମାନଙ୍କର ଅନ୍ନଭାଗ ମଧ୍ୟ ସମାନ ହେଉ । ଶଗଡ଼ ଚକର 'ଅର' ଯେପରି ନାଭି କେନ୍ଦ୍ରର ଆଶ୍ରିତ ହୋଇ ରହେ, ତୁମେ ମଧ୍ୟ ସେହିପରି ସ୍ନେହ ବନ୍ଧନ ମଧ୍ୟରେ ଏକତା ରକ୍ଷା କରି ପାରିବାରିକ ଜୀବନ ଯାପନ କର । ପାରିବାରିକ ଜୀବନରେ ଅଗ୍ନି ଦେବଙ୍କୁ ଉପାସନା କର ।

"ଯେନ ଦେବା ନ ବୟନ୍ତି ନୋ ଚ ବିଦ୍ୱିଷତେ ମିଥଃ
ତତ୍ କୃଣ୍ମୋ ବ୍ରହ୍ମବୋ ଗୃହେ ସଂଜ୍ଞାନଂ ପୁରୁଷେଭ୍ୟଃ ।"ମନ୍ତ୍ର ୫୭୬

ଜ୍ଞାନ ଓ ବିଚାର ଶକ୍ତି ବଳରେ ଦେବଗଣ ବିପରୀତ ଆଚରଣ କରନ୍ତି ନାହିଁ ହେ ମନୁଷ୍ୟଗଣ । ତୁମେ ଆଚାର ବିଚାରଶୀଳ ହେବା ପାଇଁ, ଆମେ ଋଷିଗଣ ତୁମ ପରିବାରବର୍ଗଙ୍କୁ ସେହି ପ୍ରକାର ଜ୍ଞାନଯୁକ୍ତ କରୁଛୁ । ତୁମେ ତା'ର ସଦ୍ ବିନିଯୋଗ କର ।

# ଆଚରଣ ସଂହିତା

ହେ ମାନବ ! ତୁମେ ପ୍ରେମଭାବ ଭରି ଅନ୍ତର ଦିଅ ଖୋଲି
ଦୁର୍ଲଭ ତୁମ ମାନବ ଜୀବନ ବାଧା ବନ୍ଧନ ଟାଳି,
ମୁକ୍ତକରହେ.., ମନକୁ ତୁମର
ଯୁକ୍ତ କରହେ ହୃଦୟର ଡ଼ୋର,
ବିସ୍ତାର କର ଆଚାର ବିଚାର ସଂକୀର୍ଣ୍ଣତାକୁ ଭୁଲି ।

ସମାନ ସୁଯୋଗ ସମସ୍ତଙ୍କୁ ମିଳୁ, ହୁଅ ତୁମେ ସମଦର୍ଶୀ
ଉଚ୍ଛଳ ହେଉ ପ୍ରାଣ ସଙ୍ଗୀତ ମଧୁର ହୃଦୟ ସ୍ପର୍ଶୀ,
ନାଭି କେନ୍ଦ୍ରରେ ଚକ୍ରର ଅର ପରି
ଯୁକ୍ତ ହୁଅହେ ! ଶ୍ରଦ୍ଧା ସଙ୍ଗୀତ ତୋଳି,
ଅନ୍ନ ଜଳର ସହଭାଗିତାରେ ହୁଅ ତୁମେ ଭାଗିଦାରୀ

ପାଳନ କରହେ ସମାନ ବ୍ୟଭାର ସମାନ ବିଚାର ବ୍ରତ
ସମ ଦୃଷ୍ଟିରେ ଅନ୍ତରେ ବହୁ ଶରଧା ଏକତା ସ୍ରୋତ,
ମାତା ପିତାଙ୍କ ଆଦର୍ଶ ଅନୁସରି
ଏ'ଭବ ସାଗରେ ବାହ ଜୀବନର ତରି,
ସମ ଭାବନାରେ ହୁଅହେ ସର୍ବେ ମଣ୍ଡିତ ସୁସଂହତ ।

ପତି ଓ ପତ୍ନୀ ମମତା ବନ୍ଧେ ଉଚ୍ଚାର ମଧୁବାଣୀ
ଭାଇ ଭାଇ ମଧ୍ୟେ ଭାବ ବିଦ୍ୱେଷ ନରହୁ ହୃଦୟେ ପୁଣି,
ଭାଇ ଭଉଣୀର ଅନ୍ତରେ ଅବିରତ
ପ୍ରବାହିତ ହେଉ ଶ୍ରଦ୍ଧା ମମତା ସ୍ରୋତ,
ଆଚରଣେ ଆଉ ଆଳାପେ ଫୁଟାଅ ଆଭିଜାତ୍ୟର ବାଣୀ ।

ବିଚାରବନ୍ତ ଦେବଗଣ ସଦା ଅନୁକୂଳ ଆଚରଣ
ପ୍ରକାଶ କରନ୍ତି ସୁଖ ଦୁଃଖରେ ସର୍ବଦା ଏକ ମନ,
ଯେଉଁ ଜ୍ଞାନ ବଳେ ସତ୍‌ପଥଗାମୀ ଅଟନ୍ତି ସେମାନେ ସବୁ
ସେଇ ଜ୍ଞାନାଲୋକେ ଦୀପ୍ତ କରୁନ୍ତୁ ସମସ୍ତଙ୍କ ହୃଦୟକୁ ।
ପୃଥକ ହୁଅନି କେହି କାହାଠାରୁ କେବେ,
ଏକତା ସୂତ୍ରେ ଆବଦ୍ଧରହ ଶାନ୍ତି ପାଇବ ତେବେ ।

•

"ସ୍ୱସ୍ତି ମାତ୍ର ଉତ ପିତ୍ରେ ନୋ ଅସ୍ତୁ
ସ୍ୱସ୍ତି ଗୋଭ୍ୟୋ ଜଗତେ ପୁରୁଷେଭ୍ୟଃ
ବିଶ୍ୱଂ ସୁଭୂତଂ ସୁବିଦତ୍ରଂ ନୋ ଅସ୍ତୁ
ଜ୍ୟୋଗେବ ଦୃଶେମ ସୂର୍ଯ୍ୟମ୍ ।"

ଅଥର୍ବ ବେଦ ସଂହିତା. ଭାଗ ୧ । ମନ୍ତ୍ର ୧୩୬

ଆମର ମାତା ପିତା କୁଶଳରେ ରହନ୍ତୁ । ଆମର ଗୋଧନ ସୁରକ୍ଷିତ ରହୁ । ସ୍ୱଜନ ତଥା ସମ୍ପୂର୍ଣ୍ଣ ସଂସାର ସୁଖରେ ରହନ୍ତୁ । ଆମେ ସବୁ ଐଶ୍ୱର୍ଯ୍ୟଶାଳୀ ତଥା ଉତ୍ତମ ଜ୍ଞାନସମ୍ପନ୍ନ ହେଉ । ଆମେ, ଦୀର୍ଘ ନିରାମୟ ଜୀବନର ଅଧିକାରୀ ହେଉ । ଶତ ଶତ ସୂର୍ଯ୍ୟ ଦର୍ଶନ କରିବାର ସୁଯୋଗ ମିଳୁ ।

# ସ୍ୱସ୍ତିବଚନ

ଜନକ ଜନନୀ ରହନ୍ତୁ କୁଶଳେ
ଜନ୍ମଦାତା ଆମ ପୂଜ୍ୟ,
ଏ ଜୀବନ ଯଜ୍ଞେ ଦେଉଅଛୁ ଆମେ
ଭକତି ଆହୁତି ଆଜ୍ୟ ।

ହେ ଯଜ୍ଞପୁରୁଷ । ଆତ୍ମୀୟ ସ୍ୱଜନ
ଏହି ବିଶ୍ୱବାସୀ ସର୍ବେ,
ଆନନ୍ଦେ ରହନ୍ତୁ ନିଖିଳ ଜୀବନ
ଚରାଚର ଏହି ଉର୍ବେ ।

ଗୋ ଗୋଠ ଆମର ହେଉ ନିରାପଦ
ଗୋ ଧନ ସମୃଦ୍ଧି ଲଭୁ
ଗୋ ସେବାରେ ଆମେ ହେଉ ସଦାବ୍ରତୀ
ଗୋ ମାତା ଆମର ସବୁ ।
ସୁଖ ସମ୍ପଦର ଆଧାର, ଗୋ ଧନ
ଐଶ୍ୱର୍ଯ୍ୟ ବିଭୂତି ଧାରା
ଜୀବନ ଉତ୍ସବେ ମଙ୍ଗଳମୟ
ପୂଜିତ ଜୀବନ ସାରା ।

ଆମେ ହେଉ ସର୍ବେଜ୍ଞାନୀ, ମାନୀ ଦାନୀ
ଐଶ୍ୱର୍ଯ୍ୟ ବିଭବଶାଳୀ
ଶତଶତ ସୂର୍ଯ୍ୟ ଦେଖୁ ଏ ଜୀବନେ
ସଂସାର କଷଣ ଟାଳି ।
ହେ ଯଜ୍ଞ ପୁରୁଷ । ଏତିକି ମାଗୁଣି ଆମ
ଏ' ଜୀବନ ବ୍ରତେ ପ୍ରେରଣା ମିଳୁହେ
ହେଉ ଆମେ ସିଦ୍ଧକାମ ।

•

ଭଦ୍ରାଦଧି ଶ୍ରେୟଃ ପ୍ରେହି ବୃହସ୍ପତିଃ ପୁରଏତା ତେ ଅସ୍ତୁ ।
ଅଥେମମସ୍ୟା ବର ଆ ପୃଥିବ୍ୟା-
ଆରେଶତ୍ରୁଂ କୃଣୁହି ସର୍ବବୀରମ୍ ।

ଅଥର୍ବବେଦ ସଂହିତା । ଭାଗ ୧ । ମନ୍ତ୍ର ୧୭୬୦

ହେ ମନୁଷ୍ୟଗଣ ! ତୁମେ ସାଂସାରିକ ସୁଖକୁ ଜୀବନରେ ପ୍ରାଧାନ୍ୟ ଦିଅନାହିଁ । ବିଶ୍ୱର କଲ୍ୟାଣ ମାର୍ଗକୁ ମଙ୍ଗଳମୟ ମନେକରି, ତା'ର ଅନୁସରଣ କର । ଦେବଗୁରୁ ବୃହସ୍ପତି, ଦେବମାର୍ଗର ପ୍ରଦର୍ଶକ ଅଟନ୍ତି । ତୁମେ ତାଙ୍କରିପରି ଜ୍ଞାନ ବିଭୂତିଯୁକ୍ତ ହୁଅ । ଏ' ପୃଥିବୀ ବୀରପ୍ରସବିନୀ ହେଉ ଏବଂ ଶତ୍ରୁ ଦମନକରି, ପୃଥିବୀରେ ଶାନ୍ତି ବିରାଜମାନ କରୁ ।

# ବିଶ୍ୱଶାନ୍ତି

ହେ ମାନବ ଗଣ!
ଏ' ବିଶ୍ୱ ସୃଷ୍ଟିର ତୁମେ ଅଟ ଶ୍ରେଷ୍ଠତମ।
ବିବେକକୁ କରହେ ସାରଥି
ଏ ସଂସାର ରଣଭୂମେ -
ତୁମେ ହୁଅ ଦୃପ୍ତ ମହାରଥୀ।

ଏ ସଂସାର ଅଟେ ସଦା ସମ୍ଭୋଗ ଭୂମି
ମରିଚିକା ପଥେ ତୁମେ ହୁଅନାହିଁ ଭ୍ରମି,
ମନୋରମ ହେଉ ଥବା -
ହେଉ ପଥ ପ୍ରେୟଃ,
ବିଶ୍ୱମଙ୍ଗଳର ପଥ ଅଟେ ସଦା ଶ୍ରେୟଃ।
ସେ ପଥକୁ ଚାଲ ଅନୁସରି,
ଶ୍ରେଷ୍ଠ ପରିଚୟ ହେଉ, 'ବିଶ୍ୱପ୍ରାଣ' ବୋଲି।

ହେଲେ ହେଉ ସେ ପଥଟି ଯେତେ ଯା ଜଟିଳ
ବଢ଼ାଇବ ତାହା 'ବିଶ୍ୱଭାବନା'ର ବଳ,
ବିଶ୍ୱର ମଙ୍ଗଳକାମୀ ସଦା ଦେବଗଣ
ଦେବମାର୍ଗ ଅଟେ ବିଶ୍ୱମଙ୍ଗଳ ଚିନ୍ତନ।
ସେ ପଥର ପ୍ରଦର୍ଶକ
ଦେବଗୁରୁ ପ୍ରଭୁ ବୃହସ୍ପତି,
ସେ ପଥକୁ ଅନୁସରି
ଲଭ ତାଙ୍କ ଆଶିଷ ବିଭୂତି।
ତାଙ୍କରି ଆଶିଷେ ତୁମେ ହୁଅ ଜ୍ଞାନୀ ମାନୀ
ବିଶ୍ୱର କଲ୍ୟାଣଧ୍ୟାୟୀ -
ହୁଅ ନିତ୍ୟ ସତ୍ୟର ସନ୍ଧାନୀ।

ବୀର ପ୍ରସବିନୀ ହେଉ ଏ ମହିମଣ୍ଡଳ
ଅବଦମିତ ହୁଅନ୍ତୁ ସେ ଅରାତି ଦଳ,
ବିଶ୍ୱବୁକେ ବହି ଯାଉ ଶାନ୍ତି ସ୍ୱରଧୁନୀ
ଖୋଲି ଯାଉ ସୌଭାଗ୍ୟ ସରଣି।
ହେ ମାନବ ଗଣ!
ଏହା ହେଉ ପରିଚୟ ତୁମ।

•

ପୂର୍ଣ୍ଣାତ୍ ପୂର୍ଣ୍ଣମୁଦଚତି ପୂର୍ଣ୍ଣଂ ପୂର୍ଣ୍ଣେନ ସିଚ୍ୟତେ
ଉତୋ ତଦଦ୍ୟ ବିଦ୍ୟାମ ଯତସ୍ତତ୍ ପରିଷିଚ୍ୟତେ ।

ଋଗ୍ ବେଦ ସଂହିତା । ଭାଗ ୧ । ମନ୍ତ୍ର ୨୯୧୦

ପୂର୍ଣ୍ଣବା ପରିମେଶ୍ୱରଙ୍କଠାରୁ, ପୂର୍ଣ୍ଣ ବା ଏ ଜଗତ ଉତ୍ପନ୍ନ ହୋଇଛି । ପୂର୍ଣ୍ଣ ପୂର୍ଣ୍ଣକୁ ସିଞ୍ଚନ କରେ । ଅଥବା ପରିପୋଷଣ କରିଥାଏ । ଏହି ମହାସତ୍ୟ ଉପଲବ୍ଧି କରିବା ପରେ, ଏହି ଅନନ୍ତ ସର୍ଜନାକୁ କିଏ ସିଞ୍ଚନ ବା ପରିପୋଷଣ କରୁଛି, ଆମେ ତାହା ଠିକ୍ ଭାବରେ ଜାଣି ପାରୁଛି ।

ବି.ଦ୍ର.: ଏହି ପରମ ସତ୍ୟକୁ ପ୍ରକାଶ କରିବା ପରେ ଉପନିଷଦରେ ମଧ୍ୟ ବର୍ଣ୍ଣିତ ହୋଇଛି ।

"ପୂର୍ଣ୍ଣମଦଃ ପୂର୍ଣ୍ଣମିଦଂ, ପୂର୍ଣ୍ଣାତ୍ ପୂର୍ଣ୍ଣମୁଦଚ୍ୟତେ
ପୂର୍ଣ୍ଣସ୍ୟ ପୂର୍ଣ୍ଣମାଦାୟ, ପୂର୍ଣ୍ଣମେବା ବଶିଷ୍ୟତେ ।

ଏହାର ଅର୍ଥ, "ତାହା ପୂର୍ଣ୍ଣ ଅଟେ, ଏହା ମଧ୍ୟ ପୂର୍ଣ୍ଣ ଅଟେ । ପୂର୍ଣ୍ଣରୁ ହିଁ ପୂର୍ଣ୍ଣର ଉତ୍ପତ୍ତି ଏବଂ ବିକାଶ । ସେହି ପୂର୍ଣ୍ଣରୁ ଏହି ପୂର୍ଣ୍ଣର ଉଦୟ ହେବା ପରେ ମଧ୍ୟ ତାହା ପୂର୍ଣ୍ଣ ରୂପରେ ହିଁ ରହିଥାଏ ।

ଏହି ମହାନ ସତ୍ୟର ଉଦ୍‌ଘୋଷଣା ପରେ, ମହର୍ଷିଗଣ ସ୍ପଷ୍ଟ ଭାବରେ ଏହାକୁ 'ନେତି - ନେତି' ବୋଲି କହିଛନ୍ତି । ଏହାର ଅର୍ଥ, "ଯାହା କୁହାଗଲା, ତାହା ମଧ୍ୟ ସମ୍ପୂର୍ଣ୍ଣ ତଥ୍ୟ ନୁହେଁ ।" ସ୍ୱାନୁଭୂତି ବିକଶିତ ହେଲେ ସେହି ମହାସତ୍ୟକୁ ସମ୍ପୂର୍ଣ୍ଣ ଉପଲବ୍ଧି କରାଯାଇ ପାରିବ ।

# ପୂର୍ଣ୍ଣମିଦଂ

ପୂର୍ଣ୍ଣ ଅଟନ୍ତି ସ୍ୱୟଂ ପରମେଶ୍ୱର
ପୂର୍ଣ୍ଣରୁ ହେଲା ତ୍ରିଭୁବନ ସଂଚାର,
ଏହା ବି ପୂର୍ଣ୍ଣ, ପୂର୍ଣ୍ଣ ହୋଇଛି ଜାତ
କେ'ବା ପାରିବ କରି ଖଣ୍ଡନ ଏ'ତ !

ପୂର୍ଣ୍ଣ ଦ୍ୱାରା 'ସିଞ୍ଚିତ' ହୁଅଇ ପୂର୍ଣ୍ଣ
ପୂର୍ଣ୍ଣରେ ପୂର୍ଣ୍ଣ ପରିପୋଷିତ, ଧର୍ମ,
ଅନ୍ୟଥା କିଏ ଏହା ପାରିବ କରି
ଅଟନ୍ତି ସିଏ କର୍ତ୍ତା, ଭର୍ତ୍ତା, ଶ୍ରୀହରି ।
ସେ ପୂର୍ଣ୍ଣତମ,
ଏ ପୂର୍ଣ୍ଣ ଜଗତର ପୂର୍ଣ୍ଣ ପରମ ।

ଏ ଦିବ୍ୟ ମହାସତ୍ୟ ଅବବୋଧନ
ପାରନ୍ତି କରି ସଦା ମହାନଜନ
ପୋଷଣ ତତ୍ତ୍ୱ ସିଏ ପାରନ୍ତି ବୁଝି
ପୂର୍ଣ୍ଣତମଙ୍କ ପୂର୍ଣ୍ଣବିଧାନ ବିଧି ।
ସେ ପୂର୍ଣ୍ଣତମ,
ପୂର୍ଣ୍ଣରୁ 'ପୂର୍ଣ୍ଣ' ସଦା ହୁଏ ଉଦ୍‌ଗମ ।
ସେ ମହାପୂର୍ଣ୍ଣ
ପରମ ପୂର୍ଣ୍ଣ ସଦା ସ୍ୱୟଂ ସମ୍ପୂର୍ଣ୍ଣ ।

ଶୁଣାଇ ଏହି ମହା ଚିନ୍ମୟବାଣୀ
କହନ୍ତି 'ନେତି - ନେତି' ସେ ମହାମୁନି,
ଅନ୍ତିମ ତଥ୍ୟ ନୁହେଁ ଯା' ପ୍ରକାଶିତ
ସ୍ୱାନୁଭୂତି ସମ୍ଭୂତ ସେ ମହାସତ୍ୟ
ଚେତନା ଉତ୍ତରଣେ ଅବବୋଧନ-
ସମ୍ଭବ, କହିଛନ୍ତି ମହର୍ଷିଗଣ ।
ହେ ପୂର୍ଣ୍ଣତମ,
ଏ' ପୂର୍ଣ୍ଣ ଜଗତର ପୂର୍ଣ୍ଣପରମ ।

•



ଶ୍ରୀ ନରସିଂହ ମିଶ୍ର
ଜନ୍ମ ତା ୨।୭।୧୯୩୨
ମହିଧର ପଡ଼ା, ଅନଗୁଳ

ଶ୍ରୀ ନରସିଂହ ମିଶ୍ର, ଓଡ଼ିଆ ସାହିତ୍ୟର ଏକ ବହୁମୁଖୀ ପ୍ରତିଭାଶାଳୀ ଲେଖକ । ସେ ଶତାଧିକ ପୁସ୍ତକର ରଚୟିତା । ପ୍ରାୟ ସବୁ ବିଭାଗରେ ସେ ଲେଖନୀ ଚାଳନା କରିଥିଲେ ମଧ୍ୟ ମୁଖ୍ୟତଃ ସେ ଜଣେ ଔପନ୍ୟାସିକ । ତାଙ୍କର ଚରିତ୍ରମୂଳକ ଉପନ୍ୟାସଗୁଡ଼ିକ, ପୁରାଣ, ମହାଭାରତ, ରାମାୟଣର ପ୍ରଥିତ ଚରିତ ଉପରେ ଆଧାରିତ । ଶକୁନି, ସାକେତ ରାଜବଧୂ ଊର୍ମିଳା, ଦେବର୍ଷି ନାରଦ, ତାପସୀ ମୀରା, କୁରୁକ୍ଷେତ୍ରରେ କୃଷ୍ଣପକ୍ଷ ଓ ଶୂନ୍ୟମଣ୍ଡପର ସନ୍ଥ ପ୍ରଭୃତି ଉପନ୍ୟାସ, ଧର୍ମଧାରାର ପ୍ରତିନିଧିସ୍ତରୀୟ ସୃଷ୍ଟି ସମ୍ଭାର । ଶ୍ରୀ ମିଶ୍ରଙ୍କର ଅନୁବାଦ ଶୈଳୀ ମଧ୍ୟ ସାବଲୀଳ । ସେ ବିଶ୍ୱକବି ରବୀନ୍ଦ୍ରନାଥ ଠାକୁରଙ୍କ ସମ୍ପୂର୍ଣ୍ଣ 'ଗୀତାଞ୍ଜଳି'କୁ ଅନୁବାଦ କରିଛନ୍ତି । ତିବ୍‌ବତୀୟ ଧର୍ମଗୁରୁ ଲାମାମାନଙ୍କର ଜୀବନଧାରା ଉପରେ ଆଧାରିତ ତାଙ୍କର ଅନୁବାଦ ଉପନ୍ୟାସ ନିକଟରେ ପ୍ରକାଶ ପାଇବାକୁ ଯାଉଛି । ଏହାର ଶୀର୍ଷକ "ତୃତୀୟ ନୟନ" ।

ଶ୍ରୀ ମିଶ୍ରଙ୍କର ସମଗ୍ର ସାରସ୍ୱତ କୃତି ପାଇଁ, ଓଡ଼ିଶା ସାହିତ୍ୟ ଏକାଡେମୀ ତା'ର 'ସୁବର୍ଣ୍ଣ ଜୟନ୍ତୀ ସମାରୋହ ସମ୍ମାନ' ତାଙ୍କୁ ୨୦୦୭ ମସିହାରେ ପ୍ରଦାନ କରିଛି ।

"ବେଦ ବିଭୂତି" ସେହି କୃତବିଦ୍ୟ ଲେଖକଙ୍କର ଏକ ସଦ୍ୟତମ ସାତ୍ତ୍ୱିକ ସାରସ୍ୱତ ସମର୍ପଣ । ବିଦଗ୍ଧ ପାଠକଗଣ ଏହାକୁ ପାଠକରି କିଛିଟା ଆନନ୍ଦ ପାଇଲେ ଶ୍ରମ ସାର୍ଥକ ହେବ ।

ପ୍ରକାଶକ



**Gyanajuga Publication**
**Bhubaneswar, Odisha**

Email : contact@gyanajuga.com,
website : wwwgyanajuga.com


ISBN 81-89726-76-8